## ଯାହା ମୋର କହିବାର କଥା :

''କବି-କବିତା : ସ୍ଥିତି ଓ ବିସ୍ତୃତି'' ମୋର ଦ୍ୱିତୀୟ କବିତା ଆଲୋଚନା ଗ୍ରନ୍ଥ । କବିତା ଆଲୋଚନାର କେତୋଟି ପାହାଚକୁ ଆପଣମାନେ ପନ୍ଦରବର୍ଷ ତଳେ ଆଗ୍ରହରେ ଗ୍ରହଣକରିଛନ୍ତି । ସମୟ ମୋତେ ଅନେକ ପାହାଚ ଚଢ଼ାଇଛି । ଅନେକ ଦୃଷ୍ଟିକୋଣରୁ ଆମ ସାହିତ୍ୟର କବି ଓ କବିତାକୁ ପରଖିବାର ସୁଯୋଗ ମଧ୍ୟ ଦେଇଛି । ସେହି ସମସ୍ତ ଅନୁଭୂତି ଓ ଅଭିଜ୍ଞତାକୁ ପୁଞ୍ଜିକରି ଲିଖିତ ଏହି ପୁସ୍ତକଟିକୁ ଆପଣମାନଙ୍କ ନିକଟରେ ପହଞ୍ଚାଇବାର ଆଶା ରଖିଛି । ଅନେକ ପ୍ରାତଃସ୍ମରଣୀୟ ସମାଲୋଚକ ସାହିତ୍ୟର ଏହି ବିଭାଗଟିକୁ ବେଶ୍ ଗୁରୁତ୍ୱର ସହିତ ଆଲୋଚନା କରି ଅନେକ ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି । ସେମାନଙ୍କର ଗବେଷଣା ଓଡ଼ିଆ କବିତାର ଦିଶା ସଂପର୍କରେ ଆପଣମାନଙ୍କୁ ଯଥେଷ୍ଟ ତଥ୍ୟ ପ୍ରଦାନ କରିଛି । ଏହି ପୁସ୍ତକ ପ୍ରକାଶନ ଅବସରରେ ସେହି ପୂର୍ବସୂରୀମାନଙ୍କୁ ମୋର ଶ୍ରଦ୍ଧା ଓ ସମ୍ମାନ ନିବେଦନ କରୁଛି ।

ମୋର ଏହି ଆଲୋଚନାଗୁଡ଼ିକ ବିଭିନ୍ନ ସମୟରେ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ଏ ଆଲୋଚନାଗୁଡ଼ିକର ତ୍ରୁଟି ଏକାନ୍ତ ଭାବରେ ମୋର ଓ ଶ୍ରେୟ ମୋ ଭାଷା ସାହିତ୍ୟର ସ୍ରଷ୍ଟାମାନଙ୍କର ପ୍ରାପ୍ୟ । ମୋ ପରିବାରର ସମସ୍ତ ସଦସ୍ୟ ଏ ପୁସ୍ତକର ପ୍ରକାଶିତ ରୂପ ଦେଖିବାକୁ ଆଗ୍ରହୀ । ସେମାନଙ୍କୁ ମୋର ଶୁଭକାମନା । ମୋର ଆପଣାର ଛାତ୍ରଛାତ୍ରୀମାନେ ଦୀର୍ଘଦିନ ଏ ପୁସ୍ତକପାଇଁ ଉର୍ଦ୍ଧ୍ୱଶ୍ୱାସରେ ଅପେକ୍ଷା କରିଛନ୍ତି । ଓଡ଼ିଆ ସାହିତ୍ୟର ଦୁଃସ୍ଥିତି କାଳରେ ସେମାନଙ୍କର ସାହିତ୍ୟପ୍ରୀତି ଦୀର୍ଘସ୍ଥାୟୀ ହେଉ । ସୃଷ୍ଟି ଓ ସମାଲୋଚନାର ଶୋଣିତ ସଂପର୍କ ପୁନର୍ବାର ସ୍ୱୀକୃତ ହୋଇଯାଉ ।

ସହିଦନଗର

**ସଂଘମିତ୍ରା ମିଶ୍ର**

# ସୂଚୀପତ୍ର


| | | |
|---|---|---|
| ୧ । | 'ଚନ୍ଦ୍ରଭାଗା'ର କବି ରାଧାନାଥ | ୧ |
| ୨ । | ଭକ୍ତକବି ମଧୁସୂଦନଙ୍କ କବିତାରେ ପାରତ୍ରିକ ଭାବନା | ୮ |
| ୩ । | ଫକୀରମୋହନଙ୍କ କାବ୍ୟ-କବିତା : ଏକ ଆଧୁନିକ ଆକଳନ | ୧୫ |
| ୪ । | କବି ଗୋଦାବରୀଶ ମହାପାତ୍ର | ୩୨ |
| ୫ । | ଭୀମଭୋଇଙ୍କ ଭଜନମାଳା : ଏକ ମୁକ୍ତ ଅନୁଭବ | ୪୧ |
| ୬ । | ଗଙ୍ଗାଧର ସାହିତ୍ୟର ବ୍ୟଙ୍ଗାତ୍ମକ ଓ ଉପଦେଶାତ୍ମକ କଥା | ୫୩ |
| ୭ । | ପଲ୍ଲୀକବି ନନ୍ଦକିଶୋର : ଏକ ମୂଲ୍ୟାଙ୍କନ | ୬୨ |
| ୮ । | କବି କାଳିନ୍ଦୀଚରଣ ପାଣିଗ୍ରାହୀ | ୭୧ |
| ୯ । | ବୈକୁଣ୍ଠ କାବ୍ୟ-ମାନସ ଓ ଅନ୍ୟପାଳୀର ଉତ୍କଣ୍ଠା | ୭୯ |
| ୧୦ | କବି ମାୟାଧର ମାନସିଂହଙ୍କ କବିତାରେ ପ୍ରକୃତି | ୮୮ |
| ୧୧ । | ସାହିତ୍ୟ ସାଧକ ମାନସିଂହ | ୯୮ |
| ୧୨ । | ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ପଦଧ୍ୱନି ଓ କବି ବାଞ୍ଛାନିଧି | ୧୧୨ |
| ୧୩ । | କବି ପଦ୍ମଚରଣ : ଏକ ଆକଳନ | ୧୨୦ |
| ୧୪ । | ଗଡ଼ନାୟକ କାବ୍ୟବିଭା | ୧୨୮ |
| ୧୫ । | ଆଧୁନିକ ଓଡ଼ିଆ କବିତା ଅଶ୍ଳୀଳ କି ? | ୧୪୦ |
| ୧୬ । | ବିଶ୍ୱାସର ଦର୍ପଣରେ ସମୟର ମୁହଁ | ୧୪୪ |
| ୧୭ । | କବି କୃଷ୍ଣଚନ୍ଦ୍ର ତ୍ରିପାଠୀ : ଏକ ମୁଗ୍ଧ ଦୃଷ୍ଟି | ୧୫୪ |


---

# 'ଚନ୍ଦ୍ରଭାଗା'ର କବି ରାଧାନାଥ

କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ନବଯୁଗର ଆଦ୍ୟ ପ୍ରବର୍ତ୍ତକଭାବରେ ସମ୍ମାନିତ । ମଧ୍ୟଯୁଗୀୟ ସାହିତ୍ୟର ପ୍ରବାହରୁ ମୁକ୍ତକରି, ଓଡ଼ିଆ ସାହିତ୍ୟକୁ ଏକ ନୂତନ ଦିଗ୍‌ଦର୍ଶନ ଦେବାରେ ତାଙ୍କର ଅବଦାନ ସର୍ବଥା ସ୍ୱୀକାର୍ଯ୍ୟ । ଭାରତବର୍ଷରେ ନବଜାଗରଣ ସମୟରେ ଯେଉଁ କେତେଜଣ ମୁଷ୍ଟିମେୟ ସାହିତ୍ୟସାଧକ ଓଡ଼ିଶାରେ ସେହି ଜାଗରଣର ବାର୍ତ୍ତା ପ୍ରସାର କରିଥିଲେ ସେମାନେ ହେଲେ କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ ସେନାପତି, ଭକ୍ତକବି ମଧୁସୂଦନ ରାଓ, ବିଚିତ୍ରାନନ୍ଦ ଦାସ, ମଧୁସୂଦନ ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ, ବାସୁଦେବ ସୁଡ଼୍ଳ ଦେବ, କର୍ମବୀର ଗୌରୀଶଙ୍କର ରାୟ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଓ ପଣ୍ଡିତ ଗୋବିନ୍ଦ ରଥ ପ୍ରଭୃତି । ଏମାନେ ସମସ୍ତେ ସମାଜର ବିଭିନ୍ନ ସ୍ତରରେ ସଚେତନଭାବରେ ଆଧୁନିକ ଜୀବନବୋଧର ସଂଚାର କରାଇଥିଲେ । ଫକୀରମୋହନ ଓଡ଼ିଶାର ମାଟି ଓ ମାଆ ମୁହଁର ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେଇଥିଲେ । ମଧୁସୂଦନ ରାଓ ଥିଲେ ଶିକ୍ଷକ ତଥା ଭକ୍ତକବି । ଶିଶୁ ପ୍ରାଣକୁ ଆଧ୍ୟାତ୍ମିକତା ଆଡ଼କୁ ଆକର୍ଷିତ କରାଇବା ଦିଗରେ ତାଙ୍କର ସ୍ରଷ୍ଟାପ୍ରାଣ ନିୟୋଜିତ ହୋଇଥିଲା । ପ୍ୟାରୀମୋହନ ଇତିହାସ ରଚନାରେ ମନୋନିବେଶ କରି ଜାତିକୁ ଅତୀତ ସଚେତନ କରିଥିଲେ । ସୁଡ଼୍ଳ ଦେବଙ୍କର ଜାତି ଓ ଭାଷାପ୍ରୀତି ଥିଲା ଉଲ୍ଲେଖନୀୟ । ଗୌରୀଶଙ୍କର 'ଉତ୍କଳଦୀପିକା'ର ସଂପାଦକଭାବରେ ନିଜର ସାମାଜିକ ଦାୟିତ୍ୱ ସଂପାଦନ କରିଥିଲେ । ବିଚ୍ଛନ୍ଦଚରଣ ପ୍ରାଚୀନ ସାହିତ୍ୟର ଲୁପ୍ତ ରତ୍ନରାଜି ଉଦ୍ଧାର ଦିଗରେ ନିଜର ସମସ୍ତ ଶକ୍ତି ବିନିଯୋଗ କରିଥିଲେ । ସମାଜ ସଂସ୍କାର ଦିଗରେ ଗୋବିନ୍ଦ ରଥଙ୍କ ଉଦ୍ୟମ ଉଦାହରଣଯୋଗ୍ୟ ଥିଲା । ଗୋଟିଏ କଥାରେ କହିଲେ ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଜନ୍ମ ଏହି ଯୋଗ୍ୟ ଉତ୍କଳୀୟଗଣ ନିଜ ନିଜ ଶ୍ରୀସାଧନା ତଥା ଆନ୍ତରିକତା ବଳରେ ଓଡ଼ିଶାରେ ଏକ ନୂତନ ଜୀବନବୋଧ ସଂଚାର କରାଇପାରିଥିଲେ ।

ରାଧାନାଥଙ୍କ ପରିସର ଥିଲା ଏମାନଙ୍କଠାରୁ ପରିବ୍ୟାପ୍ତ । ସେ ସ୍କୁଲ ଇନ୍‌ସପେକ୍ଟର ଥିବା ସମୟରେ ଓଡ଼ିଶାର ପ୍ରାୟ ସମସ୍ତ ଅଞ୍ଚଳ ଗସ୍ତ କରିଥିଲେ ।

ନିଜ ଜୀବିକାର ସୁଯୋଗ ନେଇ ସେ ଗ୍ରାମ୍ୟ ଓଡ଼ିଶାର ଛବିଳ ପ୍ରକୃତିକୁ ଅବଲୋକନ କରିଥିଲେ ଓ ଜୀବନ ଦେଇ ସେଗୁଡ଼ିକୁ ଜୀବନ୍ତଭାବରେ ଲିପିବଦ୍ଧ କରିଥିଲେ । ପାଠ୍ୟପୁସ୍ତକଭାବରେ ନିର୍ବାଚିତ ହୋଇ ତାଙ୍କର କାବ୍ୟଗୁଡ଼ିକ ତତ୍କାଳୀନ ମୁଷ୍ଟିମେୟ ଶିକ୍ଷିତ ସମାଜର ସମାଦର ଲାଭ କରିପାରିଥିଲା । ଏଥି ସହିତ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଏହି କବି ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ଆଗ୍ରହୀ ଥିଲେ । ତେଣୁ ପାଶ୍ଚାତ୍ୟ ସାହିତ୍ୟର ଟ୍ରାଜିକ୍ ଧର୍ମ ସହିତ ସମାଜ-ପ୍ରତିବଦ୍ଧତା ତାଙ୍କୁ ପ୍ରଭାବିତ କରିଥିଲା । ତାଙ୍କ ସାହିତ୍ୟସୃଷ୍ଟିକୁ ଆଲୋଚକମାନେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସୁଷମ ସମନ୍ୱୟଭାବରେ ଅଭିହିତ କରିଛନ୍ତି ।

ବଂଗଳାର ‘କବିତାବଳି’ ୧/୨ ଓ ‘ଲେଖାବଳୀ’ ନାମକ ତିନୋଟି ବଂଗଳା ପୁସ୍ତକ ତାଙ୍କର ପ୍ରାଥମିକ ପର୍ଯ୍ୟାୟର ରଚନା । ପରେ ସେ ବଂଗୀୟ କବି ମାଇକେଲ୍ ମଧୁସୂଦନ ଦତ୍ତଙ୍କର ଅମିତ୍ରାକ୍ଷର ଛନ୍ଦର ଶୈଳୀକୁ ଅନୁସରଣ ମଧ୍ୟ କରିଛନ୍ତି । ଏତଦ୍‌ବ୍ୟତୀତ, ମେଘଦୂତର ଅନୁବାଦ, ଇତାଲୀୟ ଯୁବା ଓ ବିବେକୀ ପ୍ରବନ୍ଧ ରାଧାନାଥୀ ପ୍ରତିଭାର ପ୍ରଥମ ରଶ୍ମି । ପରେ କେଦାରଗୌରୀ, ନନ୍ଦିକେଶ୍ୱରୀ, ଚନ୍ଦ୍ରଭାଗା, ଚିଲିକା, ଦରବାର, ମହାଯାତ୍ରା, ଯଯାତିକେଶରୀ, ଉଷା ଭଳି କାବ୍ୟମାନ ରଚନା କରି ସେ ଉତ୍କଳଜନନୀଙ୍କୁ ଉପହାର ଦେଇଛନ୍ତି, ‘କେଦାରଗୌରୀ’ ସେକ୍ସପିୟରଙ୍କ 'Pyramus & This be' ନାମକ କବିତାର ଅନୁବାଦ । ସେହିପରି ଓଭିଡ୍‌ଙ୍କର 'Metamorphosis'ର ଛାୟା ମଧ୍ୟ କେଦାରଗୌରୀରେ ପଡ଼ିଛି । ‘ଚିଲିକା’ରେ "Tennysonଙ୍କର The Lady of the Lakeର ଛାୟା, ଆସ୍କାଇଲସ୍‌ଙ୍କର ‘ଆଗାମେମ୍‌ନନ୍’ ନାଟକ ‘ପାର୍ବତୀ’ ରଚନାର ପ୍ରେରକ । ‘ଉଷା’ ଉଇଲିୟମ୍ ମୋରିସ୍‌ଙ୍କର "Atlanta's Race'ର ଛାୟାରେ ରଚିତ । ‘ଚନ୍ଦ୍ରଭାଗା’ କାବ୍ୟରେ ଓଭିଡ୍‌ଙ୍କର Apollo & Daphineର ପ୍ରଣୟ କାହାଣୀ ମୁଖ୍ୟ ପ୍ରେରକ ଉପାଦାନ । ଏସବୁ ଆଲୋଚନା ପୁନଃପୌନିକ ହୋଇଥିଲେହେଁ ପାଶ୍ଚାତ୍ୟ ଦର୍ଶନ ଓ ଜୀବନଯାତ୍ରାର ନୂତନ ମାର୍ଗଦର୍ଶକଭାବରେ ରାଧାନାଥଙ୍କୁ ପ୍ରତିଷ୍ଠା ଦେବାରେ ସହାୟକ । ପାଶ୍ଚାତ୍ୟ ସାହିତ୍ୟରୁ କଥା-କଂକାଳ ଆନୟନକରି ଏହାକୁ ପ୍ରାଚ୍ୟ ପାଣିପବନରେ ପରିପୁଷ୍ଟ କରିବା ରାଧାନାଥୀ ପ୍ରତିଭାର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ । ଓଡ଼ିଶାର ଭୂଗୋଳ ତଥା ଇତିହାସ ସମ୍ପର୍କୀୟ ସମ୍ୟକ୍ ଜ୍ଞାନ ସହିତ ପାଶ୍ଚାତ୍ୟ ସାହିତ୍ୟ ଅବବୋଧ ଏକତ୍ର ହୋଇ ରାଧାନାଥୀ ସାହିତ୍ୟର ଭିତ୍ତିସ୍ଥାପନ କରିଛନ୍ତି । ଭାଷାର ଅଦ୍ଭୁତ ଆକର୍ଷଣୀ ଶକ୍ତି, ପ୍ରକୃତି ବର୍ଣ୍ଣନାର ଅନୁପମ ଲାବଣ୍ୟ ସହିତ କାରୁଣ୍ୟରସର ମହାପ୍ରବାହ ରାଧାନାଥଙ୍କୁ ଯଥାର୍ଥରେ ପ୍ରାଚ୍ୟ-ପାଶ୍ଚାତ୍ୟର ସଂଯୋଗ ସେତୁରେ ରୂପାନ୍ତରିତ କରିଛି ।

'ଚନ୍ଦ୍ରଭାଗା' ସଂପର୍କୀୟ ବିଶେଷ ଆଲୋଚନା ସମୟରେ ଆମକୁ ରାଧାଥଙ୍କର ସୃଷ୍ଟିସମ୍ଭାରର କିଞ୍ଚିତ୍ ଅନୁଧାନ କରିବାକୁ ପଡ଼ିବ । 'ମେଘଦୂତ' ରଚନା ରାଧାନାଥଙ୍କୁ ଯଥେଷ୍ଟ ଆତ୍ମବିଶ୍ୱାସ ପ୍ରଦାନ କରିଛି । 'କବିତାବଳୀ' ସେହି ଆତ୍ମବିଶ୍ୱାସକୁ ବହୁଗୁଣିତ କରିଛି । କେଦାରଗୌରୀର ଟ୍ରାଜିକ୍ ପ୍ରେମକାହାଣୀ ଓଡ଼ିଶାର ପାଠକମାନଙ୍କୁ ଅନେକ ଦିନ ଆବିଷ୍ଟ କରି ରଖିଛି । 'ଚନ୍ଦ୍ରଭାଗା'ର ଅସାଧାରଣ ପ୍ରେମ ଭାବନାର ପରିଣତିରେ କୋଣାର୍କର ପତନକୁ ମଧ୍ୟ ପାଠକ ଗ୍ରହଣ କରିନେଇଛି । ଏପରିକି ଉଷାର ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱିତ ରୂପ ପାଠକକୁ ବିସ୍ମିତ କରିବାରେ ସଫଳ ହୋଇଛି; କିନ୍ତୁ 'ପାର୍ବତୀ' ରଚନା ପରେ ରାଧାନାଥ-ପାଠକ ବିମୁଖତାର ଶିକାର ହୋଇଛନ୍ତି ଓ ବାରମ୍ବାର ଉପହସିତ ହୋଇ ମାନସିକ ଆଘାତ ପାଇଛନ୍ତି । ତେଣୁ 'ଚିଲିକା' ରଚନା କରି ସେ ନିଜର ଜାତୀୟତାର ପରିଚୟ ଦେବାକୁ ଚାହିଁଛନ୍ତି । 'ମହାଯାତ୍ରା'ରେ ଏହି ଜାତୀୟତାର ବିଜୟବାର୍ତ୍ତା ଉଦ୍‌ଘୋଷିତ ହୋଇଛି । 'ଯଯାତିକେଶରୀ' ରଚନା ବେଳକୁ ରାଧାନାଥୀ ପ୍ରତିଭାର ସାୟାହ୍ନକାଳ ଉପନୀତ ବୋଲି ବୁଝିହୁଏ । ତା'ପରେ ସେ 'ତୁଳସୀସ୍ତବକ' ରଚନା କରିଛନ୍ତି ଓ 'ଦରବାର'ରେ ସମକାଳୀନ ରାଜନୀତି ତଥା ସମାଜନୀତିକୁ ବ୍ୟଙ୍ଗ କରିଛନ୍ତି । 'ଉର୍ବଶୀ' ଓ 'ଦଶରଥ ବିୟୋଗ' ଏହି ସାୟାହ୍ନର ରଚନା ।

'ଚନ୍ଦ୍ରଭାଗା' ରଚନାରେ ରାଧାନାଥଙ୍କର ପ୍ରକୃତିପ୍ରୀତି, ଜାତୀୟଭାବନା ଓ ସୌନ୍ଦର୍ଯ୍ୟ ଚେତନା ସହିତ ଟ୍ରାଜିକ୍ ମାନସିକତାର ପରିଚୟ ମିଳିଥାଏ । ନାୟିକା ଚନ୍ଦ୍ରଭାଗାର ନାମାନୁସାରେ ଏହି ଖଣ୍ଡକାବ୍ୟ ନାମିତ । ପୌଷପୂର୍ଣ୍ଣମୀରେ ଜଗନ୍ନାଥଙ୍କ ମନ୍ଦିରରେ ଅଭିଷେକୋତ୍ସବ ପାଳିତ ହୁଏ । ଏହି ଅଭିଷେକ ଉତ୍ସବରେ ଜଗନ୍ନାଥଙ୍କୁ ଭେଟିବାପାଇଁ ବିଭିନ୍ନ ସ୍ଥାନରୁ ଦେବଦେବୀମାନେ ଶ୍ରୀକ୍ଷେତ୍ରକୁ ଆଗମନ କରିଛନ୍ତି । ଏମାନଙ୍କ ମଧ୍ୟରେ ଅଛନ୍ତି କୋଣାର୍କ ନିକଟସ୍ଥ ହରଚଣ୍ଡୀ, ବାଣପୁରର ଭଗବତୀ, ଭୁବନେଶ୍ୱରୀ, ରଣପୁରର ମଣିନାଗ, ବାଙ୍କୀର ଚର୍ଚ୍ଚିକା, ଖୋର୍ଦ୍ଧାର ବରୁଣେଇ, ଝଂକଡ଼ର ଶାରଳା, କାକଟପୁରର ମଂଗଳା, ଚିଲିକାର କାଳିଜାଈ ଓ କୋଣାର୍କର ନବଗ୍ରହପୀଠରୁ ସ୍ୱୟଂ ସୂର୍ଯ୍ୟଦେବ । ଏଠାରେ ଲକ୍ଷ୍ୟ କରାଯିବାର କଥା ସୂର୍ଯ୍ୟଦେବ ଏକମାତ୍ର ଶାସ୍ତ୍ରୀୟ ଦେବତା ଯେ କି ବିଭିନ୍ନ ସ୍ଥାନୀୟ ପ୍ରତିନିଧି ଦେବୀମାନଙ୍କ ସହିତ ଅଭିଷେକ ଉତ୍ସବରେ ଯୋଗଦେବାପାଇଁ ଶ୍ରୀକ୍ଷେତ୍ରକୁ ଆସିଛନ୍ତି । କନ୍ଦର୍ପ ଓ ତାଙ୍କର ପରମାସୁନ୍ଦରୀ ପତ୍ନୀ ରତି କୌଣସି ସ୍ଥାନୀୟ ଦେବତା ନୁହନ୍ତି ବା ସେ ଅନ୍ୟମାନଙ୍କ ସହିତ ସଂପୃକ୍ତ ମଧ୍ୟ ନୁହନ୍ତି । ତେଣୁ ସୂର୍ଯ୍ୟଦେବ ସେମାନଙ୍କର 'ପଛେ ଆସି ଆଗେ ପଶିଲେ' ନୀତିକୁ ଗ୍ରହଣ କରିନପାରି ଅସହିଷ୍ଣୁ ହୋଇଛନ୍ତି ।

ଏଠାରେ ରାଧାନାଥଙ୍କର ଆହରଣ କୌଶଳର କିଞ୍ଚିତ୍ ଆଲୋଚନା କରିବା ଦରକାର । ଗ୍ରୀକ୍ କବି ଓଭିଡ଼ଙ୍କର ଆପୋଲୋ ଡାଫ୍‌ନୀ କାହାଣୀ ହିଁ ଚନ୍ଦ୍ରଭାଗାର କଥା-କଂକାଳ, ପେନିୟସ୍ ନଦୀର କନ୍ୟା ଡାଫ୍‌ନୀର ସୌନ୍ଦର୍ଯ୍ୟହିଁ ଆପୋଲୋ ବା ସୂର୍ଯ୍ୟଦେବତାଙ୍କୁ ବିମୋହିତ କରିଛି । କ୍ୟୁପିଡ଼ (କନ୍ଦର୍ପ) ଏଥିପାଇଁ ଆପୋଲୋଙ୍କୁ ପ୍ରେମର ଶର ନିକ୍ଷେପ କରିଛି । ଆପୋଲୋ ମେଷପାଳକ ରୂପରେ ଡାଫ୍‌ନୀର ପଶ୍ଚାଧାବନ କରିଛନ୍ତି । ଆତ୍ମରକ୍ଷାପାଇଁ ଡାଫ୍‌ନୀ ନିଜର ପିତାଙ୍କୁ ପ୍ରାର୍ଥନା କରିଛି ଓ ପରିଶେଷରେ ଏକ ଲରେଲ୍ ବୃକ୍ଷରେ ପରିଣତ ହୋଇଛି । ଚନ୍ଦ୍ରଭାଗାରେ କନ୍ଦର୍ପ ସୂର୍ଯ୍ୟଙ୍କ ବ୍ୟବହାରରେ କ୍ଷୁବ୍ଧହୋଇ ପ୍ରତିଶୋଧପାଇଁ ସୁଯୋଗ ଖୋଜୁଥିବା ସମୟରେ ଚନ୍ଦ୍ରଭାଗା ଉପରେ ତାଙ୍କ ଦୃଷ୍ଟି ପଡ଼ିଛି । ସୁମନ୍ୟୁ ଋଷିଙ୍କଦ୍ୱାରା ପାଳିତା ସାଗର ଅପ୍‌ସରୀର କନ୍ୟା ଚନ୍ଦ୍ରଭାଗା ତରୁଣୀ ହେଲେହେଁ ପ୍ରେମ ସମ୍ପର୍କରେ ତା'ର ଧାରଣାନାହିଁ । କନ୍ଦର୍ପ ବାଣରେ ଅତିଷ୍ଠ ସୂର୍ଯ୍ୟଦେବ ବ୍ରାହ୍ମଣ ଯୁବକ ବେଶ ଧରି ଚନ୍ଦ୍ରଭାଗାର ଅନୁଧାବନ କରିଛନ୍ତି । ଭୟଭୀତା ଚନ୍ଦ୍ରଭାଗା ନିଜ ଜନନୀଙ୍କୁ ପ୍ରାର୍ଥନାକରି ସମୁଦ୍ରରେ ଝାସ ଦେଇଛି । ଆପୋଲୋ ଡାଫ୍‌ନୀଙ୍କୁ ଅନୁଧାବନ କରୁଥିବାର ଦୃଶ୍ୟକୁ ଓଭିଡ଼ ହେଟାବାଘ କବଳରୁ ମେଷଶାବକ, ସିଂହ ନିକଟରୁ ମୃଗ ବା ସଞ୍ଚାଣଠାରୁ କପୋତର ପଳାୟନଭାବରେ ବର୍ଣ୍ଣନା କରିଛନ୍ତି । ରାଧାନାଥଙ୍କ ବର୍ଣ୍ଣନାରେ ଏହା ସଞ୍ଚାଣଠାରୁ କପୋତ, ଶ୍ୱାନଠାରୁ ଶଶକ ବା ସିଂହଠାରୁ ମୃଗର ପଳାୟନଭାବରେ ଚିତ୍ରିତ ହୋଇଛି; କିନ୍ତୁ କନ୍ଦର୍ପ ସୂର୍ଯ୍ୟଦେବଙ୍କ ଅନୁରାଗ ଓ ଚନ୍ଦ୍ରଭାଗାଙ୍କୁ ବିରାଗ ଶର ନିକ୍ଷେପ କରିବା ଆମ ପରଂପରା ସମନ୍ୱିତ ନୁହେଁ । ଧର୍ମର ଦେବତା ସୂର୍ଯ୍ୟଦେବ ଯେକୌଣସି କାମନାସିକ୍ତ ଯୁବକ ଭଳି ଜଣେ ତରୁଣୀର ପଶ୍ଚାଧାବନ କରିବା କାଳେ ଆମେ ପରଂପରାରେ ଗୃହୀତ ହେବନାହିଁ ସେଭଳି ଆଶଂକାକରି ହୁଏତ ରାଧାନାଥ ସେଥିରେ ପୌରାଣିକତାର ଯୁକ୍ତିଗୁଡ଼ିଏ ଉପସ୍ଥାପିତ କରିଦେଇଛନ୍ତି ।

''ମନ୍ତ୍ରବଳେ କୁନ୍ତୀ ଆକର୍ଷି ମୋତେ ଆଣିଣଥିଲା
ଆଣିଲୁ ଲାବଣ୍ୟ ରଜ୍ଜୁରେ ବାନ୍ଧି ତୁହି ଛଇଳା ।''

କୌଣସି ଦୁଃସ୍ଥିତିରେ ପଡ଼ି କନ୍ୟା ନିଜର ପିତାଙ୍କୁ ସ୍ମରଣ କରିବା ଅପେକ୍ଷା ମାତାଙ୍କୁ ସ୍ମରଣ କରିବା ଅଧିକ ମନସ୍ତାତ୍ତ୍ୱିକ ମନେହୁଏ । ନାୟିକା ସମୁଦ୍ରରେ ଝାସ ଦେବା ମଧ୍ୟ ଅଧିକ ମାନବୀୟ । ଏହିଭଳି ବିଚାର ସହିତ ଆଉ ଏକ ରାଧାନାଥୀ ଚିନ୍ତା ପାଠକକୁ ବିସ୍ମିତ କରେ । ତାହା ହେଉଛି ଚନ୍ଦ୍ରଭାଗାର ଆତ୍ମବିସର୍ଜନ ପରେ ଋଷି ସୁମନ୍ୟୁଙ୍କର କ୍ରୋଧ ଓ ଫଳସ୍ୱରୂପ ଅନନ୍ୟ କଳାକୃତି କୋଣାର୍କର ପତନ । ଏଠାରେ ରାଧାନାଥୀ ପ୍ରତିଭାର ଦିଗନ୍ତକୁ ଉତ୍କଳୀୟ ସ୍ୱାଭିମାନ ଆହୁରି ଦୀପ୍ତିମନ୍ତ

କରିଛି । କୋଣାର୍କ ଭଳି ଅନୁପମ ମନ୍ଦିର ସେହିଭଳି ଦୈବୀ ପ୍ରଭାବରୁହିଁ ବିଲୀନ ହୋଇପାରେ ଅନ୍ୟଥା କୋଣାର୍କର ପତନ ଅସମ୍ଭବ । ଏଠାରେ ଓଭିଡ଼ ଲୋଡ଼ା ହୁଅନ୍ତି ନାହିଁ ଓ ଚନ୍ଦ୍ରଭାଗା ତଥା କୋଣାର୍କର ଗୁରୁତ୍ୱ ସ୍ୱୀକୃତ ହୋଇଯାଏ ।

ତେବେ କୋଣାର୍କର ପୃଷ୍ଠଭୂମିରେ ସମୁଦ୍ରତୀରରେ ଅଭିନୀତ ହେଉଥିବା ଏହି ନାଟକଟିରେ ଆମେ ପ୍ରାରମ୍ଭ ଗତି ଓ ଟ୍ରାଜିକ୍ ପରିଣତି ଦେଖିପାରୁ । ସୂର୍ଯ୍ୟଦେବ ନାୟକ ଓ ଚନ୍ଦ୍ରଭାଗା ନାୟିକା । ସହଜଭାବରେ ପାରସ୍ପରିକ ପ୍ରେମ ଆରମ୍ଭ ହେବାପୂର୍ବରୁ ଖଳନାୟକ କନ୍ଦର୍ପର ଶର ସେମାନଙ୍କୁ ବିକ୍ଷିପ୍ତ କରିଦିଏ । ଅଲଭ୍ୟ ନାୟିକା ଲାଭ ଆଶାରେ ସୂର୍ଯ୍ୟଦେବ ଚନ୍ଦ୍ରଭାଗାକୁ ଅନୁଧାବନ କରନ୍ତି । ଚନ୍ଦ୍ରଭାଗାର କାରୁଣ୍ୟ ଓ ଆତ୍ମବିସର୍ଜନରେ ନାଟକ ଶେଷ ହୁଏ । ଚନ୍ଦ୍ରଭାଗାର ରୂପବର୍ଣ୍ଣନାରେ ମଧ୍ୟ ରାଧାନାଥ ଯଥେଷ୍ଟ ଶାଳୀନତା ପ୍ରଦର୍ଶନ କରିଛନ୍ତି ।

''ତୁଟେ ଯୁବା-ଧୈର୍ଯ୍ୟ-କବଚ ପ୍ରତି କଟାକ୍ଷ-ତୀରେ
ଉଠେ ନବଶୋଭା ତରଂଗ ପ୍ରତି ଅଂଗଭଂଗୀରେ
X X X
ଚୁମ୍ବିଚରଣକୁ ଚିକୁର ରାଜି ଦୋଳେ ଚରମେ
ମଦନ କେତନ ଉଡ଼ଇ କିବା ଶୋଭା ଆଶ୍ରମେ ।''

ଏତାଦୃଶ କଳ୍ପନା ଭିତରେ ପାଠକ ଆଉ ଗୋଟିଏ ମନସ୍ତାତ୍ତ୍ୱିକ ଦିଗ ଦେଖିପାରେ । ପ୍ରେମ ପ୍ରସଂଗରେ ସର୍ବଦା ଅରୁଚି ଥିବା ନାୟିକାର ଅଯତ୍ନ ବିନ୍ୟସ୍ତ ସୌନ୍ଦର୍ଯ୍ୟ ଦେଖି ସୂର୍ଯ୍ୟଦେବ ମୋହଗ୍ରସ୍ତ ହୁଅନ୍ତି କାରଣ ପ୍ରଥମରେ କନ୍ଦର୍ପର ପ୍ରତିଶୋଧପ୍ରବଣତା କାର୍ଯ୍ୟକାରୀ ହୁଏ ଓ ଦ୍ୱିତୀୟରେ ସୂର୍ଯ୍ୟଦେବତା ଏକ ରସିକ ଯୁବକର ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି । ରସିକର ଗୁଣ ହେଉଛି—

''କିନ୍ତୁ ରୂପଥିଲେ ପ୍ରଚ୍ଛନ୍ନେ କିବା ରସିକ ଛାଡ଼େ
ପୁଷ୍ପେଥିଲେ ମଧୁ ଯତନେ ଖୋଜି ମଧୁପକାଢ଼େ ।''

ତେଣୁ ରାଧାନାଥଙ୍କର ରୂପାନ୍ୱେଷୀ ଦୃଷ୍ଟି ଚନ୍ଦ୍ରଭାଗାର ରୂପକୁ ଆହୁରି ଜୀବନ୍ତ ତଥା ମନୋଜ୍ଞ କରି ଗଢ଼ିତୋଳିଛି । ଚନ୍ଦ୍ରଭାଗା ନିଜର ଜନନୀଙ୍କ ଶ୍ରଦ୍ଧାରୁ ବଂଚିତା । ସ୍ୱାଭାବିକ ସମାଜ ସ୍ୱୀକୃତ ସଂପର୍କ ବା ଜୀବନ ସଂପର୍କରେ ତା'ର ଧାରଣାନାହିଁ । ତେଣୁ ଅସହାୟା ତରୁଣୀ ନିଜକୁ ବଂଚାଇବାକୁ ନିଜ ଜନନୀଙ୍କୁ ପ୍ରାର୍ଥନା କରେ ଓ ଶକ୍ତିହୀନ ରୂପ ଅନେକ ବିପର୍ଯ୍ୟୟର କାରଣ ବୋଲି ସ୍ୱୀକାର କରେ । ସେ ନିଜ ଜନନୀଙ୍କୁ କହେ—

''ଦିବ୍ୟରୂପ ତୋର, ତା ସଂଗେ ଅଛି ଦିବ୍ୟ ଶକତି
ଶକ୍ତିହୀନ ରୂପ କେବଳ ସିନା ଲଭେ ଦୁର୍ଗତି ।''

ଏ କଥାର ତାତ୍ପର୍ଯ୍ୟ ଚରିନ୍ତନ । ନିଜର ରୂପକୁ ନିନ୍ଦା କରିବା ଓ ବାରମ୍ବାର ନିଜକୁ ସେଥିପାଇଁ ଧିକ୍କାର କରିବାର ଚିନ୍ତାଧାରା ଆମ ସମାଜରେ ବହୁପ୍ରାଚୀନ । ସୌନ୍ଦର୍ଯ୍ୟ ସହିତ ଶୌର୍ଯ୍ୟର ସହାବସ୍ଥାନହିଁ ବ୍ୟକ୍ତିକୁ ପରିପୂର୍ଣ୍ଣତା ଦେଇପାରେ ।

ଚନ୍ଦ୍ରଭାଗା ଏକ ନଦୀ, ଯାହା ବେଲେଶ୍ୱର ନିକଟରେ ସମୁଦ୍ର ସହିତ ମିଶିଯାଇଛି । ଏହି ପ୍ରାକୃତିକ ଚିତ୍ରକୁ କୋଣାର୍କ ସହିତ ଏକୀଭୂତ କରି ମାନବୀୟ ଭାବପ୍ରବଣତାପୂର୍ଣ୍ଣ କାବ୍ୟ ପ୍ରସ୍ତୁତ କରିବାରେ ରାଧାନାଥଙ୍କର କବିତ୍ୱର୍ ସ୍ପର୍ଶ ଅନୁଭବ କରିହୁଏ । ସୂର୍ଯ୍ୟ ଓ କନ୍ଦର୍ପଙ୍କ କଥୋପକଥନ (dialogue) ଓ ସୂର୍ଯ୍ୟଙ୍କର ଚନ୍ଦ୍ରଭାଗାକୁ ପ୍ରେମ ନିବେଦନ ଯେକୌଣସି ନାଟକର ସଂଳାପତୁଲ୍ୟ ଆକର୍ଷଣୀୟ । ସୂର୍ଯ୍ୟ ନିଜର ବୈଶିଷ୍ଟ୍ୟ ସଂପର୍କୀୟ ଯେଉଁ ସବୁ ତଥ୍ୟ ପ୍ରଦାନ କରିଛନ୍ତି ତାହା ସୂର୍ଯ୍ୟଙ୍କର ଶାସ୍ତ୍ରୀୟତାର ପ୍ରମାଣ ଦିଏ । ତାଙ୍କର ଅନ୍ୟନାମ ତ୍ୱିଷାମ୍ପତି, ତପନ, ବିଶ୍ୱଚକ୍ଷୁ । ତାଙ୍କର ତେଜ ସମଗ୍ର ସଂସାରକୁ ବଂଚାଇ ରଖିଚି । ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟ ନିକଟରେ ସୂର୍ଯ୍ୟପତ୍ନୀ ଛାୟାଙ୍କର ସୌନ୍ଦର୍ଯ୍ୟ ମଳିନ ପଡ଼ିଯିବ । ଏଭଳି ଚାଟୁବଚନ ଭିତରେ ସୂର୍ଯ୍ୟଙ୍କର ରସିକ ରୂପଟିହିଁ ସ୍ପଷ୍ଟ ହୋଇଯାଏ ।

ରାଧାନାଥଙ୍କର ପ୍ରାୟ ସମସ୍ତ କାବ୍ୟ ଟ୍ରାଜିକ୍‌ଧର୍ମୀ । ନାୟକ-ନାୟିକାଙ୍କର ଔତ୍ସୁକ୍ୟ, ମିଳନ ଓ ବିଚ୍ଛେଦରେ ପ୍ରେମର ନିଷ୍ଠା ପ୍ରତିପାଦନ ରାଧାନାଥୀ କାବ୍ୟଶୈଳୀର ବୈଶିଷ୍ଟ୍ୟ । ପ୍ରାୟ ପ୍ରତ୍ୟେକ କାବ୍ୟରେ ଦୈବୀଶକ୍ତି ନିୟନ୍ତ୍ରକ ଶକ୍ତି ଭାବରେ ପରିକଳ୍ପିତ । ସେହିପରି ଚନ୍ଦ୍ରଭାଗା ସାଗର ଅପସରୀଙ୍କ କନ୍ୟା । ସେହି ଅପସରୀଙ୍କ ବାନ୍ଧବୀ ବରୁଣକନ୍ୟା ଲକ୍ଷ୍ମୀ ଚନ୍ଦ୍ରଭାଗାପାଇଁ ବସ୍ତ୍ର-ଭୂଷଣ-ଅଳଙ୍କାର ପ୍ରଦାନ କରନ୍ତି । ସୌନ୍ଦର୍ଯ୍ୟରେ ଶକୁନ୍ତଳା ସହିତ ଚନ୍ଦ୍ରଭାଗା ତୁଳନୀୟା । ଦ୍ୱାପର ଯୁଗର କୁନ୍ତୀଦେବୀଙ୍କ ଭଳି ସେ ଶୌର୍ଯ୍ୟର ଦେବତା ସୂର୍ଯ୍ୟଙ୍କୁ ଟାଣିଆଣିପାରିଛି । ତେଣୁ ପୂର୍ବ ସଂପର୍କ ସ୍ମରଣ କରାଇ ରାଧାନାଥ ଚନ୍ଦ୍ରଭାଗାର ସୌନ୍ଦର୍ଯ୍ୟ ଓ ନିଷ୍ଠାକୁ ପ୍ରତିପାଦିତ କରିଛନ୍ତି । ମାତାଙ୍କୁ ସାହାଯ୍ୟପାଇଁ ନିବେଦନ କରି ଚନ୍ଦ୍ରଭାଗା ସମୁଦ୍ରରେ ଝାସ ଦେଇଛି । ଅନ୍ତ ହୋଇଛି ଗୋଟିଏ ଚରମ ଦୁଃଖାନ୍ତ ନାଟକ । ପ୍ରାୟଶ୍ଚିତପାଇଁ ନାୟକ ସୂର୍ଯ୍ୟଦେବଙ୍କୁ ମଧ୍ୟ ଅପେକ୍ଷା କରିବାକୁ ପଡ଼ିନାହିଁ । ସେ ଦୈବୀକର୍ତ୍ତୃକ ଦଣ୍ଡ ପାଇଛନ୍ତି । ଏଥିପାଇଁ ସୁମନ୍ୟୁ ଋଷିଙ୍କ ଅଭିଶାପ ପ୍ରେରକଭାବରେ କାର୍ଯ୍ୟ କରିଛି । ଟ୍ରାଜେଡ଼ିର ନାୟିକା ସର୍ବଥା ମୃତ୍ୟୁ ପରେ ମଧ୍ୟ ଅଖଣ୍ଡ ସାଫଲ୍ୟର ଅଧିକାରିଣୀ ହୋଇଥାନ୍ତି । ଭଗ୍ନ କୋଣାର୍କ ଦର୍ଶନରେ ସେହି ଟ୍ରାଜେଡ଼ି ଦର୍ଶକ ଚିତ୍ତକୁ ସଂଚରିଗଲା ଭଳି ମନେହୁଏ ।

ଭାଷା, ଭାବ, ବିଷୟବିନ୍ୟାସ, ଉପସ୍ଥାପନ-ଶୈଳୀ ତଥା ନାଟକୀୟତା ନେଇ 'ଚନ୍ଦ୍ରଭାଗା' ରାଧାନାଥୀ ସାହିତ୍ୟର ପ୍ରତିଭୂ ପାଲଟିଯାଇଛି । ରୂପପ୍ରାଣ କବି ରାଧାନାଥ ଯେଉଁ ରୂପ ଉପରେ ଦୈବୀ ବା ମାନବୀକୃତ ବିଘ୍ନାତ ଲକ୍ଷ୍ୟ କରିଛନ୍ତି, ସେଠାରେ ପ୍ରକୃତିଠାରୁ ସମସ୍ୟା ସମାଧାନର ସୂତ୍ର ଖୋଜିପାଇଛନ୍ତି । ସେହିପରି କୋଣାର୍କ, ବେଳେଶ୍ୱର, ସମୁଦ୍ରତୀର ଓ କୋଣାର୍କ ଭିତରେ 'ଚନ୍ଦ୍ରଭାଗା'ର ଜୀବନ ନାଟକର ଯବନିକା ନଇଁଆସିଛି । 'ଚନ୍ଦ୍ରଭାଗା' ଓଭିଡ୍‌ଙ୍କ 'ଆପୋଲୋ ଆଣ୍ଡ୍ ଡାଫ୍‌ନୀ'ର ଅନୁକରଣ ନୁହେଁ, ତାହା ରାଧାନାଥୀ ପ୍ରତିଭାର ଯାଦୁକରୀ ସ୍ପର୍ଶରେ ଏକ ଉଚ୍ଚକୋଟୀର ମୌଳିକ ସୃଷ୍ଟି ପାଲଟିଯାଇଛି ।

---

# ଭକ୍ତକବି ମଧୁସୂଦନଙ୍କ କବିତାରେ ପାରତ୍ରିକ ଭାବନା

ଭକ୍ତକବି ମଧୁସୂଦନ ଆଧୁନିକ ଓଡ଼ିଆ କାବ୍ୟ ଜଗତର ଏକ ଅନନ୍ୟ ପ୍ରତିଭା । ଊନବିଂଶ ଶତାବ୍ଦୀର ଶେଷ ପାଦରେ ନବଜାଗରଣର ଯେଉଁ ସ୍ରୋତ ଓଡ଼ିଶା ମାଟିରେ ପ୍ରବାହିତ ହୋଇଥିଲା, ଭକ୍ତକବି ତା'ର ଅନ୍ୟତମ ସାର୍ଥକ ଫଳଶ୍ରୁତି । ଏକାଧାରରେ ସତ୍ୟ, ଶିବ ଓ ସୁନ୍ଦରର ଉପାସକ କବି ସର୍ବଦା ମୂଲ୍ୟବୋଧ ସଚେତନ ଥିଲେ । ତାଙ୍କ କବିତାରେ ଭୂମି ଓ ଭୂମାଙ୍କର ଏକତ୍ର ଉପସ୍ଥିତି ଉପଲବ୍ଧି କରିହୁଏ ।

କବି ମଧୁସୂଦନଙ୍କର ସାହିତ୍ୟ ସାଧନାର ବିଭିନ୍ନ ଦିଗ ଓ ବାଗ ସମ୍ପର୍କରେ ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ଆଲୋଚନା କରାଯାଇଛି । ଯେଉଁ ସମୟରେ କବିବର ରାଧାନାଥ ପାଶ୍ଚାତ୍ୟ ସଂକ୍ରମଣପାଇଁ ପଥ ପ୍ରସ୍ତୁତ କରିଥିଲେ, ସେହି ସମୟରେ ଫକୀରମୋହନ କଥିତ ଓଡ଼ିଆ ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେବାପାଇଁ ସତତ ପ୍ରଚେଷ୍ଟା କରିଥିଲେ । ମଧୁସୂଦନ ଠିକ୍ ସେହି ସମୟରେ ମୂଲ୍ୟବୋଧଭିତ୍ତିକ ଗଳ୍ପ, କବିତା ଓ ପ୍ରବନ୍ଧମାନ ରଚନା କରି ଏକ ନୂତନ ଚିନ୍ତାଶୀଳ ପାଠକଗୋଷ୍ଠୀ ସୃଷ୍ଟି କଲେ । ରାଧାନାଥ ଉଚ୍ଚଶିକ୍ଷିତ ପାଠକଙ୍କ ଆଗ୍ରହକୁ ଅପେକ୍ଷା କରୁଥିଲେ । ଫକୀରମୋହନ ନିପଟ ମଫସଲର ସାରିଆ, ଭଗିଆ, ଗୋବରା ଜେନା ଓ ଚମ୍ପାକୁ ସାହିତ୍ୟ ଜଗତରେ ପରିଚିତ କରାଇଲେ । ମଧୁସୂଦନ ପରମ୍ପରା ଅନୁରକ୍ତି, ସଦାଚାର ତଥା ବ୍ରହ୍ମୋପଲବ୍ଧିର ମାର୍ଗ ପ୍ରଦର୍ଶନକରି ମୁଷ୍ଟିମେୟ ପରମ୍ପରା ସଚେତନ ବ୍ୟକ୍ତିଙ୍କୁ ସମୟର ସ୍ୱଷ୍ଟ ଚିତ୍ର ପ୍ରଦାନ କରିଥିଲେ । ଫଳରେ ଯାହା ନେଟିଭ୍ ସବୁ ଘୃଣ୍ୟ ବା ପରିତ୍ୟଜ୍ୟ ଓ ଯାହା ବୈଦେଶିକ ସବୁ ପ୍ରଶଂସନୀୟ ଏପରି ଭାବନା ଶିକ୍ଷିତ ଓଡ଼ିଆଙ୍କ ମନରୁ ଦୂରହୋଇପାରିଥିଲା । ଓଡ଼ିଆମାନଙ୍କ ପ୍ରାଣରେ ଆତ୍ମବିଶ୍ୱାସ ତଥା ବିଶ୍ୱଭାବନା ଯୋଗାଇବା ଦିଗରେ ମଧୁସୂଦନଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । କବି ଜୀବନର ପ୍ରାରମ୍ଭରେ 'ବର୍ଣ୍ଣବୋଧ' ଲେଖି ଭାଷା-ସାହିତ୍ୟକୁ ବଞ୍ଚାଇ ରଖିଥିବା କବି ସୁନୀତି ସହିତ ସୁରୁଚିର ସମନ୍ୱୟରେ ନିଜର ସାହିତ୍ୟ-ସୌଧ ନିର୍ମାଣ କରିଥିଲେ ।

ମଧୁସୂଦନଙ୍କ କାବ୍ୟ ଜଗତକୁ ଆଲୋଚନାର ସୁବିଧା ଦୃଷ୍ଟିରୁ ଶିଶୁ କବିତା, ଉପଦେଶାବଳି, ପ୍ରକୃତିପ୍ରୀତିର କବିତା, ଦେଶାତ୍ମବୋଧକ କବିତା, ବ୍ରହ୍ମୋପଲବ୍ଧିର କବିତା, ଅନୁବାଦ କବିତା ଓ ଭଜନ କୀର୍ତ୍ତନ ପର୍ଯ୍ୟାୟର କବିତାଭାବରେ ବିଭାଜନ

କରାଯାଇପାରେ; କିନ୍ତୁ ଭକ୍ତକବି ତଥା ଶିକ୍ଷକ-କବିଙ୍କର ଉପଦେଶାତ୍ମକତା ଏ ସମସ୍ତ ପ୍ରକାର କବିତା ମଧ୍ୟରେ ପ୍ରତିଫଳିତ। ଉପଦେଶାତ୍ମକତା ଭିତରେ ସମୟ ସଚେତନତା, ଆତ୍ମସମର୍ପଣର ଭାବନା, ଜୀବନରେ ଭୂମାଙ୍କର ଉପଲବ୍ଧି, ପ୍ରେମର ମହତ୍ତ୍ୱ ତଥା ପ୍ରକୃତି ମଧ୍ୟରେ ପରମର ବିକାଶ ଏକୀଭୂତ ହୋଇଯାଇଛି।

ଏଠାରେ ବିଚାର କରିବା କଥା ଯେ ମୂଲ୍ୟବୋଧ ପ୍ରତି ସର୍ବଦା ସଚେତନ କବି ପରମ୍ପରାର ପୃଷ୍ଠଭୂମି ଉପରେ ଦଣ୍ଡାୟମାନ ହୋଇ ଜୀବନକୁ ସାମଗ୍ରିକଭାବରେ ଅବଲୋକନ କରିଛନ୍ତି। ତା'ପାଇଁ ଏ ପୈତୃକ ପୃଥିବୀ କେବଳ ପ୍ରବାସଟିଏ ମାତ୍ର। ଅନ୍ୟ ଏକ ଉଜ୍ଜ୍ୱଳ, ମଧୁର ଓ ସୁନ୍ଦର ଦିବ୍ୟମାନ ହେଉଛି ତା'ର ନିତ୍ୟ ଆବାସସ୍ଥଳୀ; କିନ୍ତୁ ଏ ପ୍ରବାସ ସର୍ବଥା ପରିତ୍ୟଜ୍ୟ ନୁହେଁ ବରଂ ବରଣୀୟ। ଏହା ଦିବ୍ୟଧାମକୁ ଯିବାପାଇଁ ଏକମାତ୍ର ମାର୍ଗ। ତେଣୁ ସମୟ ସଚେତନ କବି ସମସ୍ତ ସମୟର ସଦୁପଯୋଗ କରି ସେହି ପ୍ରବାସ ରହଣିକୁ ସଫଳ କରାଇବାର ଚେଷ୍ଟା କରିଛନ୍ତି।

**ପ୍ରଭୋ ପରମ ଶରଣ :**

ବ୍ରାହ୍ମଧର୍ମରେ ଦୀକ୍ଷିତ କବିଙ୍କପାଇଁ ଈଶ୍ୱର ପରାତ୍ପର, ମହେଶ, ପରମାତ୍ମା, ପ୍ରାଣସଖା, ପରମକାରଣ, ବିଶ୍ୱପିତା ଓ ଆଦିମୂଳ। ସେ ଏକାଧାରରେ ସ୍ଥୂଳ ଓ ସୂକ୍ଷ୍ମ। ଆଦି ଓ ଅନାଦି, ଅରୂପ ପୁଣି ରୂପବନ୍ତ। ତେଣୁ ଶିଶୁ କବିତାଗୁଡ଼ିକରେ ମଧ୍ୟ କବି ସେହି ପ୍ରାଣାରାମ ନିରଞ୍ଜନକୁ ଭକ୍ତି ନିବେଦନ କରିବାର କୌଣସି ସୁଯୋଗକୁ ହାତଛଡ଼ା କରିନାହାନ୍ତି। ଛାନ୍ଦମାଳାର ଶିଶୁ କବିତାରେ—

"ମୋ' ପାଶେ ଅଛନ୍ତି ଦିବସ ରଜନୀ ମହାପ୍ରଭୁ ପରାତ୍ପର,
ଏକଥା ସୁମରି ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର।"

[ମଧୁସୂଦନ ଗ୍ରନ୍ଥାବଳୀ, ଛାନ୍ଦମାଳା, ପୃ-୨]

ତାଙ୍କର କବିତାଗୁଡ଼ିକରେ ବ୍ରାହ୍ମ ଅନୁରକ୍ତି ତଥା ଉପନିଷଦ ଆଧାରିତ ଚିନ୍ତାଧାରାର ପରିପ୍ରକାଶ ଦେଖି ପାଠକ ମୁଗ୍ଧ ହୁଏ; କିନ୍ତୁ ଏହି ଭକ୍ତିଭାବନା କେବଳ ଜ୍ଞାନପିଣ୍ଡିତ ନୁହେଁ। ଏଥିରେ ଜ୍ଞାନ ସହିତ ପ୍ରେମ, ଭକ୍ତି ଓ କରୁଣାର ସମନ୍ୱୟ ପରିଦୃଷ୍ଟ ହୋଇଥାଏ। ବୈଷ୍ଣବୀୟ ଆତ୍ମସମର୍ପଣର ଭାବନା ନେଇ ମଧୁସୂଦନ ଆମ ପରମ୍ପରା ସହିତ ଅଚ୍ଛେଦ୍ୟ ଯୋଗସୂତ୍ର ସ୍ଥାପନ କରିଛନ୍ତି। ଛାନ୍ଦମାଳାର ୨ୟ ଖଣ୍ଡ ସ୍ଥିତ 'ସ୍ତବ' କବିତା ଖୁବ୍ ଲୋକପ୍ରିୟ ପ୍ରାର୍ଥନା ସଙ୍ଗୀତ। ସେହି ସଙ୍ଗୀତରେ କବି ପୃଥିବୀର ସମସ୍ତ ସୌନ୍ଦର୍ଯ୍ୟ, ସମ୍ପର୍କ ଓ ସତ୍ୟର ପ୍ରତୀକଭାବରେ ପରମଶରଣ ପ୍ରଭୋଙ୍କୁ ଅଭିହିତ କରିଛନ୍ତି। ପ୍ରଭାତ ଓ ସନ୍ଧ୍ୟା ଭଳି ପ୍ରକୃତିପ୍ରୀତିମୂଳକ କବିତାର ଶେଷ ପଂକ୍ତିରେ ମଧ୍ୟ ସେହି ପରମକାରଣଙ୍କ ଆଶୀର୍ବାଦ କାମନା କରାଯାଇଛି।

''ଦିନ ଅନ୍ତେ ରାତି ଆସେ ଯାହାଙ୍କ ବିଧାନେ
ସୁମରି ସେ ବିଧାତାଙ୍କୁ ଆହେ ଶିଶୁଗଣେ
କରଯୋଡ଼ି କର ଏବେ ସନ୍ଧ୍ୟାର ବନ୍ଦନ
ବୋଲ ଧନ୍ୟ ଧନ୍ୟ ପ୍ରଭୁ ଭୁବନ କାରଣ ।''
[ମଧୁସୂଦନ ଗ୍ରନ୍ଥାବଳୀ, ପୃ-୭]

ଋତୁ ସମ୍ପର୍କୀୟ ତାଙ୍କର କବିତାଗୁଡ଼ିକର ଶେଷ ପଂକ୍ତିରେ ସେହି ବିଶ୍ୱକାରଣଙ୍କ ଆଶୀର୍ବାଦହିଁ କାମନା କରାଯାଇଛି । ସ୍ତବ, ନାମେ ଭକ୍ତି, ଜୀବେ ଦୟା ଭଳି କବିତାରେ ଦୟା, କ୍ଷମା, ପ୍ରେମ, ଧର୍ମ ଆଚରଣ ପ୍ରଭୃତିକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ତାଙ୍କ ମତରେ, ଧର୍ମ ହେଉଛି ବିଶ୍ୱାସର ନାମାନ୍ତର ମାତ୍ର । ସେହି ବିଶ୍ୱାସ ବଳରେହିଁ ଆତ୍ମୋପଲବ୍ଧି ସହଜ ହୁଏ । ମନରୁ ସଂକୀର୍ଣ୍ଣତା ଲୁପ୍ତ ହୋଇ ଉଦାରଭାବନା ଜାଗ୍ରତ ହୁଏ । ଅନନ୍ତଠାରେ ଅଖଣ୍ଡ ବିଶ୍ୱାସ ରଖିଲେହିଁ ଅଜ୍ଞାନତା ରୂପକ କାଳରାତ୍ରର ଶେଷ ହେବ ଏବଂ ନବୀନ ସୂର୍ଯ୍ୟ ଉଦୟ ହେବ । 'ପରମ ପ୍ରମାଣ' କବିତାରେ କବି ଏହି ପରଂବ୍ରହ୍ମଙ୍କୁ ସମସ୍ତ ମୁକ୍ତିର ଅତୀତ ବୋଲି ପ୍ରମାଣ କରିଛନ୍ତି । ସେ ସକଳ ମୁକ୍ତିର ସ୍ରଷ୍ଟା ଓ ତାଙ୍କରି ଆଦେଶରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଆତଯାତ । ଉପନିଷଦ ଅନୁସାରେ ବ୍ରହ୍ମର ଚତୁର୍ଦ୍ଦିଗରେ ଅମୃତ ପରିବ୍ୟାପ୍ତ । ସମଗ୍ର ଜୀବଜଗତରେ ବ୍ରହ୍ମର ସେହି ଦିବ୍ୟସୃଷ୍ଟି ଘେରି ରହିଛି– 'ଋଷି ପ୍ରାଣେ ଦେବାବତରଣ' କବିତାରେ–

''ଅମୂର୍ତ୍ତ ମୂରତି ଆହା ରୂପ ନିରୂପମ
ଅନନ୍ତ ଆନନ୍ଦ ବ୍ୟାପ୍ତି ସ୍ଥାବର ଜଙ୍ଗମ ।
ଦେଶ କାଳାତୀତ ଦୃଶ୍ୟ କଳ୍ପନା ଅତୀତ
ଅଥଚ ଜ୍ୟୋତିର ଜ୍ୟୋତି ଚକ୍ଷୁ ଅଗ୍ରେ ସ୍ଥିତ ।''

ସେହି ଅବାଙ୍‌ମାନସଗୋଚର ବ୍ରହ୍ମଙ୍କୁ ଉପଲବ୍ଧି କରିବାକୁ ହେଲେ ଜୀବକୁ ନିଜର ଚେତନାଶକ୍ତିକୁ ଊର୍ଦ୍ଧ୍ୱମୁଖୀ କରାଇବାକୁ ହେବ । ସେହି ବ୍ରହ୍ମହିଁ ସୃଷ୍ଟିର ଆଦି ଚିତ୍ରକର, ଆଦିକବି । ତେଣୁ ସମଗ୍ର ବିଶ୍ୱକୁ କବି 'ବ୍ରହ୍ମନିକେତନ' ବୋଲି ଶ୍ରଦ୍ଧା ଓ ସମ୍ମାନ ଜଣାଇଛନ୍ତି ।

**ମର୍ତ୍ତ୍ୟ ପ୍ରବାସ : ମହାଶିକ୍ଷାର ନିକେତନ –**

କବି ମଧୁସୂଦନଙ୍କ ଚିନ୍ତାରେ ଏ ମର୍ତ୍ତ୍ୟଭୂମି ମାନବପାଇଁ ପ୍ରବାସଟିଏ ମାତ୍ର । ତେଣୁ ମର୍ତ୍ତ୍ୟରେ ଅନାସକ୍ତ କର୍ମଯୋଗ କରିବାହିଁ ଆବଶ୍ୟକ । ଆସକ୍ତି ଉତ୍ତରଣ ମାର୍ଗର କଣ୍ଟକସମ ଯେଉଁ ନିତ୍ୟଧାମରେ ବାସକରିବାପାଇଁ ଆତ୍ମା ଚିରପିପାସିତ, ସେ

ପିପାସା ଶାନ୍ତି କରିବାର ଏକମାତ୍ର ଉପାୟ ହେଉଛି ଧର୍ମମାର୍ଗରେ ଗମନ କରିବା ଓ ସମଗ୍ର ବିଶ୍ୱକୁ ଈଶ୍ୱରଙ୍କ କ୍ରୀଡ଼ାଭୂମି ରୂପେ ଗ୍ରହଣ କରିନେବା । ଏହି ଧର୍ମ ମାନବର ଆଚରଣୀୟ ଧର୍ମ ନୁହେଁ । ଏହା କୌଣସି ସଂପ୍ରଦାୟର କ୍ଷୁଦ୍ର ପରିସର ମଧ୍ୟରେ ଆବଦ୍ଧ ନୁହେଁ । 'ସଙ୍ଗୀତମାଳା'ର ପ୍ରଥମ ଗୀତରେ–

"ସ୍ୱପ୍ନ ମାୟା ନୁହେଁ ଏ ଭୁବନ
ଏ ମହା ଶିକ୍ଷାର ନିକେତନ
ଯେବେ ଆରେ ଜୀବ ଆସିଛୁ ଏଠାକୁ
ସାଧି ଯା ବିଧିର ଇଷ୍ଟଲୀଳା
ଏ ଜୀବନ ନୁହେଁ ବୃଥା ଖେଳା ।"

ଅତୀତକୁ ସ୍ମରଣକରି ଦୀର୍ଘଶ୍ୱାସ ପକାଇବାଠାରୁ ବିଳାସ ଆଳସ୍ୟ ପରିହାର କରି କର୍ମପଥରେ ଅଗ୍ରସର ହେଲେହିଁ ଜୀବର ପ୍ରବାସ ସମୟର ସଦ୍‌ବିନିଯୋଗ ହୋଇପାରିବ । ସଂସାରକୁ ଅଳୀକ ମିଛମାୟା କହି ଜୀବନକୁ ପଛକରି ଚାଲିବା ନିର୍ବୋଧର କାର୍ଯ୍ୟ; କିନ୍ତୁ ବିପଦର କଷାଘାତରେ ବାରମ୍ବାର ଜର୍ଜର ହେଲେହିଁ ମାନବ ଜୀବନର ପ୍ରକୃତ ଲକ୍ଷ୍ୟ ଖୋଜି ପାଇପାରିବ ।

ପିତାମାତା, ବନ୍ଧୁ, ସହୋଦର, ଶିକ୍ଷକ, ଗୁରୁଜନ ସମସ୍ତେ କେଉଁ ଅଲିଖିତ ନିୟମର ବଶବର୍ତ୍ତୀ ହୋଇ, କି ସନ୍ତର୍ପଣରେ ଶିଶୁଟିକୁ କିଶୋର ଓ କିଶୋରଟିକୁ ସ୍ୱୟଂ ପ୍ରକାଶଶୀଳ ଯୁବକରେ ପରିଣତ କରନ୍ତି, ଏକଥା ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଆକାଶ, ପବନ, ସୂର୍ଯ୍ୟ, ଚନ୍ଦ୍ର, ତାରା, ଅଗ୍ନି ପ୍ରଭୃତି ପ୍ରତ୍ୟେକ ପ୍ରାକୃତିକ ବିଭବ ମଧ୍ୟ ମାନବର ହିତସାଧନପାଇଁ ସର୍ବଦା ଜାଗ୍ରତ । ଯେଉଁ ମର୍ତ୍ତ୍ୟଧାମରେ ଏତେସବୁ ଆତ୍ମୀୟତା ବିଦ୍ୟମାନ, ତାହା ପରିତ୍ୟଜ୍ୟ ନୁହେଁ । ଆଦରଣୀୟ । ତେଣୁ ପ୍ରବାସ ହେଲେ ମଧ୍ୟ ମର୍ତ୍ତ୍ୟଭୁବନ ସର୍ବଥା ଅର୍ଥପୂର୍ଣ୍ଣ ତଥା ସ୍ପୃହଣୀୟ । ତେଣୁ ମହାଶିକ୍ଷାର ଏହି ନିକେତନକୁ ଆସିବାପାଇଁ ଜୀବ ଚିରଦିନ କାମନା କରିଥାଏ ।

## ବିଶ୍ୱାସେ ଲଭିବ ସ୍ୱର୍ଗ :

ପରିପୂର୍ଣ୍ଣ ବିଶ୍ୱାସହିଁ ବିଶ୍ୱରେ ମାନବ ସ୍ଥିତିର ମୂଳାଧାର । କବିଙ୍କ ମତରେ, ସ୍ୱର୍ଗ ହେଉଛି ସକଳ ସଦ୍‌ଗୁଣ, ଆନନ୍ଦ, ଭକ୍ତି, ପ୍ରୀତି, ବିଶ୍ୱାସ ଓ ନିଷ୍ଠାର ଆକାର । ସେହି ସ୍ୱର୍ଗଧାମପାଇଁ ମାନବାତ୍ମା ସର୍ବଦା ପିପାସିତ ହୋଇ ରହିଥାଏ । ତେଣୁ ସଦ୍‌କାର୍ଯ୍ୟ ପାଇଁ ସେ ଆଗ୍ରହ ପ୍ରକାଶ କରେ ଓ ଉତ୍ତରଣର ମାର୍ଗରେ ଅଗ୍ରସର ହୁଏ । ଅନନ୍ତ ପ୍ରେମ ମଧ୍ୟରୁ ଏହି ଅବିଶ୍ୱାସର ଅଙ୍କୁରୋଦ୍‌ଗମ ହୋଇଥାଏ । 'ବିଧିବିଧାନ' କବିତାରେ–

"ଅଧର୍ମ ପଥ ପରିହରି ଦୃଢ଼ବିଶ୍ୱାସ ହୃଦେ ଧରି
ସମ୍ପଦେ ଅବା ବିପଦରେ ଧର୍ମେ ନହୁଡ଼ କେବେ ନରେ ।"

ଏହି ବିଶ୍ୱାସ ହୃଦ ହୋଇପାରିଲେହିଁ ସକଳ ମାୟା ପ୍ରବଞ୍ଚନାର ଗଣ୍ଠି ଫିଟିଯିବ । ଏକାଗ୍ରତା ଓ କର୍ମପ୍ରବଣତା ଏଭଳି ଦୃଢ଼ବିଶ୍ୱାସ ସୃଷ୍ଟି କରିବାରେ ସହାୟକ ହୋଇପାରିବ । ତେଣୁ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ଉଦ୍ଦେଶ୍ୟରେ ରଚିତ 'ଶୋକ-ଶ୍ଳୋକ' କବିତାରେ ମଧ ସେ ସ୍ୱର୍ଗୀୟ ଦୂତଙ୍କୁ ଅନୁରୋଧ କରି କହନ୍ତି–

"ଦୀନ କବିଜନେ ହେ ଦେବଦୂତ
ଦିଅ ଦିବ୍ୟଦୃଷ୍ଟି ବିଶ୍ୱାସ ପୂତ ।"

ସେହିପରି ଏକାଧିକ କବିତାରେ ସେ ପ୍ରେମ ଆଶା ବିଶ୍ୱାସ ଓ ନିଷ୍ଠାର ଜୟଗାନ କରିଛନ୍ତି । ଏହି ବିଶ୍ୱାସ ଉପରେ ସମସ୍ତ ବିଶ୍ୱ ନିର୍ଭରଶୀଳ । ବିଶ୍ୱାସକୁ ନେଇହିଁ ମାନବ ମହାମାନବରେ ପରିଣତ ହୁଏ । ତା'ର ସ୍ୱର୍ଗଲାଭର ପଥ ସୁଗମ ତଥା ପ୍ରଶସ୍ତ ହୋଇପାରେ । ତା'ର ଅନ୍ତରର ସମସ୍ତ ପିପାସା ନିବାରିତ ହୁଏ । ସେହି ବିଶ୍ୱାସକୁ ନେଇ ଲକ୍ଷ୍ୟ ପଥରେ ଅଗ୍ରସର ହେଲେହିଁ–

"ଆଶା ପାରିଜାତ ଫୁଟିବ ହୃଦ ନନ୍ଦନ ବନେ
ଜ୍ଞାନ ଭକ୍ତିକର୍ମ ସୌରଭ ବ୍ୟାପିଯିବ ଭୁବନେ ।"

'ନବବସନ୍ତ ଭାବନା'ର ଏହି ଅଂଶବିଶେଷର ଉପଯୁକ୍ତ ଅର୍ଥ କରାଯାଇ ପାରିବ ।

**କରିଅଛି ମରଣକୁ ଅମୃତ ସୋପାନ :**

ମୃତ୍ୟୁ ଜୀବନର ଶେଷ କଥାନୁହେଁ ବରଂ ଏହା ଅମୃତତ୍ୱ ଲାଭର ସୋପାନ । ଜୀବ ନିଜର କର୍ମଦ୍ୱାରା ଉତ୍ତରଣର ମାର୍ଗରେ ଗତି କରିଥାଏ । ମୃତ୍ୟୁର ଭୟ ତାକୁ ସଦ୍‌କାର୍ଯ୍ୟ ନିମନ୍ତେ ପ୍ରବର୍ତ୍ତାଏ; କିନ୍ତୁ ଜୀବ ସଂସାରର କ୍ଷଣିକ ମାୟାରେ ମୁଗ୍ଧ ହୋଇ ଜୀବନର ଲକ୍ଷ୍ୟପଥରୁ ବିଚ୍ୟୁତ ହୁଏ । ବାସନାର ପିପାସା ମନୁଷ୍ୟ ଶରୀରରୁ ରକ୍ତ ଶୋଷିନିଏ; କିନ୍ତୁ ମରଣ ପ୍ରତି ସତର୍କ ଦୃଷ୍ଟି ନିକ୍ଷେପ କରି ଭକ୍ତକବି କହନ୍ତି ଯେ, ଈଶ୍ୱରଙ୍କ ମଙ୍ଗଳବିଧାନହିଁ ଜୀବକୁ ମୃତ୍ୟୁଛଡ଼ା ଲାଭର ଏକ ଅମୃତ ଲକ୍ଷ୍ୟର ଅଧିକାରୀ କରାଏ । ଜନ୍ମ ସମୟରେ ଶିଶୁଟିଏ କ୍ରନ୍ଦନ କରେ ସତ; କିନ୍ତୁ ତା'ର ପରିବାରର ସମସ୍ତେ ହର୍ଷ ଉତ୍‌ଫୁଲ୍ଲ ହୁଅନ୍ତି; କିନ୍ତୁ ସେ ଏଭଳି କାମ କରିବା ଉଚିତ, ଯାହାଫଳରେ କି ତା'ର ମୃତ୍ୟୁ ସମୟରେ ସମଗ୍ର ମାନବ ସମାଜ ଅଶ୍ରୁବିସର୍ଜନ କରିବ । ମୃତ୍ୟୁର ବିଧାନ ମଧ ତାଙ୍କ ମତରେ ଏକ କ୍ରୁର କର୍କଶ ବିଧାନ ନୁହେଁ, କାରଣ ମୃତ୍ୟୁର

ମୃତ୍ତିକାରେହିଁ ଜୀବନ-ଶସ୍ୟର ଅଙ୍କୁରୋଦ୍‌ଗମ ହୋଇଥାଏ । ତେଣୁ ବିଧିର ବିଧାନରେ କ୍ରମାନ୍ୱୟରେ ଆସୁଥିବା ଜୀବନ ଓ ମୃତ୍ୟୁକୁ ସ୍ୱାଭାବିକ ଭାବରେ ଗ୍ରହଣ କରିନେବାକୁ ସେ ସମଗ୍ର ମାନବ ଜାତିକୁ ଆହ୍ୱାନ ଦେଉଛନ୍ତି ।

ଜନ୍ମ ଓ ମୃତ୍ୟୁର ମଧ୍ୟବର୍ତ୍ତୀ ସ୍ଥଳରେ ଜୀବନ ପରିବ୍ୟାପ୍ତ । ତେଣୁ ଜୀବନରେ ବିଧିର ନିୟମ ଓ ମୃତ୍ୟୁରେ ଈଶ୍ୱରଙ୍କ ସଦ୍‌ଭାବକୁ ଅନୁଭବ କରିପାରିଲେ ମୃତ୍ୟୁଭୟ ପରାହତ ହେବ । ମୃତ୍ୟୁର ସମ୍ମୁଖୀନ ହେବାକୁ ହେଲେ ଯଥେଷ୍ଟ ସତ୍‌ସାହସ ଲୋଡ଼ା । ଏହି ସତ୍‌ସାହସ ସତ୍‌କର୍ମ, ସତ୍‌ସଙ୍ଗ, ସତ୍‌ଉପଦେଶ ଓ ସଦ୍‌ଭାବରୁ ମିଳିଥାଏ, ସେଥିପାଇଁ ମଧୁସୂଦନ ବିଶ୍ୱଗୁରୁ ବିଶ୍ୱରାଜ, ବିଶ୍ୱ ପିତାମାତାଙ୍କ ଉଦ୍ଦେଶ୍ୟରେ କୁହନ୍ତି–

''ତୋ'ର ମଙ୍ଗଳ ବିଧାନ
କରିଅଛି ମରଣକୁ ଅମୃତ ସୋପାନ ।''

**ଭବସିନ୍ଧୁ ତରିଯାଅ ପରଲୋକେ :**

ଇହଲୋକର କର୍ମଫଳଦ୍ୱାରା ମନୁଷ୍ୟର ପରଲୋକରେ ସ୍ଥାନ ନିର୍ଦ୍ଧାରିତ ହୋଇଥାଏ । ଏହି ଭବସିନ୍ଧୁ ଉତ୍ତାଳ ତରଙ୍ଗମୟ । ଭୟଙ୍କର ଜଳଜୀବସଙ୍କୁଳ, ତେଣୁ ଏ ଭବସାଗର ପାରିହେବାପାଇଁ ପ୍ରଭୁଙ୍କ ପାଦପଦ୍ମକୁ ଭେଳାଭାବରେ ଉପଯୋଗ କରିବା ଆବଶ୍ୟକ । ମନୁଷ୍ୟର ଅନ୍ତରରେ ସେହି ପରମପୁରୁଷର ସତ୍ତା ଚିରଜାଗ୍ରତ । ସେହି ପରମପୁରୁଷର ଉଦାତ୍ତବାଣୀ ଶ୍ରବଣ କଲେହିଁ ମନୁଷ୍ୟ ଜୀବନରୁ ସକଳ ସଂକୀର୍ଣ୍ଣତା ଲୋପପାଏ । କୌଣସି 'ପରଲୋକବାସିନୀ ପ୍ରତି' କବିତାରେ କବି ତା'ର ପରଲୋକବାସିନୀ ପରିଚିତା ତରୁଣୀଟିକୁ କହନ୍ତି ଯେ, ଇହଲୋକରେ ଥିବାବେଳେ ତା'ର କବିତା ପ୍ରତି କୌଣସି ବାସନା ବା ଦୁର୍ବଳତା ଥିଲା କି ? ଯଦି ଥିଲା ତେବେ ପରଲୋକରେ ସେସବୁ ଦୁର୍ବଳତା ପରିହାର କରିବା ତାଙ୍କ ପକ୍ଷରେ ଉଚିତ । କାରଣ ସ୍ୱର୍ଗରେ କେବଳ 'ଶୁଦ୍ଧ ସତ୍ତ୍ୱପ୍ରେମୋତ୍ସବ' ହିଁ ପରିଲକ୍ଷିତ ହୋଇଥାଏ । କବିଙ୍କପାଇଁ ପ୍ରେମ ଦେହଜ ବାସନାରୁ ଊର୍ଦ୍ଧ୍ୱରେ ଏକ ପବିତ୍ର ଆତ୍ମସମର୍ପଣର ଭାବନା । ତାଙ୍କ ଚିନ୍ତାରେ 'ସ୍ୱର୍ଗ' ନିତ୍ୟଶାନ୍ତି ଓ ସନ୍ତୋଷର ସ୍ଥଳ । ସେହି ସ୍ୱର୍ଗରାଜ୍ୟପାଇଁ ଆଗ୍ରହୀ ବ୍ୟକ୍ତିର ଅନ୍ତଃକରଣ ପ୍ରଥମେ ଶୁଦ୍ଧ ହେବା ଆବଶ୍ୟକ । ପାପବୋଧ ଜାଗ୍ରତ ହେଲେହିଁ ମନୁଷ୍ୟ ପତନର ଅତଳ ଗହ୍ୱରରୁ ପାରହୋଇ ସ୍ୱର୍ଗରାଜ୍ୟ ଅଭିମୁଖେ ଗତି କରିପାରିବ । ଭବସିନ୍ଧୁ ପାରିହୋଇ ଊର୍ଦ୍ଧ୍ୱମୁଖୀ ବିଭୁ ପାଦପଦ୍ମରେ ଆପଣାକୁ ସମର୍ପିତ କରିବାହିଁ ଜୀବର ଲକ୍ଷ୍ୟ ହେବା ଉଚିତ ।

ଶେଷରେ ଏତିକି କହିବା ଉଚିତ ଯେ ଭକ୍ତକବି ଏକାଧାରରେ ସୁରୁଚି ଓ ସୁନୀତିର ଉପାସକ ଥିଲେ । ମହାଭାରତୀୟ ପାରମ୍ପରିକ ମୂଲ୍ୟବୋଧର ସୁରକ୍ଷା ଥିଲା

ତାଙ୍କପାଇଁ ପବିତ୍ର ଜାତୀୟ କର୍ତ୍ତବ୍ୟ । ତାଙ୍କର ଦେଶାତ୍ମବୋଧକ କବିତା, ପ୍ରକୃତି ପ୍ରୀତିର କବିତା, ବ୍ୟକ୍ତିଗତ ଭାବପ୍ରବଣତା ତଥା ଶୋକର କବିତା ସବୁଥିରେ ପାରଲୌକିକ କାମନା ପ୍ରତିଫଳିତ । ଶିକ୍ଷକ-କବି ସତେ ଯେପରି ସ୍ୱାଭାବିକଭାବରେ ନିଜକୁ ସମଗ୍ର ସମାଜର ଶିକ୍ଷକଭାବରେ ବିଚାର କରିଛନ୍ତି । ସେଥିପାଇଁ ତା'ର ନୀତିରତ୍ନମାଳା, ଦୃଷ୍ଟାନ୍ତମାଳା ପ୍ରଭୃତି କବିତା କବୀର, ରହିମ୍, ଦାଦୁଙ୍କ ଭଳି ସନ୍ଥକବିମାନଙ୍କ ସଦୃଶ ଜୀବନଯାପନର ମାର୍ଗ ନିର୍ଦ୍ଦେଶ କରିଥାଏ । ତାହାକୁ ଆମେ ଜୀବନର ସମ୍ବିଧାନ (Code of conduct) ବୋଲି କହିବାରେ କୌଣସି ବାଧା ନାହିଁ ।

ମୃତ୍ୟୁଚିନ୍ତା ମନୁଷ୍ୟକୁ ସତ୍‌ପଥରେ ଯିବାପାଇଁ ପ୍ରବର୍ତ୍ତାଇ ଥାଏ; କିନ୍ତୁ ସଂସାର ସର୍ବଥା ଅସାରନୁହେଁ ବରଂ ଶିକ୍ଷାର ନିଳୟ । କବି ସଂସାରବିରାଗୀ ହେବାପାଇଁ କବିତା ମାଧ୍ୟମରେ ଉପଦେଶ ଦେଇନାହାନ୍ତି । ଅଧିକନ୍ତୁ ସଂସାରରେ ଥିବା ପର୍ଯ୍ୟନ୍ତ ତାହାକୁ ଶିକ୍ଷାଳୟ ମନେକରି ଯଥାସମ୍ଭବ ଶିକ୍ଷାଲାଭ କରିବାପାଇଁ ମନୁଷ୍ୟକୁ ପ୍ରେରଣା ଦେଇଛନ୍ତି । ଜୀବନ କ୍ଷଣସ୍ଥାୟୀ, ତଥାପି କ୍ଷଣିକ ଏହି ଜୀବନକୁ ସଫଳ କରିବାପାଇଁ ଯଥାସମ୍ଭବ ପ୍ରଯତ୍ନ କରିବା ଆବଶ୍ୟକ । ଶିକ୍ଷିତ ବ୍ୟକ୍ତିର ବିଚାର ସର୍ବଦା ବିଧିବିଧାନ ଅନୁଯାୟୀ ହେବା କଥା । ନଚେତ୍ ଇହଲୋକ ଅଶାନ୍ତ ଓ ପରଲୋକ ବିପର୍ଯ୍ୟସ୍ତ ହୋଇଯିବାର ସମ୍ଭାବନା ଅଧିକ । ତେଣୁ ପାରଶୃକ ଭାବନାର ବୈଚିତ୍ର୍ୟ ନେଇ ଭକ୍ତକବିଙ୍କର କବିତାସମୂହ ଜ୍ଞାନୀକୁ ଜ୍ଞାନମାର୍ଗ, ସଂସାରୀକୁ କର୍ମମାର୍ଗ, ଭକ୍ତକୁ ଭକ୍ତିମାର୍ଗ ଦେଖାଇବାରେ ସମର୍ଥ ହୋଇପାରିଛି ।

—

# ଫକୀରମୋହନଙ୍କ କାବ୍ୟ କବିତା : ଏକ ଆଧୁନିକ ଆକଳନ

ଫକୀରମୋହନ ଏକାଧାରରେ ବ୍ୟାସକବି ତଥା ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟର ଜନକ, ସେ ପୁଣି ଅନୁବାଦକ, ଐତିହାସିକ ଓ ଭ୍ରମଣବୃତ୍ତାନ୍ତ ଲେଖକ । ଏହି କିମ୍ବଦନ୍ତୀ-ପୁରୁଷ ଫକୀରମୋହନ ଓଡ଼ିଆ ଜାତି ଓ ଓଡ଼ିଆ ଭାଷାକୁ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷାକରି ନୂତନ ଜୀବନ୍ୟାସ ଦେଇଛନ୍ତି । ନିଜ କଥା ନିଜବାଗରେ କହିବାର କ୍ଷମତା ଦେଇଛନ୍ତି । ନବଜାଗରଣର ବାର୍ତ୍ତାବହଭାବରେ ଓଡ଼ିଆ ଜନଜୀବନକୁ ନିଜ ସାହିତ୍ୟକୃତି ମାଧ୍ୟମରେ ପ୍ରଭାବିତ କରିଛନ୍ତି ।

ଊନବିଂଶ ଶତକର ଶେଷ ପର୍ଯ୍ୟାୟରେ ସମଗ୍ର ଭାରତୀୟ ଜନଜୀବନର ନବଜାଗରଣର ଯେଉଁ ସ୍ରୋତ ପ୍ରବାହିତ ହୋଇଥିଲା ତା'ର ଅଗ୍ରଦୂତଭାବରେ ରାଧାନାଥ, ମଧୁସୂଦନ ଓ ଫକୀରମୋହନ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ସଚେତନଭାବରେ ଲେଖନୀ ଚାଳନା କରିଛନ୍ତି; କିନ୍ତୁ ଏମାନେ ସମସ୍ତେ ପ୍ରଥମେ ପାଠ୍ୟପୁସ୍ତକ ରଚନା କରି ସତର୍କଭାବରେ ସାହିତ୍ୟକୁ ବଞ୍ଚାଇବାର ସାଧୁ-ପ୍ରୟାସ କରିଛନ୍ତି । ଯେଉଁ ସତର୍କତା ପରବର୍ତ୍ତୀ ସାହିତ୍ୟସାଧକମାନଙ୍କପାଇଁ ଆବଶ୍ୟକ ହୋଇନାହିଁ ।

ଆଜି ଫକୀରମୋହନଙ୍କ ସଂପର୍କରେ ଆଲୋଚନା ଯଥେଷ୍ଟ କରାଯାଉଛି । ତାଙ୍କର ଉପନ୍ୟାସ ଓ କ୍ଷୁଦ୍ରଗଳ୍ପକୁ ଆଜି ମଧ୍ୟ ଅପ୍ରତିଦ୍ୱନ୍ଦୀ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ଭାବରେ ସମ୍ମାନିତ କରାଯାଉଛି; କିନ୍ତୁ ଦୀର୍ଘ ଦିନ ଯେ ସେ କବିତା ରଚନା କରିଛନ୍ତି, ତାହା ବିଶେଷ ଆଲୋଚିତ ହେଉନାହିଁ । ହୁଏତ ରାଧାନାଥ ବା ମଧୁସୂଦନଙ୍କ କବିତା ଯେଉଁ ଉଚ୍ଚ ସ୍ତରକୁ ସ୍ପର୍ଶ କରିଛି, ଫକୀରମୋହନଙ୍କ କବିତାରେ ତା'ର ଅଭାବ ରହିଛି ବା ଫକୀରମୋହନଙ୍କର ବଳିଷ୍ଠ ଗଦ୍ୟସାହିତ୍ୟର ତେଜ ନିକଟରେ ଏଗୁଡ଼ିକ ଅପେକ୍ଷାକୃତ ନିଷ୍ପ୍ରଭ ମନେହେଉଛି; କିନ୍ତୁ ତାଙ୍କର 'ରାଶି ରାଶି କବିତା' ମଧ୍ୟରେ ଆଗେ ଆଧୁନିକ କବିତାର ସ୍ରଷ୍ଟା ଫକୀରମୋହନଙ୍କ ବୈଶିଷ୍ଟ୍ୟ ଅନୁଧ୍ୟାନ କରିପାରିବା । ତାଙ୍କର ବ୍ୟକ୍ତି-ଜୀବନର ହତାଶା, ସମଷ୍ଟି-ଜୀବନ ପ୍ରତି ଅନୁରକ୍ତି ତଥା ବିଶ୍ୱଜୀବନ ପ୍ରତି ବାର୍ତ୍ତା ତାଙ୍କର କବିତାସମୂହରେ ପ୍ରତିଫଳିତ ।

## ଫକୀରମୋହନଙ୍କ କାବ୍ୟ-କବିତାସମୂହ :

୧୮୬୯ରେ ଫକୀରମୋହନ ଭାରତବର୍ଷର ଇତିହାସର ପ୍ରଥମ ଭାଗ ଓ ୧୮୭୦ରେ ୨ୟ ଭାଗ ରଚନା କରିଛନ୍ତି । ୧୮୭୯ରେ ରାମାୟଣ, ୧୮୮୩ରେ ମହାଭାରତ, ୧୮୮୫ରେ ଶ୍ରୀମଦ୍ ଭଗବଦ୍ ଗୀତାର ଅନୁବାଦ କରିଛନ୍ତି । ୧୮୯୨ରେ ଶାଣିତ ବ୍ୟଙ୍ଗବିଦ୍ରୂପ ସମନ୍ୱିତ 'ଭ୍ରମଣବୃତ୍ତାନ୍ତ', 'ଉତ୍କଳ ଭ୍ରମଣ' ରଚନା କରିଛନ୍ତି । ତାଙ୍କର ପୁଷ୍ପମାଳା ୧୮୯୪, ଉପହାର ୧୮୯୫, ଅବସରବାସରେ ୧୯୦୮, ବୌଦ୍ଧାବତାର କାବ୍ୟ ପୂଜାଫୁଲ ୧୯୧୨, ଧୂଳି ୧୯୧୨ର ରଚନା । ଏହାବ୍ୟତୀତ ସେ ଛାନ୍ଦୋଗ୍ୟ ଉପନିଷଦ, ତିତିରୀୟ ଉପନିଷଦ, ପ୍ରଶ୍ନ ଉପନିଷଦ, କଠୋପନିଷଦ, ମୁକ୍ତିକୋପନିଷଦ ପ୍ରଭୃତି ଅନୁବାଦ କରିଛନ୍ତି ।

## ଆଧୁନିକତାର ଲକ୍ଷଣ :

ଆଧୁନିକତା ହେଉଛି ଅତୀତ ପ୍ରତି ଅନୁରକ୍ତ ରହି ଭବିଷ୍ୟତ ଆଡ଼କୁ ପ୍ରସାରିତ ହେବା । ଇତିହାସ ସଚେତନତା, ଜାତୀୟ ଭାବନା, ଅନୁବାଦ କୁଶଳତା, ସମାଜ ସଚେତନତା ତଥା ବ୍ୟଙ୍ଗଧର୍ମିତା ହେଉଛି ଆଧୁନିକତାର ବିଶିଷ୍ଟ ଲକ୍ଷଣ । ଫକୀରମୋହନ ଇତିହାସ ଓ ଅନୁବାଦରେ ନିଜର କୃତିତ୍ୱ ଦେଖାଇଛନ୍ତି । ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ପ୍ରେସ ଓ ପତ୍ରପତ୍ରିକା ସଂପର୍କ; ଯେଉଁଥିପାଇଁ ସେ ବାରମ୍ବାର ପାଠକମାନଙ୍କ ନିକଟରେ ପହଞ୍ଚିବାର ସୁଯୋଗ ପାଇଛନ୍ତି । ଲକ୍ଷଣଗୁଡ଼ିକ ସାହିତ୍ୟରେ ପରିଲକ୍ଷିତ ହୋଇଥିଲା ନବଜାଗରଣ କାଳରେ ଆଧୁନିକତାର ଏହି ବିଶିଷ୍ଟ । ଏହି ସମୟରେ ପ୍ରଥମ ଓଡ଼ିଆ ପ୍ରବନ୍ଧ ବିବେକୀ (୧୮୭୩), ପ୍ରଥମ ନାଟକ ବାବାଜୀ (୧୮୭୭), ପ୍ରଥମ ଉପନ୍ୟାସ ପଦ୍ମମାଳୀ (୧୮୮୮), ପ୍ରଥମ ଚତୁର୍ଦ୍ଦଶପଦୀ କବିତା ରାମ (୧୮୭୨) ରଚିତ ହୋଇଥିଲା । କବିତାକ୍ଷେତ୍ରରେ ଓଡ୍ (ସମ୍ବୋଧନଗୀତିକା), ଏଲିଜି (ଶୋକଗୀତିକା), ସନେଟ୍ ଚତୁର୍ଦ୍ଦଶପଦୀ କବିତା ଭଳି ନୂତନ ଆଂଗିକ ଦେଖାଦେଇଥିଲା । ଗାଥାକବିତା ବାଲାଡ୍ ରଚନା ମଧ୍ୟ ଏହି ସମୟରେ ଲୋକପ୍ରିୟ ହୋଇଥିଲା । କବି ଫକୀରମୋହନ ଏହି ସମସ୍ତ ଫର୍ମରେ କବିତା ରଚନା କରିଛନ୍ତି । ଏ ସଂପର୍କରେ ଡ. ନିତ୍ୟାନନ୍ଦ ଶତପଥୀ କୁହନ୍ତି, ଷୋଡ଼ଶ ଶତାବ୍ଦୀର ଇଂରେଜୀ କବି ସାର୍ ଫିଲିପ୍ ସିଡ୍‌ନୀ କିମ୍ବା ସମସାମୟିକ କବି ରସେଟିଙ୍କ ସନେଟ୍ ପରି କବି ଫକୀରମୋହନଙ୍କ ସନେଟ୍‌ଗୁଡ଼ିକ ପ୍ରେମ, ବିରହ, ବିଚ୍ଛେଦର ଚିରନ୍ତନ ସ୍ୱରସଜ୍ଜାରେ ବେଶ୍ କରୁଣ ଓ ଉଚ୍ଛଳ । ପୁଣି କେତେବେଳେ ଏହି ବ୍ୟକ୍ତିଗତ ଦୁଃଖ ଓ ହତାଶା କିନ୍ତୁ ଅନୁଚିନ୍ତାରେ ଅତି ଗଭୀରଭାବେ ଆତ୍ମଲୀନ ।'' (କବିତା

ଯୁଗେ ଯୁଗେ – ସନେଟ୍ ପରିକ୍ରମା - ପୃ.୭୨) ବ୍ୟକ୍ତିଗତ ବିଷାଦବୋଧ, ସଂକେତଧର୍ମିତା, ଅତୀତପ୍ରୀତି, ପଲ୍ଲୀପ୍ରୀତି, ଜାତୀୟଭାବନା, ସମାଜ ଚିନ୍ତା, ଜୀବନ ଚିନ୍ତା, ପାପବୋଧ, ମୃତ୍ୟୁପ୍ରତି ଅପାରଂଗହୀନ ଦୃଷ୍ଟିଭଙ୍ଗୀ, ବ୍ୟଙ୍ଗଧର୍ମିତା ତାଙ୍କ କବିତାରେ ପରିଦୃଷ୍ଟ ହୋଇଥାଏ । ଏଥି ସହିତ ଖଣ୍ଡକାବ୍ୟ ରଚନା ତଥା ଗାଥାକବିତା ରଚନାରେ ମଧ୍ୟ ସେ ପାରଦର୍ଶିତା ପ୍ରଦର୍ଶନ କରିଛନ୍ତି ।

**ବ୍ୟକ୍ତିଗତ ବିଷାଦବୋଧ :**

ବ୍ୟକ୍ତିଗତ ଭାବଉଚ୍ଛ୍ୱାସକୁ ସାର୍ବଜନୀନ କରିବାର କଳା ଜଣେ ଉଚ୍ଚକୋଟୀର ସ୍ରଷ୍ଟା ନିକଟରେହିଁ ସମ୍ଭବ । ଏହି ଉଚ୍ଛ୍ୱାସ ମୁଖ୍ୟତଃ ବିଷାଦକେନ୍ଦ୍ରିକ । ବ୍ୟକ୍ତିଜୀବନର କାରୁଣ୍ୟ, ଅଶ୍ରୁ ଓ ଅବସାଦରୁ ଏହା ଉଦ୍ଭୁତ ତଥା ସମଗ୍ର ବିଶ୍ୱମାନବର କାରୁଣ୍ୟ ଦିଗକୁ ଉତ୍ତରିତ ହୋଇଛି । ବାଲ୍ୟକାଳରୁ ପିତୃମାତୃ ବିୟୋଗ, ଯୌବନରେ ପତ୍ନୀବିୟୋଗ, ବାର୍ଦ୍ଧକ୍ୟରେ ପୁତ୍ରବିୟୋଗ ତାଙ୍କର ସୃଷ୍ଟିକୁ ବହୁଭାବରେ ପ୍ରଭାବିତ କରିଥିଲା । ଏତଦ୍‌ବ୍ୟତୀତ ଭଗିନୀ ଆନନ୍ଦମୟୀ ଦେବୀ, ଠାକୁମା କୁଚିଲା ଦେବୀଙ୍କ ବିୟୋଗ ଭଳି ଅନେକ ଶୋକ-କବିତା ସେ ରଚନା କରିଛନ୍ତି । ପତ୍ନୀଙ୍କ ଅକାଳ ବିୟୋଗରେ ତାଙ୍କର ଭାବୋଚ୍ଛ୍ୱାସ–

"କେଉଁ କଳାମେଘ ନେଲା କାହିଁରେ ଘୋଡ଼ାଇ
ହୃଦ ଫାଟିଯାଉଅଛି ତାହାକୁ ନପାଇ
ନଥିଲା ତ ଜ୍ୟୋତିର୍ମୟୀ ଅପୂର୍ବ ସୁନ୍ଦରୀ
ମାତ୍ର ପ୍ରାଣଧରିଥିଲି ତାକୁ ଲକ୍ଷ୍ୟକରି
(ଗ୍ରନ୍ଥାବଳୀ ୧୮ଭାଗ ମୋ କ୍ଷୁଦ୍ରତାରା, ପୃ.୨୬୦)
ବାଟ ହେଲି ବଣା ଯେଣୁ ହଜିଗଲା ତାରା
ଅନ୍ଧପରି ଘୂରିହେବି ଜୀବନଟା ସାରା ।"

ଦୟାବତୀ, ଏକି ଲୀଳା, ହଜିଲାଧନ, ସେହିନାମ, ପୁଣି କି ଦେଖିବି ସେହି ସହାସ୍ୟବଦନ, ଶେଷ ମିଳନ, ଦୃଢ଼ବିଶ୍ୱାସ, ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ଭଳି କବିତାରେ ଏହି ବିରହ ଭାବନା ପ୍ରକାଶିତ । ମୁଁ ରହିବି ଆଉ କେଉଁ ସୁଖ ଆଶେ କବିତାରେ–

ଯାହାମୁଖ ଚାହିଁ ରହିଥିଲି ଧୈର୍ଯ୍ୟଧରି, ସଂପଦେବିପଦେ ପାଶେଥିଲା ଛାୟାପରି ।
ସଂକଟ କାଳରେ ଦେଉଥିଲା ସେ ସାନ୍ତ୍ୱନା, ଯା ସେବାରେ ଭୁଲିଥିଲି ରୋଗର ଯନ୍ତ୍ରଣା ।
କାଟିଦେଇ ମାୟା ଚାଲିଗଲା ସ୍ୱର୍ଗବାସେ, ବଂଚି ମୁଁ ରହିବି ଆଉ କେଉଁ ସୁଖ ଆଶେ ।
(ଗ୍ରନ୍ଥାବଳୀ– ପ୍ରଥମ ଭାଗ-ପୃ.୪୩୬)

ପୁତ୍ର ମନମୋହନର ମୃତ୍ୟୁ କବିଙ୍କୁ ଆହୁରି ଅବସାଦଗ୍ରସ୍ତ କରିଛି । "ମୃତ ଶିଶୁପୁତ୍ର ମନମୋହନ, ମାତୃହୀନ ଦୁଇଟି କ୍ଷୁଦ୍ରଶିଶୁ ପ୍ରଭୃତି କବିତାରେ ଏହି ଶୋକ ପ୍ରକାଶିତ –

"ଅନ୍ଧାର ମାଣିକ ଆରେ ନୟନର ଜ୍ୟୋତି
ଜନନୀର ସାରଧନ ହୃଦୟ ସଂପତ୍ତି
x x x x
ଯାଇଥିଲେ ବାପ ଆରେ, ତେଜି ମୁଁ ଜୀବନ
କରନ୍ତୁ ପବିତ୍ର ଭାବେ ମୋ ନାମେ ତର୍ପଣ
x x x x
ଜ୍ୟେଷ୍ଠପୁତ୍ର ଥିଲୁ ମୋର ପିଣ୍ଡ ଅଧିକାରୀ
ଆଶା ଥିଲା ତୋ ହାତରୁ ତର୍ପଣର ବାରି
x x x x
ବାପଧନ ତୁହି ଯେବେ ଥାନ୍ତୁ ମୋର ପାଶେ
ସ୍ଥବିର ବୟସେ ମୁଁ କି ମରନ୍ତି ହତାଶେ ।"

(ଗ୍ରନ୍ଥାବଳୀ ୧ମ ଭାଗ ପୃ.୩୩୫)

ମାତୃହୀନ ଦୁଇଟି କ୍ଷୁଦ୍ରଶିଶୁ କବିତାରେ ମାଆଙ୍କୁ ହରାଇଥିବା ଶିଶୁ ଦ୍ୱୟଙ୍କର ମନୋଭାବ ପ୍ରକାଶିତ । ସତେଯେପରି ଫକୀରମୋହନ ତାଙ୍କର ମାତୃହରା ପୁତ୍ରକନ୍ୟାଙ୍କୁ ସାନ୍ତ୍ୱନା ଦେବା ଉଦ୍ଦେଶ୍ୟରେ ଏହି କବିତା ରଚନା କରିଛନ୍ତି ।

"ଆଗେ କାନ୍ଦୁଥିଲେ ମାଆ ଆସୁଥିଲେ ଧାଇଁ
ଏବେ ତ କାନ୍ଦିଲେ କେହି ପଚାରିବେ ନାହିଁ
କିଏ ଦେବ ଆସି ଆମ୍ଭମାନଙ୍କୁ ସାନ୍ତ୍ୱନା
କାନ୍ଦନା ସରିଆ, ଆଉ କାନ୍ଦନା କାନ୍ଦନା ।"

(ଗ୍ରନ୍ଥାବଳୀ ୧ମ ଭାଗ ପୃ. ୨୬୬)

ପିତାମହୀ, ସ୍ନେହମୟୀ ମାତା, ଭଗିନୀ ଆନନ୍ଦମୟୀ ଦେବୀ ପ୍ରଭୃତି ଶୋକ-କବିତାର ଅନ୍ତର୍ଗତ । ଜ୍ୟେଷ୍ଠା ଭଗିନୀଙ୍କ ନିମିତ୍ତ ତାଙ୍କର ଭାବନା–

"ଦେଖିନାହିଁ ସ୍ନେହମୟୀ ଜନନୀ ଚରଣ
ତୋତେ ଦେଖିବିନା କରେ ତାହାଙ୍କୁ ସ୍ମରଣ ।
ବିଚାର କରଇ ମନେ ତୋର ଦୟା ସ୍ମରି
ମାଆ ଥିଲେ କରିଥାନ୍ତେ ସ୍ନେହ ଏହିପରି ।"

(ଗ୍ରନ୍ଥାବଳୀ ୧ମ ଭାଗ ପୃ. ୨୬୬)

ସତେ ଯେପରି କବି ଫକୀରମୋହନ କବିତାକୁ ତାଙ୍କର ଯନ୍ତ୍ରଣାକାତର ହୃଦୟର ଅଂଜନ ସଦୃଶ ମଣିଛନ୍ତି । ବ୍ୟକ୍ତିଗତ ଦୁଃଖରୁ ଉତ୍ତୀର୍ଣ୍ଣ ହୋଇ ଏକ ବୃହତ୍ତର ଜୀବନ କଥା ଚିନ୍ତା କରିବାର ଆତ୍ମବିଶ୍ୱାସ ଏହି କବିତାସମୂହ ତାଙ୍କୁ ପ୍ରଦାନ କରିଛନ୍ତି ।

## ପ୍ରତୀକ ମାଧ୍ୟମରେ ବିଷାଦର ପ୍ରତିଫଳନ :

ତାଙ୍କର ବ୍ୟକ୍ତିଗତ ଜୀବନର ହତାଶାବ୍ୟଞ୍ଜକ ଚିତ୍ର ପ୍ରତୀକ ମାଧ୍ୟମରେ ପ୍ରକାଶିତ ହୋଇଛି । ଏହାକୁ କବି ଚିତ୍ତର ବ୍ୟାପ୍ତି ଓ ଦୀପ୍ତି ଉଭୟର ଏକତ୍ର ପରିପ୍ରକାଶ ବୋଲି ମନେକରାଯାଇପାରେ । ଚକୁଆ ଚକୋଇ କଥା, ସାହାଡ଼ା ଗଛର କ୍ରନ୍ଦନ, ଯୁଗ୍ମ କୁସୁମ, କପୋତ ସଂଗୀତ, କକ୍ଷଭ୍ରଷ୍ଟ ତାରକା, ବୁଢ଼ାପଳାସ ପ୍ରଭୃତି କବିତା ଏହି ପର୍ଯ୍ୟାବାଚୀ । 'ଚକୁଆ ଚକୋଇ କଥା'ରେ ସେ ବୁଢ଼ୀମା କୁଚିଳା ଦେଈଙ୍କୁ ବୁଢ଼ୀ ଚକୋଇ ଓ ନିଜକୁ ହତଭାଗ୍ୟ ପିଲାଚକୁଆ ବୋଲି ମନେକରିଛନ୍ତି ।

"କେ ତାର ପିତା ମାତା ସେ ଜାଣେ ନାହିଁ
ପିଲା କାଳରୁ ଯାଇ ଅଛନ୍ତି କାହିଁ
ଥିଲା ଏକ ଚକୋଇ ବୁଢ଼ୀ ସେଠାରେ
ବଞ୍ଚାଇ ରଖିଥିଲା ଢାଂକି ଡେଣାରେ
କେତେ ଦିନରେ ବୁଢ଼ୀ ଚକୋଇ ମଲା
ପିଲା ଚକୁଆ ଆଶା ଭରସା ଗଲା ।"

(ଗ୍ରନ୍ଥାବଳୀ ୧ମ ଭାଗ ପୃ. ୨୫୧)

'ସାହାଡ଼ାଗଛର କ୍ରନ୍ଦନ'ରେ କବି ନିଜକୁ ବୁଢ଼ା ସାହାଡ଼ାଗଛ ଓ ତାଙ୍କର ପତ୍ନୀଙ୍କୁ ଲାଜକୁଳୀ ଲତା ବୋଲି ମନେକରିଛନ୍ତି । ପ୍ରବଳ ପବନରେ ସେହି ଲତା ଉଡ଼ିଯାଇଛି ଓ ଲତାର ଫୁଲ ଦୁଇଟି ତଳେ ପଡ଼ିଯାଇଛନ୍ତି । ଏ ଫୁଲ ଦୁଇଟି କବିଙ୍କର ପୁତ୍ର କନ୍ୟା ବ୍ୟତୀତ ଅନ୍ୟ କେହି ନୁହନ୍ତି । 'କପୋତ ସଂଗୀତ'ରେ କାଳରୂପୀ ଭୁଜଂଗ କପୋତୀକୁ ଗ୍ରାସ କରିଥିବାର ବର୍ଣ୍ଣନା ରହିଛି । କପୋତ ଶାବକମାନେ ବଡ଼ ହୋଇ ବସା ଛାଡ଼ି ଉଡ଼ିଯାଉଛନ୍ତି । କିନ୍ତୁ ବୃଦ୍ଧ କପୋତ କ୍ରନ୍ଦନକୁ ସମ୍ବଳ କରି ସ୍ମୃତିକୁ ଧରି ବସାରେ ପଡ଼ିରହିଛି । 'ମୁଁ ହାଟବାହୁଡ଼ା' କବିତାରେ କବି ନିଜକୁ ଅନୁଭୂତିସଂପନ୍ନ ହାଟବାହୁଡ଼ା ମଣିଷ ବୋଲି ଭାବିଛନ୍ତି ଓ ନିଜର ବିଚିତ୍ର ଅନୁଭୂତିର ପେଡ଼ି ପାଠକମାନଙ୍କ ଉଦ୍ଦେଶ୍ୟରେ ଖୋଲି ଦେଇଛନ୍ତି । 'କପୋତ କପୋତି' କବିତାରେ ଜୀବ ଓ ପରମଙ୍କୁ କପୋତ ଓ କପୋତୀ ବୋଲି ମନେକରାଯାଇଛି । ବାସୀଫୁଲ, ଦୀପନିର୍ବାଣ, ଜୀବନ ନଦୀ କକ୍ଷଭ୍ରଷ୍ଟ ତାରକା ପ୍ରଭୃତି ଏହି ଶ୍ରେଣୀର କବିତା । ଅନ୍ୟତ୍ର 'ରାଜା ଓ ଫକୀର' କବିତାରେ ଶରୀର ନବାବ ରାଜ୍ୟର ରାଜା ଆତ୍ମାରାମ,

ମନ୍ତ୍ରୀଜ୍ଞାନ, ଦରୁଆନ୍ ବିବେକଙ୍କ ପାଖଲୋକ ଧୈର୍ଯ୍ୟ ଓ ରାଣୀଦ୍ୱୟ ସୁମତି ଓ କୁମତି ବୋଲି କୁହାଯାଇଛି । ଏହା ମଧ୍ୟ ସଂପୂର୍ଣ୍ଣ ପ୍ରତିକାତ୍ମକ ।

**ଅତୀତ ପ୍ରୀତି :**

ଅତୀତ ପ୍ରୀତି ଆଧୁନିକତାର ଅନ୍ୟତମ ବୈଶିଷ୍ଟ୍ୟ । କାରଣ ଉଜ୍ଜୀବନହିଁ ଭବିଷ୍ୟତପାଇଁ ପଥପ୍ରଦର୍ଶନ କରିଥାଏ । ଫକୀରମୋହନ ଗ୍ରନ୍ଥାବଳୀର ଭୂମିକାରେ ପଣ୍ଡିତ ନୀଳକଣ୍ଠଙ୍କ ଉକ୍ତି– "ମୁଁ ବରାବର କହେ ପରଂପରା ପରିସ୍ଥିତି ଓ ପୁରୋଦୃଷ୍ଟି ଏହି ତିନୋଟି ଉପାଦାନ ଅବିଚ୍ଛେଦ୍ୟ । ଏଇମାନଙ୍କର ଅଙ୍ଗାଙ୍ଗୀ ସଂପର୍କରେ ବ୍ୟକ୍ତିତ୍ୱର ପ୍ରତିଷ୍ଠା । ପରିସ୍ଥିତିର ଆଲୋଚନା ଓ କଳ୍ପନାରେ ଏଇ ବ୍ୟକ୍ତିତ୍ୱ ହେଉଚି ପରମ ଅବଲମ୍ବନ । ପରଂପରାର ପ୍ରଭାବ ନଥିଲେ ପରିସ୍ଥିତିର ନିର୍ମଳ ଅବରୋଧ ହୁଏନାଇଁ ।

(ଗ୍ରନ୍ଥାବଳୀ – ୧ମ ଭାଗ – ଭୂମିକା ୪)

ପୁଣି କି ଦେଖିବି ସେହି ସହାସ୍ୟବଦନା ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ, ସ୍ମୃତି, ସ୍ମୃତିର ଛାୟା, କଟକ, ଭଗ୍ନଶିବ ମନ୍ଦିର ପ୍ରଭୃତି ଅତୀତ ପ୍ରୀତିର ନିଦର୍ଶନ ।

"ଜୀବନ ପ୍ରଭାତେ ମୋର ବିଷାଦ ରାଗିଣୀ
ଦାରୁଣ ନିଦାଘେ ପୁଣ୍ୟ-ତୋୟା ତରଙ୍ଗିଣୀ
ଦରିଦ୍ର-ପରଶମଣି କେ ନେଲା ଛଡ଼ାଇ
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।"

(ଗ୍ରନ୍ଥାବଳୀ– ୧ମ ଭାଗ – ପୃ. ୨୫୩)

'ସ୍ମୃତିର ଛାୟା' କବିତାରେ କବି ଅତୀତକୁ ପାସୋରିବାକୁ ଯତ୍‌ପରୋନାସ୍ତି ଚେଷ୍ଟା କରି ତହିଁରେ ଅସଫଳ ହେବାର ଚିତ୍ର ରହିଛି–

"ଭୁଲିବା ସକାଶେ ଯତ୍ନ ସାଧନ କେବଳ
ସର୍ବ ଚେଷ୍ଟା ସର୍ବ ଯତ୍ନ ହୋଇଛି ବିଫଳ
ଛିନ୍ନଭିନ୍ନ ହୋଇ ଯାଇଅଛି ମୋ ହୃଦୟ
ତଥାପି ଦେଖୁଛି ସେହି ମୂର୍ତ୍ତି ଛାୟାମୟ ।"

(ଗ୍ରନ୍ଥାବଳୀ– ୧ମ ଭାଗ ପୃ. ୩୩୭)

ଅନୁରୂପ ଭାବରେ 'ଦୀପନିର୍ବାଣ' କବିତାରେ କବି କହନ୍ତି–

"ଦୁର୍ନିବାର କାଳ ସ୍ରୋତରେ ସବୁ ଯାଇଛି ଭାସି
ଜୀବନର ମୋର ସର୍ବସ୍ୱ ସୁଖ ସଂପଦ ରାଶି ।"

(ଗ୍ରନ୍ଥାବଳୀ– ୧ମ ଭାଗ ପୃ. ୨୫୯)

ଫକୀରମୋହନ ତାଙ୍କ କବିତାଗୁଡ଼ିକରେ ସ୍ନେହବାରି ଦାନ କରୁଥିବା ଜଳଦକୁ ବାୟୁ ଉଡ଼ାଇନେବା, ପୋଷା ଶାରୀ ପ୍ରେମ ଶିକୁଳି ଛିଣ୍ଡାଇବା, ଅଗଣାର ଲବଂଗଲତା ଶୁଖିଯିବା, ହୃଦୟସାଗରର ପ୍ରେମତରୀ ଭାସିଯିବା, ବେଦରୁ ଗାୟତ୍ରୀମନ୍ତ୍ର ଲିଭିଯିବା ଭଳି ପ୍ରୟୋଗରେ ଅତୀତର ସ୍ମୃତିକୁହିଁ ବାରମ୍ବାର ଉଜ୍ଜୀବିତ କରିଛନ୍ତି ।

**ପଲ୍ଲୀସ୍ମୃତି :**

ପଲ୍ଲୀ ଜୀବନର ଅଜସ୍ର ସ୍ମୃତି କବି ଫକୀରମୋହନଙ୍କର କବିତ୍ୱର ଲାଳନ କରିଛି । ମୋ ଗ୍ରାମ ମଲ୍ଲୀକାଶପୁର, ପଲ୍ଲୀର ପ୍ରଭାତ, ସନ୍ଧ୍ୟା ଏସବୁ ତାଙ୍କ ସ୍ମୃତିରେ ଚିରଜୀବନ୍ତ । ସେହିପରି ପିଲାଦିନେ ଶୁଣିଥିବା କାହାଣୀଭିତ୍ତିକ କବିତା ଭୂଆବିରାଡ଼ି ଓ କାଳିଆ କୁକୁର, ଶଙ୍ଖୀବିରାଡ଼ି ଓ ବଣି ପକ୍ଷିଣୀ, ଚାନ୍ଦମଣିର ଅଂଗା ପ୍ରଭୃତିର ଆବେଦନ ନିତ୍ୟନୂତନ । ଏହିଭଳି ଅନ୍ୟ କେତେକ ଶିଶୁ ଉପଯୋଗୀ କବିତା ହେଲା ଜହ୍ନମାମୁଁ, କୋଇଲିନାନୀ, ବେଙ୍ଗଭାଇ ପ୍ରଭୃତି; କିନ୍ତୁ ଏସବୁ କେବଳ ପଲ୍ଲୀସ୍ମୃତିରେ ସୀମିତ ନୁହଁନ୍ତି, କୋଇଲିନାନୀ କବିତାରେ କବି କହନ୍ତି—

''ଅସୁନ୍ଦର ବୋଲି ତୋତେ ମାଡୁଛି କି ଲାଜ
ମାତ୍ର ଯେବେ ଗୁଣ ଅଛି ରୂପରେ କି କାର୍ଯ୍ୟ ।''

ଏହାଠାରୁ କିଞ୍ଚିତ ଭିନ୍ନ ସ୍ୱରରେ କବି ଜୀବନ ସଂପର୍କୀୟ ତଥ୍ୟ ପରିବେଷଣ କରିଛନ୍ତି ଏହି କୋଇଲିନାନୀ କବିତାର ଶେଷ ପର୍ଯ୍ୟାୟରେ—

''ମୋ କଥାରେ ଦେବୁ ନାନୀ ଉତ୍ତର ତୁ ବାରେ
ବରଷା କାଳରେ ତୁହି ଥାଉ କେଉଁଠାରେ
ଜଣାଗଲା ସୁଖବେଳେ ସବୁ ନାନୀ ଭାଇ
ଅଇଲେ ସଂକଟ କାଳ କାହା ଭେଟ ପାଇଁ ।''

(ଗ୍ରନ୍ଥାବଳୀ ୧ମ ଭାଗ ପୃ. ୨୩୧)

'ଜହ୍ନମାମୁଁ' କବିତାରେ ପରିହାସ କରି କହନ୍ତି ଯେ, ତାରାପତି ବା କୁମୁଦବାନ୍ଧବ ବୋଲି ଜହ୍ନକୁ କୁହାଗଲେ ମଧ୍ୟ ତା'ର ଅଭାବରେ ତାରାମାନେ କାନ୍ଦନ୍ତିନାହିଁ ବା ଅମାବାସ୍ୟାରେ କୁମୁଦମାନେ ଜଳରେ ବୁଡ଼ି ମରନ୍ତିନାହିଁ । 'ଡାଆଣୀ ଆଲୁଅ' କବିତାରେ ମଧ୍ୟ କବି ଦାର୍ଶନିକର ଦୃଷ୍ଟିନେଇ ଲାଳସାର ଡାଆଣୀ କିଭଳି ହୃଦୟକୁ ମାଡ଼ିବସିଛି, ତା'ର ଉଦାହରଣ ଦେଇଛନ୍ତି ।

**ଜାତୀୟତା :**

ଏହାମଧ୍ୟ ଆଧୁନିକତାର ଅନ୍ୟ ଏକ ଉଜ୍ଜ୍ୱଳ ଦିଗ ଉନ୍ମୋଚନ କରିଥାଏ । 'ଉତ୍କଳଭ୍ରମଣଂ'ରେ ଜାତୀୟତାର ସ୍ୱର ସହିତ ବ୍ୟଙ୍ଗବିଦ୍ରୂପର ଶାଣିତ ଦୃଷ୍ଟିଭଙ୍ଗୀ

ଏକୀଭୂତ ହୋଇଯାଇଛି । ପ୍ରଥମରେ ଜାତୀୟ ବୀରମାନଙ୍କ ପ୍ରତି ଶ୍ରଦ୍ଧା ନିବେଦନ, ଦ୍ୱିତୀୟରେ ଗୌରବମୟ ଅତୀତର ଉଜ୍ଜୀବନ, ତୃତୀୟରେ ଭବିଷ୍ୟତପାଇଁ ଆଶା ଉଚ୍ଛ୍ୱାସମୟ ଆଲୋକିତ ଦିଗନ୍ତର ସନ୍ଧାନ ହେଉଛି ଜାତୀୟତାର ସ୍ଥୂଳ ପରିଭାଷା, କବି ରାଧାନାଥ, ରାମଶଙ୍କର, ଗୌରୀଶଙ୍କର, ନନ୍ଦକିଶୋର, ଜଗନ୍ମୋହନ, ମଧୁସୂଦନ ରାଓ, ଶଶିଭୂଷଣ ରାୟ, ବିଶ୍ୱନାଥ କର, ଯୋଗେଶଚନ୍ଦ୍ର ରାୟ, ପ୍ୟାରୀମୋହନ ଆଚାର୍ଯ୍ୟ, ବ୍ରଜସୁନ୍ଦର ଦାସ, ସାଧୁ ଚରଣ ରାୟ, ଚନ୍ଦ୍ରମୋହନ ମହାରଣା, ବୈକୁଣ୍ଠନାଥ ଦେ, କାଣ୍ଡାର ରାଜା ସୁଦ୍ଧଳଦେବ, ଗୋପବନ୍ଧୁ, ନୀଳମଣି ବିଦ୍ୟାରତ୍ନ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ତାଳଚେର ଗୁରୁ ରାମଚନ୍ଦ୍ର ବୀରବର, ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରଭୃତି ପ୍ରାୟ ଅର୍ଦ୍ଧଶତାଧିକ କୃତି ସନ୍ତାନଙ୍କ କୃତିତ୍ୱକୁ ସ୍ମରଣ କରି ସେମାନଙ୍କୁ ଭକ୍ତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ଗୌରବମୟ ଅତୀତ ସଂପର୍କରେ ସଚେତନ କବି ବର୍ତ୍ତମାନ ଉତ୍କଳର ଦୁର୍ଦ୍ଦଶାରେ ମ୍ରିୟମାଣ । ଉତ୍କଳଭୂମି କବିତାରେ–

''ପର ପାଠ ପଢ଼ି କି ଲାଭରେ ପଡ଼ି, ଲେଖି ଦେଇ ଦସ୍ତଖତ
ଅନ୍ନ ବସ୍ତ୍ରେ ପୁଣି ହୋଇ ଟାଣିଟୁଣି, ବୋଲାନ୍ତି ସେ ଭାଗ୍ୟବନ୍ତ
ପୋଷି କେତେ ଆଶା ପଢ଼ି ରାଜଭାଷା, କାଟିଲେ ଜୀବନ ଅଧେ
ଶେଷରେ ସମ୍ବଳ ଗୋଲାମି କେବଳ, ଚାଳିଶି ଟଙ୍କାର ମଧେ ।''

(ଗ୍ରନ୍ଥାବଳୀ – ୧ମ ଭାଗ – ପୃ.୩୬୭)

କିନ୍ତୁ 'କବିର ସାନ୍ତ୍ୱନା' କବିତାରେ କବି ଏ ସମସ୍ତ ଅଶାନ୍ତକୁ ଜିଣି ଆଶା ଓ ବିଶ୍ୱାସର ଦୃଢ଼ତା ପ୍ରଦର୍ଶନ କରିଛନ୍ତି ।

''ସେବା କରୁଅଛି ବସି ମୁହିଁ ମାତୃଭାଷା
ସାନ୍ତ୍ୱନା ଲଭଇ ମନେ ପୋଷି ଏହି ଆଶା
ନ ହେବି କୃତଘ୍ନ ମୁହିଁ ଆହେ ବିଶ୍ୱପତି
ଦେଇଛ ତ ଯାଚି ମୋତେ ଅତୁଳ ସଂପତ୍ତି

x x x x

ରଚିତ କବିତାଗୁଡ଼ି କନ୍ୟା ସ୍ୱରୂପିଣୀ
ଅନୁସରିଥାନ୍ତି ପଛେ ଚିତ୍ତ ବିନୋଦିନୀ
ଉତ୍କଳ ଜଗତେ ମୁହିଁ ତେଜିବି ଜୀବନ
କରିବେ ଏ କନ୍ୟାଗୁଡ଼ି ପିତୃତରପଣ ।''

(ଗ୍ରନ୍ଥାବଳୀ ୧ମ ଭାଗ ପୃ. ୩୩୩)

## ସମାଜଚିନ୍ତା :

ସମାଜସଚେତନ ଶିଳ୍ପୀ ଯେଉଁଠି ସୁଯୋଗ ପାଇଛନ୍ତି ସେଠାରେ ସମାଜ ସଂସ୍କାରକରେ ରୂପାନ୍ତରିତ ହୋଇଯାଇଛନ୍ତି । ବାଲ୍ୟବିଧବା, ରୂପଜୀବୀ, କୃଷକ ଯୁବକ ପ୍ରଭୃତିଙ୍କ ଦୁଃଖ ଦୁର୍ବିପାକରେ କବିଚିତ୍ତ ବିକ୍ଷୁବ୍‌ଧ ହୋଇଛି । ସେ ହିନ୍ଦୁବିଧବା, ଚନ୍ଦ୍ରପ୍ରଭାର ଏକାଦଶୀ, ନବଜୀବନ, ପଶାଖେଳ, ବାରବିଳାସିନୀ ଭଳି କବିତାରେ ସମାଜର ଏହି ସବୁ ଅସୁନ୍ଦର ତଥା ଘୃଣ୍ୟପ୍ରଥା ପ୍ରତି ଅଂଗୁଳି ନିର୍ଦ୍ଦେଶ କରିଛନ୍ତି । ଚନ୍ଦ୍ରପ୍ରଭାର ବୟସ ଆଠବର୍ଷ । ୨୦୦ ଟଙ୍କା କନ୍ୟାସୁନା ଦେଇ ତାକୁ ଷାଠିଏ ବର୍ଷର ବୃଦ୍ଧ ବିବାହ କରନ୍ତି । ନଅବର୍ଷରେ ଚନ୍ଦ୍ରପ୍ରଭା ବିଧବା ହୁଏ । ଏହି ବୁକୁଫଟା ଦୃଶ୍ୟ ଫକୀରମୋହନଙ୍କୁ ଉତ୍ତେଜିତ କରିଛି । ସେ ନିଜର ପ୍ରତିକ୍ରିୟା ପ୍ରକାଶ କରି କହନ୍ତି—

''ଷାଠିଏ ବରଷବୁଢ଼ା ବିଭା ହୋଇପାରେ
ବାଳିକା ସକାଶେ ଶାସ୍ତ୍ର ବିଧାନ ବାହାରେ
ହେ ସମାଜ ! କରୁଅଛ ଯେଉଁ ଅତ୍ୟାଚାର
ନିଶ୍ଚୟ ହେବଟି ପରଲୋକରେ ବିଚାର

x x x x

ବୁଢ଼ା ବିଭା ବେଳେ ଥିଲ ମୁଖେ କନା ଢାଙ୍କି
ରାଣ୍ଡ ବେଳେ ବାହାରିଲ କାଖେ ଶାସ୍ତ୍ର ଜାକି ।''

(ଗ୍ରନ୍ଥାବଳୀ— ୧ମ ଭାଗ, ପୃ. ୪୨୪-୪୨୫)

ବିଧବାକୁ ସାନ୍ତ୍ୱନା ଦେଇ ଫକୀରମୋହନ ତାକୁ ଜୀବନର ଉଚ୍ଚତର ଲକ୍ଷ୍ୟ ସଂପର୍କରେ ସଚେତନ କରିଛନ୍ତି ।

''ସଂକଳ୍ପ କର ତୁ ଏବେ ତାର ସେବା ବ୍ରତ
ଢାଳିଦେବା ମନଧ୍ୟାନ ଦେହର ସାମର୍ଥ୍ୟ
ଥିଲୁ ନାରୀ ହେବୁ ଦେବୀ ଆଉ କି ଭାବନା
ତେଜ ତୁ ଇନ୍ଦ୍ରିୟ ସୁଖ ଲାଳସା ବାସନା ।''

(ଗ୍ରନ୍ଥାବଳୀ— ୧ମ ଭାଗ ପୃ. ୩୯୫)

ଏସବୁ ସମାଜ ସଂପର୍କୀୟ ଭାବନା ଭିତରେ ବିଶ୍ୱହିତର କାମନା ଏକୀଭୂତ ହୋଇଛି 'ଶ୍ରୀଚୈତନ ଦେବଙ୍କ ସଂକୀର୍ତ୍ତନ' କବିତାରେ—

ତେଜ ମନୁ ଅହଂକାର ଭେଦାଭେଦ ଜ୍ଞାନ, ସମସ୍ତଙ୍କ ଏକମାତ୍ର ପିତା ଭଗବାନ
ଚଣ୍ଡାଳ ଯବନ ବିପ୍ର ସର୍ବେ ମୋର ଭାଇ, ଆସ ମିଳିମିଶି ନାଚୁ ହସି ଗୁଣ ଗାଇ

x x x x

ଦେଖନ୍ତୁ କୋରାନ ଫେର ବାଇବେଲ ବେଦ, ସମସ୍ତଙ୍କ ଲକ୍ଷ୍ୟବ୍ରହ୍ମ ନାହିଁ ଭେଦାଭେଦ
ରଚିତ ସକଳ ଶାସ୍ତ୍ର ଏକ ଉପାଦାନେ, ପତିତ ସାଗର ଗର୍ଭେ ଯଥା ନଦୀମାନେ.

x x x x

ବିଶ୍ୱାସେ ପାଇବ ହରି ତର୍କେ ବିଡ଼ମ୍ବନା, ପ୍ରହ୍ଲାଦ ଲଭିଲେ ହରି ସ୍ତମ୍ଭେ ଅଛି ଜଣା ।

(ଗ୍ରନ୍ଥାବଳୀ– ୧ମ ଭାଗ, ପୃ. ୩୫୨)

## ନାରୀ ପ୍ରତି ମନୋଭାବ :

ସାହିତ୍ୟରେ ନାରୀକୁ ସମ୍ମାନଜନକଭାବରେ ଦେଖିବାର ଭାବନା ଏକ ଆଧୁନିକ ଭାବନା । ଶରୀର ବ୍ୟକ୍ତିତ୍ୱକୁ ସ୍ୱୀକାର କରିବା, ତା'ର ପରିବେଶକୁ ଅନୁଧ୍ୟାନ କରି ତା'ର ଦୋଷ ନିରୂପଣ କରିବା । ଯୁକ୍ତିସଂଗତଭାବରେ ନାରୀର ଚିନ୍ତାକୁ ସମାଜ ଆଗରେ ଉପସ୍ଥାପିତ କରିବା ଏକ ଚିନ୍ତାଶୀଳ ସ୍ରଷ୍ଟା ମାନସରହିଁ ସାମାଜିକ କର୍ତ୍ତବ୍ୟ । ଫକୀରମୋହନ ଠାକୁମା କୁଚିଲା ଦେଈଙ୍କଠାରୁ ପତ୍ନୀ ଲୀଳାବତୀ, କୃଷ୍ଣାକୁମାରୀ, ଭଗିନୀ ଆନନ୍ଦମୟୀ ଦେବୀ ପ୍ରଭୃତି ସଂପର୍କୀୟାମାନଙ୍କୁ ଦେଖିଛନ୍ତି । ସ୍ୱର୍ଗତା ଜନନୀଙ୍କ ସ୍ନେହ ଆଦରରୁ ବଂଚିତ ଏହି କବିଚିତ୍ତ ଜନନୀଙ୍କୁ ସକଳ ସନ୍ତାପହାରିଣୀଭାବରେ ପରିକଳ୍ପନା କରିଛି । ସେ ଚନ୍ଦ୍ରପ୍ରଭା ତଥା ବାରବିଳାସିନୀକୁ ଦେଖି ନିଜର ବେଦନା ପ୍ରକାଶ କରିଛନ୍ତି । ଏତଦ୍‌ବ୍ୟତୀତ ସ୍ମୃତିକୁ ସେ ଦେବୀ ବୋଲି ସମ୍ବୋଧନ କରିଛନ୍ତି । ନିଜର ବଧୂ ସଂପର୍କରେ ଲିଖିତ ଦୁଇଟି କବିତା, ପ୍ରଣତାବଧୂ, ନବବଧୂର ଆହ୍ୱାନରେ ତାଙ୍କର ଆଧୁନିକ ଚିନ୍ତାଧାରାର ପରିଚୟ ମିଳେ ।

''ଆସରେ ଆନନ୍ଦମୟୀ ଆସରେ କଲ୍ୟାଣି
ମୂର୍ତ୍ତିମତୀ ଦୟାମାୟା ଆଶୀର୍ବାଦ ବାଣୀ
ସଦ୍ୟ ମୃଗମଦ ପର ବିକାଶୁ ତୋ ଯଶ
କଳଙ୍କ କାଳିମା ତୋତେ ନକରୁ ଧ୍ୱଂସ ।''

(ଗ୍ରନ୍ଥାବଳୀ– ୧ମ ଭାଗ ପୃ. ୩୪୦)

''ତୁ କିରେ ମୋହର ପ୍ରଦୋଷ ଗଗନ ପ୍ରାଙ୍ଗଣରେ ସୁଖତାରା
ହେବୁ କି ମୋହର ଅଂଧର ଲଉଡ଼ି ସମସ୍ତ ସନ୍ତାପ ହରା ?
ହିରଣ୍ୟର ପ୍ରଭା ସୁମନର ଶୋଭା, ତୁ କି ମାଣିକ୍ୟର ଦ୍ୟୁତି ?
ତୁ କି ପଦ୍ମାସନା ଗୋଲୋକବାସିନୀ କ୍ଷୀରାବ୍ଧିତନୟା ମୂର୍ତ୍ତି ?
ବସନ୍ତମାଳତୀ ଫୁଲକୁମୁଦିନୀ ତୁ କି ଶରଦ ମଲ୍ଲିକା ?
କେଉଁ ତପୋବଳେ ପାଇଛିରେ ତୋତେ କୁଳବଧୂ ପ୍ରାଣାଧିକା ?''

(ଗ୍ରନ୍ଥାବଳୀ– ୧ମ ଭାଗ, ପୃ. ୩୫୫)

ପୁନଶ୍ଚ, 'ନାରୀ' କବିତାରେ ସେ ନାରୀକୁ ସଂସାର କଣ୍ଟକବନର କୁସୁମିତ ଲତା ବୋଲି କହିଛନ୍ତି । ସେହି ନାରୀ ପବିତ୍ରତାର ପ୍ରତିମୂର୍ତ୍ତି । ନାରୀର ରୂପଦର୍ଶନରେ ଜୀବନ ଶୀତଳ ହୋଇଥାଏ ।

''ରମଣୀ ହୃଦୟ ପଦ୍ମ କଳିକା ଆକାର
ଦୟାମାୟା ସ୍ନେହ ଭକ୍ତି କିବା ସ୍ତୂପାକାର
ନିର୍ମଳ ଚରିତ୍ର ପୂତମନା ଯେ ମାନବ
ସ୍ୱର୍ଗୀୟ ସୁଷମା ସେଥି କରେ ଅନୁଭବ
x x x x
ଆଦ୍ୟାଶକ୍ତିଠାରୁ ଏହି ଜଗତ ଉତ୍ପତ୍ତି
ଜଗତର ସାରଭୂତା ରମଣୀ ସଂପତ୍ତି ।''

(ଗ୍ରନ୍ଥାବଳୀ– ପୃ. ୨୭୦)

ଏହିଭଳି କବି ନାରୀକୁ ଦେବୀ ସଦୃଶ ପବିତ୍ର ଓ ମହନୀୟ ବୋଲି ପରିକଳ୍ପନା କରିଛନ୍ତି । ଜୀବନଚିନ୍ତା ମନୁଷ୍ୟ ମରଣଶୀଳ । ଏ ଜଗତ ପରିପୂର୍ଣ୍ଣ ସୁଖର ସ୍ଥାନ ନୁହେଁ । ଜୀବଜନ୍ତୁ ମାତ୍ରେ ମୃତ୍ୟୁ ଆଡ଼କୁ ପାଦେ ପାଦେ ଆଗେଇଯାଏ । ତେଣୁ କ୍ଷଣିକ ସୁଖକୁ ଚିରନ୍ତନ ନମଣି ବିଭୁଚିନ୍ତା କରିବା ମାନବର କର୍ତ୍ତବ୍ୟ । ଫକୀରମୋହନଙ୍କର ରାଶି ରାଶି କବିତାରେ ଏହି ଦାର୍ଶନିକ ଅନୁଭୂତି ଫୁଟିଉଠିଛି । ନିଦାଘ ନିଶୀଥ ସ୍ୱପ୍ନ, ଜୀବନ ନଦୀ, ପିଞ୍ଜର ପକ୍ଷୀ, ଜଗତ ନୁହେଁ ପୂର୍ଣ୍ଣ, ସୁଖର ସ୍ଥାନ, ବାସିଫୁଲ, ବିଭାସ ରାଗିଣୀ, ମାନବାଆତ୍ମା, ଚାତକପକ୍ଷୀ, କପୋତ ସଂଗୀତ ପ୍ରଭୃତିରୁ କବିଙ୍କର ଜୀବନାନୁଭୂତି ଓ ବିଭୁଚିନ୍ତା ସ୍ପଷ୍ଟହୋଇ ଦିଶେ । ଜୀବନର ଅମା ଅଂଧାର ପାଇ ଆସିବା ବେଳେ ହିଁ ଚେତନା ଜାଗ୍ରତ ହୁଏ । ବ୍ରହ୍ମନାମର ସୁଧା ରାଗିଣୀ ଶୁଣି ପ୍ରାଣ ଉଲ୍ଲସିତ ହୁଏ । 'ପିଞ୍ଜର ପକ୍ଷୀ' କବିତାରେ 'ନାମଧନ'କୁ ଜୀବନର ଶ୍ରେଷ୍ଠ ପ୍ରାପ୍ତି ବୋଲି କବି ସ୍ୱୀକାର କରିଛନ୍ତି ।

''ଭାଂଗିଯିବ କେଉଁଦିନ ଏ ଦେହ ପଞ୍ଜରୀ
ଉଡ଼ିଯିବ ପ୍ରାଣପକ୍ଷୀ ନ ରଖିବ ଧରି
x x x
ନ ରହରେ ପକ୍ଷୀ କ୍ଷଣେ ନାମଧନ ଛାଡ଼ି
ଜଗିଅଛି ତୋତେ କାଳସ୍ୱରୂପ ବିରାଡ଼ି ।''

(ଗ୍ରନ୍ଥାବଳୀ– ୧ମ ଖଣ୍ଡ, ପୃ. ୨୩୪)

'ଚାତକ ପକ୍ଷୀ' କବିତାରେ କବିପ୍ରାଣର ଚାତକ ପ୍ରାଣବଂଧୁ, ପ୍ରାଣମିତ ଡାକି ଡାକି ତୃପ୍ତ ହେଉନାହିଁ ବୋଲି ବୁଝିପାରିଛନ୍ତି । ଜୀବନ ନଦୀ କାଳର ସାଗର ଭେଟିବାପାଇଁ ଅବିରାମ ଗତିରେ ଚାଲିଛି ।

"ଜନମିବା ଦିନୁ ନାହିଁ ତିଳେକ ବିରାମ
କାଳସାଗରକୁ ଧାଉଁଅଛି ଅବିରାମ ।"
(ଗ୍ରନ୍ଥାବଳୀ– ୧ମ ଭାଗ, ଜୀବନନଦୀ, ପୃ. ୨୩୮)

ଏହି ସଂସାରକୁ ଅଳୀକ ଜାଣିବା ଉତାରେ କବି 'ଶରଣ' କବିତାରେ ନିବେଦନ କରନ୍ତି –

"ସୁଖେ ଦୁଃଖେ ଶୋକେ ଅନ୍ଧାରେ ଆଲୋକେ
ଉତ୍ସବେ ଅଥବା ବିପଦେ
ସ୍ୱଦେଶେ ବିଦେଶେ ନିରାଶେ ଉଲ୍ଲାସେ
ବିଷାଦେ ଅଥବା ସଂପଦେ
ପ୍ରଭୁହେ ! ଏତିକି ମୋର ନିବେଦନ
ଜୀବନ ବିକଳେ ତୁମ୍ଭ ପଦ ତଳେ
ପଶିବି ଯେମନ୍ତ ଶରଣ ।"
(ଗ୍ରନ୍ଥାବଳୀ– ୧ମ ଖଣ୍ଡ, ପୃ. ୩୨୩)

ବ୍ରାହ୍ମଧର୍ମ ପ୍ରତି ତାଙ୍କର ଅନୁରକ୍ତି ଯଥେଷ୍ଟ ଥିଲା । ଏକେଶ୍ୱରବାଦ, ଆତ୍ମସମର୍ପଣର ଭାବନା, ଆଚରଣ ଶୁଦ୍ଧି ଉପରେ ଗୁରୁତ୍ୱ ଆରୋପ କରୁଥିବା ଏହି ସାଧକ ଜୀବନର ଦୁଃଖଦୁର୍ଦ୍ଦଶା ସମୟରେ ସେହି ପ୍ରଭୁଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ ।

**ପାପବୋଧ :**

ପାପ ପୁଣ୍ୟ ଏ ଉଭୟ ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱପରି । ପାପ କରିବା ମଣିଷ ପକ୍ଷରେ ସ୍ୱାଭାବିକ । କିନ୍ତୁ ଯାହାର ବିବେକ ଜାଗ୍ରତ ଥାଏ, ସେ ସତ୍ ଅସତର ପାର୍ଥକ୍ୟ ଜାଣିପାରେ ସେ ପାପପାଇଁ ଅନୁତାପ କରେ ଓ ଜୀବନର ଲକ୍ଷ୍ୟ ସଂପର୍କରେ ସଚେତନ ହୁଏ । ଥରେ ଅନୁତାପ ଆସିଲେ ପୁନର୍ବାର ପାପ କରିବା ସହଜ ହୁଏ ନାହିଁ । କବି ଫକୀରମୋହନ ଜୀବିକାର ଅନୁରୋଧରେ ବାରମ୍ବାର ପାପ କରିଛନ୍ତି । ଈଶ୍ୱରଙ୍କର ଚିରନ୍ତନ ନିୟମକୁ ଉଲ୍ଲଙ୍ଘନ କରିଛନ୍ତି । ଏଥିପାଇଁ ତାଙ୍କର କ୍ଷୋଭର ସୀମା ନାହିଁ । ମହାଧାମରେ କବିତା ରଚନା ପଛରେ ଏହି ପାପବୋଧ କ୍ରିୟାଶୀଳ ହୋଇଛି । କବି ମହାଧାମରେ ବିଶ୍ୱପତିଙ୍କ ସହିତ ସାକ୍ଷାତ ହେଲେ ତାଙ୍କୁ କହିବେ–

"କି ବୋଲିବି ତୁମ୍ଭଠାରେ କିବା ଅଗୋଚର
ଜାଣିଶୁଣି ମହାପାପ କଲି କେତେଥର ।
ମୋର ମହାପାପ ନୁହେଁ ନିତାନ୍ତ ସାମାନ୍ୟ
ବହୁତ କରିଛି ତୁମ୍ଭ ନିୟମ ଅମାନ୍ୟ ।

ତୁମ୍ଭ ପୁତ୍ର କନ୍ୟାଗଣେ ଦେଇଛି ଯନ୍ତ୍ରଣା
କେତେ କରି ଷଡ଼ଯନ୍ତ୍ର କେତେ କୁମନ୍ତ୍ରଣା ।''
(ଗ୍ରନ୍ଥାବଳୀ– ୧ମ ଖଣ୍ଡ, ପୃ. ୨୫୯)

ଏଥିପାଇଁ କବି ଚିତ୍ତ ଖେଦାନଳରେ ଦଗ୍ଧୀଭୂତ ହେଉଛି । ନିରାଶା, ଦୁଶ୍ଚିନ୍ତା, ଉଦ୍‌ବେଗର ଝଂଜା ତାଙ୍କୁ ବାଧିତ କରୁଛି ।

**ମୃତ୍ୟୁ ସଚେତନତା :**

ଏହି ବିଭାବ ଆଧୁନିକ ଓଡ଼ିଆ କବିତା ଜଗତର ଏକ ଶକ୍ତିଶାଳୀ ବିଭାବ । ମୃତ୍ୟୁର ପ୍ରତ୍ୟକ୍ଷ ଅନୁଭୂତି ନଥାଇ ସ୍ରଷ୍ଟାଗଣ ମୃତ୍ୟୁ ସଂପର୍କରେ ଅଧିକ ଚିନ୍ତା କରିଥାଆନ୍ତି । ଫଳରେ ମୃତ୍ୟୁ କାହାପାଇଁ ହୁଏ ବଂଧୁ, ପିତା, ଅତିଥି, ପ୍ରେମିକ, ପୁତ୍ର ବା ଅନ୍ୟକିଛି ଅନନ୍ୟ ସଂପର୍କରେ ବଂଧା ବାନ୍ଧବ । ସେହି ମୃତ୍ୟୁକୁ କବି ମଧୁସୂଦନ ସ୍ନେହମୟୀ ଜନନୀଙ୍କ ନିମନ୍ତ୍ରଣ ସଦୃଶ ମହନୀୟ ବୋଲି ମନେକରିଛନ୍ତି । 'ମୃତ୍ୟୁର ନିମନ୍ତ୍ରଣ' ମଧ ଏହି ପର୍ଯ୍ୟାୟର ଅନ୍ୟ ଏକ କବିତା, ଯେଉଁଠି ମୃତ୍ୟୁ ପାଲଟିଯାଇଛି ପରମମିତ୍ର । ସେହି ମୃତ୍ୟୁ ସକଳ ଦୁଃଖ ଅବସାଦ ଓ ବେଦନାରୁ ମୁକ୍ତି ଦେବାପାଇଁ ସମର୍ଥ । ମୃତ୍ୟୁକୁ ଜନନୀର ନିରାପଦ କୋଳଭାବରେ ପରିକଳ୍ପନା କରିବା ନିଶ୍ଚିତଭାବରେ ଆଧୁନିକ ଭାବଧାରାର ଅନୀତି ପରିପ୍ରକାଶ । 'ସ୍ନେହ ନିମନ୍ତ୍ରଣ' କବିତାରେ –

''ବୃଥାରେ ମାନବ ବୋଲ ଅଶୁଭ ମରଣ
ଦୟାମୟୀ ଜନନୀଙ୍କ ସ୍ନେହ ନିମନ୍ତ୍ରଣ
x x x x
କ୍ରୀଡ଼ାରତ କ୍ଷୁଦ୍ରଶିଶୁ ଦେହେ ଧୂଳିବୋଳେ
ଦିବା ଅବସାନେ ଚଳିଯାଏ ମାତା କୋଳେ
ଧୂଳିର ସମଷ୍ଟିମାତ୍ର ଜଗତ ସଂପତ୍ତି
ଯିବଚାଲି ଧୂଳିଝାଡ଼ି ଧରି ଦିବ୍ୟ ଜ୍ୟୋତି
x x x x
କି ଭୟ ମରଣେ ତେବେ, ଯିବ ମାତା ପାଶେ
ପ୍ରସ୍ତୁତ ରହିବି ସ୍ନେହ ନିମନ୍ତ୍ରଣ ଆଶେ ।''
(ଗ୍ରନ୍ଥାବଳୀ– ୧ମ ଭାଗ ପୃ. ୪୩୧)

**ବ୍ୟଙ୍ଗଧର୍ମିତା :**

ହାସପରିହାସ କେଉଁ ପୁରାତନ କାଳରୁ ସାହିତ୍ୟର ବିଭାବଭାବେ ସ୍ୱୀକୃତ । କିନ୍ତୁ ବ୍ୟଙ୍ଗବିଦ୍ରୂପ ସହିତ ସମାଜତାତ୍ତ୍ୱିକ ଦୃଷ୍ଟିମୁଖୀ ସମ୍ମିଶ୍ରଣର ଚିନ୍ତାଧାରା ଆଧୁନିକ

ଯୁଗର ଚିନ୍ତା ଯେତେବେଳେ ସ୍ରଷ୍ଟା ନିଜର ପରିଚିତ ପରିବେଶରେ ଶ୍ୱାସରୁଦ୍ଧ ହୁଏ ସେ ଅନ୍ୟ ଏକ ଭିନ୍ନ ତଥା ମନୋମତ ଜଗତର ସ୍ୱପ୍ନ ଦେଖେ । ପରିଚିତ ପରିବେଶର ଖାଲଖମା ତା ଆଖିକୁ ଦିଶେ । ସେ ଅସନ୍ତୋଷରୁ ବ୍ୟଙ୍ଗ ବିଦ୍ରୂପର ଭାବନା ସଂଚରି ଆସେ ଯାହା ପାଠକକୁ ଛୁଇଁବାରେ ସମର୍ଥ ହୁଏ । ରାଧାନାଥଙ୍କ 'ଦରବାର' ରଚନା ପୂର୍ବରୁ ୧୮୯୨ରେ 'ଉତ୍କଳଭ୍ରମଣଂ' ରଚନା ତାଙ୍କର ବ୍ୟଙ୍ଗାତ୍ମକତାର ଏକ ସାର୍ଥକ ଉଦାହରଣ । ମୁଁ 'ହାଟବାହୁଡ଼ା' ଭଳି ଦୀର୍ଘ କବିତାରେ ମଧ୍ୟ କବିଙ୍କର ବ୍ୟାପକ ଅନୁଭୂତିର ପ୍ରତିଫଳନ ଦୃଷ୍ଟିଗୋଚର ହୁଏ । ଭାଷା ଓ ରଚନା ଶୈଳୀ ଉଭୟ ଦୃଷ୍ଟିରୁ 'ଉତ୍କଳଭ୍ରମଣଂ' ଓଡ଼ିଆ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ସୃଷ୍ଟି । ପ୍ରାରମ୍ଭରେ ସରସ୍ୱତୀଙ୍କୁ ସେ 'ଅକଲଦାୟିନୀ' ବୋଲି ସମ୍ବୋଧନ କରିଛନ୍ତି । କବି ସରସ୍ୱତୀଙ୍କୁ କୁହନ୍ତି–

''ତୁମ୍ଭର ଅଭ୍ୟାସ କବି କଣ୍ଠେ ବସିବାର
ମୋ ପ୍ରତି ସେପରି କରନାହିଁ ଅତ୍ୟାଚାର
କଣ୍ଠରେ ବସିଲେ ହୋଇଯିବି ଯେ ହାଉଡ଼ା
କିପରି ଲେଖିବି ଆଉ ଗ୍ରନ୍ଥ ଦୁଇପୁଡ଼ା ?
ଉଶ୍ୱାସେ ବସିବ ମାତ ମୋ ମୁଣ୍ଡରେ ଧୀରେ
ଝୁଙ୍କି ନ ପଡ଼ିବ ମାତ ମୋ ମୁଣ୍ଡରେ ଧୀରେ
ଝୁଙ୍କି ନ ପଡ଼ିବ ମୁଣ୍ଡ ଯେମନ୍ତ ଭାରୀରେ
ମୋ ପେଟରେ ବିଦ୍ୟା କିଛି ନାହିଁ ଗୋଶାରରେ
ଅଂଗଭାରୀ ହୋଇ ପଡ଼ିଯାଇପାରେ ତଳେ ।''

(ଗ୍ରନ୍ଥାବଳୀ-୧ମ ଭାଗ, ପୃ. ୨୦୧)

ମାତୃଭାଷା ନିମନ୍ତେ ଓଡ଼ିଆମାନଙ୍କର ନିର୍ବିକାର ମନୋଭାବ ଅପରପକ୍ଷରେ ବିଦେଶୀ ଭାଷା ପ୍ରତି ଅହେତୁକୀ ଆଗ୍ରହ ଉଭୟ କବିଙ୍କୁ ବିବ୍ରତ କରିଛି । 'ଉତ୍କଳଭ୍ରମଣଂ'ରେ ସେ ଏଥିପାଇଁ ଶିକ୍ଷିତ ଓଡ଼ିଆମାନଙ୍କୁ ପରିହାସ କରି ଗାଇଛନ୍ତି–

''ଭଲ ଚୋଟେ ମାତୃଭାଷା କିସ ହେବ ଭାଇ
ଚଳିଯାଉଅଛି କାମ ରୁଣ୍ଡାଇ ପୁଣ୍ଡାଇ
କୁକୁର କିମ୍ପାଇ ଗୋଟେ ବନାଇବ ଘର
ଚାଟିବୁଲେ ବାରମିଶା ଅଇଁଠା ପତର ।''

(ଗ୍ରନ୍ଥାବଳୀ-୧ମ ଭାଗ, ପୃ.୨୧୧)

ଇଂରାଜୀ ଘୋଷି, ନିର୍ଧୂମ ଖରାରେ କୋର୍ଟ ପ୍ୟାଣ୍ଟ ପିନ୍ଧି, ବିସ୍କୁଟ ଖାଇ, ଦରସିଝା ମାଂସ ଖାଇ, ଠିଆ ହୋଇ ପରିସ୍ରାକରି ବା ଅଘଷାଦାନ୍ତରେ ଖାଇଲେ କେହି ଇଂରେଜ ହୋଇଯିବେନାହିଁ । କାରଣ –

"ମୟୂର ଲାଂଜକୁ ଗୁଞ୍ଜି ବୁଲନାହିଁ ଆଉ
ନ ହେବ ମୟୂର ଥିବ ଯେ କାଉ ସେ କାଉ ।"

(ଗ୍ରନ୍ଥାବଳୀ-୧ମ ଭାଗ, ପୃ. ୨୧୧)

ଜଗନ୍ନାଥ ମନ୍ଦିରରେ କିଭଳି ଠକମାନେ ଯାତ୍ରୀମାନଙ୍କ ସରଳତାର ସୁଯୋଗ ନେଇ ସେମାନଙ୍କୁ ଠକାନ୍ତି ତାହା ଫକୀରମୋହନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ତେଣୁ ପୁରୀମନ୍ଦିରର ତତ୍‌କାଳୀନ ଅବସ୍ଥା ସଂପର୍କରେ ତାଙ୍କର ଦୃଢ଼ ବକ୍ତବ୍ୟ–

କରାଣ୍ଡିକୁ ଥଣ୍ଟେ ଆଣ୍ଟେ ଧରେ ଯେହ୍ନେ ବକ
ଧରନ୍ତି ଯାତ୍ରୀଙ୍କୁ ଆସି ତେସନେ ସେବକ

x x x

ପକାନ୍ତି ମୁଣ୍ଡରେ ତାର ଆଶୀର୍ବାଦ ଡାଳି
ନ ପାଇଲେ କିଛି ଚୌଦପୁରୁଷଙ୍କୁ ଗାଳି ।"

(ଗ୍ରନ୍ଥାବଳୀ-୧ମ ଭାଗ ପୃ. ୨୧୪-୧୫)

ମଉଜି, ନେକ୍‌ନାମ, ବାପ୍‌କା ଲଡ଼କା, କୁନ୍ତିକାଲ, ଦରବେଶ ହାଲ, ପବ୍ଲିକ୍ କାର୍ଯ୍ୟ, ଦାରୁଇନ୍ (Darwin) ଭଳି ଶବ୍ଦ ପ୍ରୟୋଗ କରି ସେ ପରିହାସର ବାତାବରଣ ସୃଷ୍ଟି କରିଛନ୍ତି । ମୁଁ ହାଟବାହୁଡ଼ାରେ ତତ୍‌କାଳୀନ ରାଜପରିବାରର କେହି ତାଙ୍କ ପତ୍ରିକା ନେଇ ମୂଲ୍ୟ ନଦେଇଥିବାରୁ ତାଙ୍କୁ ବ୍ୟଙ୍ଗ କରିଛନ୍ତି । ଦେଶୀ ଜିନିଷ ବଣିଜ କଲେ କ୍ଷତିରୁ ଲାଭନାହିଁ ବୋଲି ନିଜର ଅନୁଭୂତି ବଖାଣିବା ପରେ ସେ ଏହି ତଥ୍ୟରେ ପହଞ୍ଚିଛନ୍ତି ଯେ ଦେଶୀ ବିଦେଶୀର ପ୍ରଭେଦ ଯଥେଷ୍ଟ । ବିଦେଶୀ ଜିନିଷର ଆଦର ଥିବା ପର୍ଯ୍ୟନ୍ତ ଦେଶୀ ମାଲ ବିକ୍ରି କଷ୍ଟକର ।

**ଖଣ୍ଡକାବ୍ୟ ଓ ଗାଥା-କବିତା :**

ଗାଥା-କବିତା (Ballads) ରଚନା ଆଧୁନିକ ଯୁଗର ଅନ୍ୟତମ ବିଶିଷ୍ଟ ପ୍ରବୃତ୍ତି । ଫକୀରମୋହନ 'ପୁଷ୍ପମାଳା' ସଂକଳନର 'ଶାକ୍ୟସିଂହଙ୍କ ବୈରାଗ୍ୟ' କବିତାରେ ଗୌତମଙ୍କର ଗୃହତ୍ୟାଗ ଓ ବୁଦ୍ଧତ୍ୱପ୍ରାପ୍ତିର ବର୍ଣ୍ଣନା କରିଥିଲେ । ଏତଦ୍‌ବ୍ୟତୀତ ସତୀ ଲୁକ୍ରେସିୟା, ଯୋସେଫାଇନ୍, ତାରାବାଈ, ତୁକରାମ, ଶ୍ରୀମତୀ ମାଧବୀ ଦେବୀ ଭଳି ଗାଥା-କବିତା ରଚନା କରିଛନ୍ତି । ଲୁକ୍ରେସିୟା ଇଟାଲୀର ପ୍ରସିଦ୍ଧ ବୀର କୋଲେଟିନ୍‌ଙ୍କ ଧର୍ମପତ୍ନୀ । ଇଟାଲୀର ରାଜପୁତ୍ର ସେକ୍‌ସଟମ୍ ଲୁକ୍ରେସିୟାଙ୍କର ସତୀତ୍ୱ ହରଣ କରିବାରୁ ଲୁକ୍ରେସିୟା ସ୍ୱାମୀଙ୍କ ନିକଟକୁ ସମସ୍ତ ଘଟଣା ପତ୍ରଦ୍ୱାରା ଜଣାଇ ଆତ୍ମଘାତିନୀ ହୋଇଥିଲେ । ଫକୀରମୋହନ ଏଠାରେ ଲୁକ୍ରେସିୟାଙ୍କ ସତୀତ୍ୱ ସଂପର୍କରେ କହନ୍ତି –

"ଧିକ୍ ଧିକ୍ ହୋଇଅଛି ଶୃଗାଳ ପ୍ରୟାସୀ
ଲଭିବାକୁ ପତିବ୍ରତା କେଶରୀ ପେୟସୀ
x x x x
ସ୍ୱର୍ଗୀୟ ସତୀତ୍ୱ ଧନ ପୃଥିବୀ ଲୋକରେ
ବାହୁଡ଼ି ନ ଆସେ ଯେବେ ହଜିଯାଏ ଥରେ ।"
(ଗ୍ରନ୍ଥାବଳୀ-୧ମ ଭାଗ, ପୃ. ୩୫୭-୩୫୯)

ନେପୋଲିୟନ୍‌ଙ୍କ ରାଣୀ ଯୋସେଫାଇନ୍ ମଧ୍ୟ ଅନ୍ୟ ଏକ ବୈଦେଶିକ ଚରିତ୍ର; ଯାହାର ପାତିବ୍ରତ୍ୟ ଓ ତ୍ୟାଗର ପରାକାଷ୍ଠାରେ ସମଗ୍ର ଜଗତ ସ୍ତବ୍ଧ ହୋଇଯାଇଥିଲା । ସ୍ୱାମୀଙ୍କ ସୁଖ-ସୌଭାଗ୍ୟପାଇଁ ଯୋସେଫାଇନ୍ ସ୍ୱାମୀଙ୍କୁ ତ୍ୟାଗ କରିଥିଲେ । ନେପୋଲିୟନ୍ ଆଗଷ୍ଟା ମେରିୟାଙ୍କୁ ବିବାହ କରିବେ ବୋଲି କାମନା କରନ୍ତି । ଏହା ଶୁଣିବା ପରେ ଯୋସେଫାଇନ୍ ବିବ୍ରତ ସତ୍ୟ; କିନ୍ତୁ ତାଙ୍କର ପ୍ରେମ ତ୍ୟାଗରେହିଁ ପର୍ଯ୍ୟବସିତ ହୋଇଯାଇଛି ଓ ସେ ନିର୍ବିକାରରେ ନୋପୋଲିୟନ୍‌ଙ୍କୁ ତ୍ୟାଗ କରିଛନ୍ତି ।

ଖଣ୍ଡକାବ୍ୟ ବୌଦ୍ଧାବତାର ବଂଗୀୟ କବି ନବୀନ ଚନ୍ଦ୍ର ସେନ୍‌ଙ୍କର 'ଅମିତାଭ' କାବ୍ୟର ଅନୁସରଣରେ ରଚିତ । ବୁଦ୍ଧଙ୍କ ଜୀବନୀ, ବୌଦ୍ଧଧର୍ମର ବୈଶିଷ୍ଟ୍ୟ ସହିତ କାରୁଣ୍ୟ ତଥା ମାନବୀୟ ଭାବାବେଗର ଉଚ୍ଛ୍ୱାସ ଏଥିରେ ଉଲ୍ଲେଖଯୋଗ୍ୟ । ପୃଥିବୀର ଜରାବ୍ୟାଧି, ମୃତ୍ୟୁ ଦେଖି ମୂହ୍ୟମାନ ଯୁବକ ସିଦ୍ଧାର୍ଥଙ୍କର ସଂସାର ତ୍ୟାଗ, ସେଥିପାଇଁ ପିତା ଶୁଦ୍ଧୋଦନ, ମାତା ପ୍ରଭାବତୀଙ୍କର କ୍ରନ୍ଦନ ପାଠକ ଚକ୍ଷୁରେ ଅଶ୍ରୁ ସଂଚାର କରିପାରେ । ପିତା ଶୁଦ୍ଧୋଦନଙ୍କର କ୍ରନ୍ଦନ—

ଆରେ ମୋର ବାପଧନ ପ୍ରିୟ ପ୍ରାଣାଧିକ, ଅନ୍ଧର ଲଉଡ଼ି ଶାକ୍ୟକୁଳର ମାଣିକ
x x x x
ନୟନ ପିତୁଳି ଆରେ ମୋର ଗଳାହାରା, ଅମା ଆକାଶର ଏକମାତ୍ର ଧ୍ରୁବତାରା
(ଗ୍ରନ୍ଥାବଳୀ-୧ମ ଭାଗ, ପୃ. ୪୮୪)

ମାତା ପ୍ରଭାବତୀଙ୍କ ରୋଦନ ମଧ୍ୟରେ ବାର୍ଦ୍ଧକ୍ୟର ପୁତ୍ରହରା ଦମ୍ପତିଙ୍କର ଆବେଗ ପ୍ରକଟିତ । ଯେଉଁ ସିଦ୍ଧାର୍ଥ ପଶୁପକ୍ଷୀଙ୍କ ଦୁଃଖ ସହିପାରନ୍ତିନାହିଁ ସେ ମାତାଙ୍କ ଅଶ୍ରୁକୁ କିଭଳି ସହିଛନ୍ତି ? ଏଭଳି ପ୍ରଶ୍ନ କେବଳ ପ୍ରଭାବତୀଙ୍କର ନୁହେଁ । ପ୍ରତ୍ୟେକ ପୁତ୍ରଶୋକବିଧୂରା ଜନନୀ ପ୍ରାଣରେ ଏହା ପ୍ରତିଧ୍ୱନି ତୋଳିବାରେ ସମର୍ଥ ।

ଏ ସମସ୍ତ ରଚନା ମଧ୍ୟରେ କରୁଣରସର ମହାପ୍ରବାହହିଁ ସୃଷ୍ଟ ହୋଇ ଦିଶିଯାଏ । ଫକୀରମୋହନ ତାଙ୍କର 'ଆତ୍ମଜୀବନୀ ଚରିତ'ରେ ଲେଖିଛନ୍ତି —

"ମୁଁ ଯେ କବିତା ଲେଖିବାକୁ ଶିଖିଛି । ସେଥିର ଅନ୍ୟତମ କାରଣ ମୋ ସ୍ତ୍ରୀ । ସେ ମୋ କବିତା ଶୁଣିବାକୁ ବଡ଼ ଭଲପାଉଥିଲେ । ପ୍ରଥମେ ତାଙ୍କ ମନୋରଂଜନ ସକାଶେ ମୁଁ କବିତା ଲେଖୁଥିଲି । ତାଙ୍କର ମୃତ୍ୟୁ ପରେ ମୋ ମନର ବ୍ୟାକୁଳତା ନିବାରଣ ନିମନ୍ତେ ମୁଁ କବିତା ଲେଖେ । ମୋର ଅଧିକାଂଶ କବିତା ଦାରୁଣପୀଡ଼ା, ବିପଦ ଓ ମନର ଅସ୍ଥିରତା ସମୟର ଲେଖା ।"

ଏହି ଅସ୍ଥିରତାରୁ ସ୍ଥିରତାକୁ, ସୀମିତ ବଳୟ ମଧ୍ୟରୁ ବ୍ୟାପକତାକୁ ଅବସାଦର ଅଂଧକାର ମଧ୍ୟରୁ ଆନନ୍ଦର ଆଲୋକିତ ରାଜ୍ୟକୁ ଫକୀରମୋହନଙ୍କ ହାତଧରି ଉଠାଇନେଇଥିଲା ତାଙ୍କର ରାଶି ରାଶି କବିତା । ଆଧୁନିକତାର ସମସ୍ତ ଲକ୍ଷଣ ସହିତ ଏଥିରେ ସରଳ ଛନ୍ଦର ବ୍ୟବହାର ମଧ୍ୟ ଥିଲା ଦୃଷ୍ଟି ଆକର୍ଷଣକାରୀ । ଓଡ଼ିଆ ଗଦ୍ୟ-ସାହିତ୍ୟକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇପାରିଥିବା ଏହି ସ୍ରଷ୍ଟାପୁରୁଷ 'କପୋତ ସଂଗୀତ' କବିତାରେ ନିଜର ମର୍ମବେଦନା ଏହିଭଳି ପ୍ରକାଶ କରିଛନ୍ତି—

"ବଳିପଡ଼ଇ ଯେବେ ମର୍ମବେଦନା
ସଂଗୀତ କରି କି ସେ ପାଏ ସାନ୍ତ୍ୱନା ।"

(ଗ୍ରନ୍ଥାବଳୀ-୧ମ ଭାଗ, ପୃ. ୩୩୯)

ବ୍ୟାସକବିଙ୍କର ବ୍ୟାସକବିତ୍ୱ ପ୍ରତିପାଦନ ପାଇଁ ତାଙ୍କର କବିତାଗୁଡ଼ିକ ଯଥେଷ୍ଟ ଶକ୍ତି ରଖନ୍ତି । ଏହି ଅପ୍ରାୟ ଆଲୋଚିତ ଦିଗନ୍ତ ସଂପର୍କରେ ଅଧିକ ଆଲୋଚନା ସମୟ ଉପଯୋଗୀ ମନେହୁଏ ।

---

# କବି ଗୋଦାବରୀଶ ମହାପାତ୍ର

ଗୋଦାବରୀଶ ମହାପାତ୍ର ଓଡ଼ିଆ ସାହିତ୍ୟ ଜଗତରେ ନିଜସ୍ୱ ଦୀପ୍ତିରେ ଉଜ୍ଜ୍ୱଳ ଏକ ଦିଗବାରେଣୀ ନକ୍ଷତ୍ର । ୧୯୧୪ରୁ କବିତା ରଚନାରେ ହାତ ଦେଇଥିବା ଏହି ସ୍ରଷ୍ଟାପୁରୁଷ ଏକାଧାରରେ ଗଳ୍ପ, କବିତା, ରମ୍ୟରଚନା, ସଂପାଦନା, ଶିଶୁ ସାହିତ୍ୟ ରଚନା ଇତ୍ୟାଦି କ୍ଷେତ୍ରରେ ନିଜର ସିଦ୍ଧିର ସ୍ୱାକ୍ଷର ଅଂକନ କରିଛନ୍ତି । ତାଙ୍କର ପ୍ରାଥମିକ ପର୍ଯ୍ୟାୟର ରଚନାରେ ରାଧାନାଥ ଓ ମଧୁସୂଦନଙ୍କ ପ୍ରଭାବ ପରିଦୃଷ୍ଟ ହେଉଥିବା ସମୟରେ ପରବର୍ତ୍ତୀ ରଚନାରେ ଗୋପବଂଧୁ ଓ ଗୋଦାବରୀଶଙ୍କ ପ୍ରଭାବ ସ୍ପଷ୍ଟ ହୋଇଛି । ସତ୍ୟବାଦୀର ଅନ୍ତିମ ପର୍ବ ଓ ସବୁଜର ପ୍ରାରମ୍ଭିକ ପର୍ଯ୍ୟାୟ ଭିତରେ ଏହି କବିଙ୍କର ସ୍ଥାନ । ସବୁଜର ରୋମାଣ୍ଟିକ୍ ଭାବପ୍ରାଣତା ଏହି କବିତାରେ ଊଣା । ଏଠି ଯୌବନ ଅଛି, ମାତ୍ର ତାହା ତ୍ୟାଗପାଇଁ ଅଭିପ୍ରେତ । ଦେଶପ୍ରୀତି ଓ ବିଶ୍ୱପ୍ରୀତିରେ ଉଦ୍‌ବୁଦ୍ଧ ଏହି କବି-ଲେଖନୀ ଉତ୍କଳପ୍ରୀତିରେ ଛଳ ଛଳ । ତାଙ୍କର କବିତା ସଂକଳନଗୁଡ଼ିକ ହେଉଛି ଲେଖାବଳୀ, ଯେ ଫୁଲ ଫୁଟିଥିଲା, ପାହାଚ ତଳର ଘାସ, ବଂକା ଓ ସିଧା, କଣ୍ଟା ଓ ଫୁଲ, ହେ ମୋର କଲମ, ହାଣ୍ଡିଶାଳର ବିପ୍ଳବ, ଉଠ କଂକାଳ ପ୍ରଭୃତି । 'କଣ୍ଟା ଓ ଫୁଲ' ଏବଂ 'ବଂକା ଓ ସିଧା' ପାଇଁ ସେ ସାହିତ୍ୟ ଏକାଡେମୀଦ୍ୱାରା ସମ୍ମାନିତ, 'ନିଆଁଖୁଣ୍ଟା' ଭଳି ନିର୍ଭୀକ ସମାଲୋଚନାଧର୍ମୀ ପତ୍ରିକାର ସଂପାଦକଭାବରେ ଓଡ଼ିଶାରେ ସେ ବେଶ୍ ପରିଚିତ । ଏପରିକି 'ନିଆଁଖୁଣ୍ଟା ମହାପାତ୍ର' ନାମରେ ସେ ଓଡ଼ିଶାର ଘରେ ଘରେ ଆଦୃତ ।

'ବାଣପୁର' ଓ 'ପ୍ରଭାତ କୁସୁମ' ଭଳି କବିତା ତାଙ୍କର ପ୍ରାଥମିକ ପର୍ଯ୍ୟାୟର ରଚନା, ପରବର୍ତ୍ତୀ କାଳରେ ସେ ଜାତୀୟତା ଓ ତ୍ୟାଗ, ଯୌବନର ଜୟଯାତ୍ରା ତଥା ଦୀନଦରିଦ୍ରର ପ୍ରାଣର କଥା କହିବାପାଇଁ ନିଜ ଲେଖନୀକୁ ଦମ୍ଭ ଦେଇଛନ୍ତି ।

**ଯୌବନର ଜୟଗାନ :**

ଯୁଗ ଯୁଗ ଧରି ଯୌବନ କବି ଓ ଭାବୁକମାନଙ୍କୁ ମୁଗ୍ଧ କରିଆସିଛି । ସବୁ କବିପାଇଁ ଏହି ଯୌବନ ପ୍ରଣୟର ପୀଠସ୍ଥଳୀ । ଏହା କେବଳ ଭୋଗ ବା ତ୍ୟାଗପାଇଁ ଉଦ୍ଦିଷ୍ଟନୁହେଁ । ସ୍ୱୟଂ ପ୍ରକାଶ କ୍ଷମତାଥିବା ଏହି ସମୟର ସଦ୍‌ବ୍ୟବହାରହିଁ ଜୀବନର ସିଦ୍ଧି । କବିଙ୍କପାଇଁ ଯୌବନ ସୃଷ୍ଟିର ସ୍ୱପ୍ନ ଓ ପ୍ରଳୟ ପ୍ରେରଣାର ଏକତ୍ର ସହାବସ୍ଥାନ । 'ଉଠ କଂକାଳ' ସଂକଳନର 'ସ୍ୱାଗତ ଯୌବନ' କବିତାରେ–

''ଯୌବନ ତବ ଉତ୍ପ୍ଳବ ଅଭିସାରେ
  ଗିରିଚୂଡ଼ା, ଧରା ଗଭୀର ଗଣ୍ଡ ମିଶିଯାଉ ଏକାକାରେ ।''
'ଉଠ କଂକାଳ'ର ଅନୁରୂପ ପଦ –
''ବାଜିଉଠୁ ବାରେ ମରଣ ବିଜୟୀ ବଂଶୀ ସେ ବୁକୁ ତଳେ
ଧୂର୍ଜଟୀ ଜଟା ଛୁଟୁ କମ୍ପାଇ ଯୌବନ କୁତୂହଳେ ।''

ଯୌବନରେହିଁ ପ୍ରାଣ ବିଶ୍ୱପ୍ରାଣରେ ଉଦ୍‌ବେଳିତ ହୋଇଉଠେ । ବିଶ୍ୱବେଦନା ପ୍ରତି ଯୌବନରେ ସମବେଦନା ଜାଗ୍ରତ ହୁଏ । ତେଣୁ ଯୌବନ କାଳର ସଦ୍‌ଉପଯୋଗରେ ସକଳ ଗୁପ୍ତ ଚେତନାମୁକ୍ତ ହୁଏ ଓ ବିଶ୍ୱ ଜାଗ୍ରତ ହୁଏ ବୋଲି କବି ଏକାଧିକ କବିତାରେ ସୂଚନା ଦେଇଛନ୍ତି ।

**ଜାତୀୟତାର ପରିଭାଷା :**

ଜାତୀୟତାର ସ୍ୱର ଏହି ସମୟରେ ସମଗ୍ର ଭାରତୀୟ ସାହିତ୍ୟର ଦୃପ୍ତ ସ୍ୱର ଥିଲା । ଏହି ଜାତୀୟତାର ସ୍ପନ୍ଦନ କେବେ ପୂର୍ବପୁରୁଷର ସ୍ମୃତି ଉଜ୍ଜୀବନରେ, କେବେ ତତ୍‌କାଳୀନ ଦେଶର ଦୁସ୍ଥିତି ଆକଳନରେ ତ କେବେ ଭବିଷ୍ୟତର ଆଶାବାଦୀ ଦୃଷ୍ଟି ମଧ୍ୟରେ ପ୍ରକାଶିତ ହୁଏ । ଜାତୀୟତାର ଯେଉଁ ଦୃପ୍ତ ସ୍ୱର 'ଉଠ କଙ୍କାଳ'ରେ ପ୍ରତିଧ୍ୱନିତ, ତାହା ଓଡ଼ିଆ ସାହିତ୍ୟରେ ଅନନ୍ୟ । ୧୯୩୨ରେ 'ଶ୍ମଶାନ ପୂଜାରୀର ଆହ୍ୱାନ' ଶୀର୍ଷକରେ ପ୍ରଥମ ଥର ଏହି କବିତା ପ୍ରକାଶିତ ହୋଇଥିଲା । ଓଡ଼ିଶାର ଇତିହାସ ସଂପର୍କରେ ବ୍ୟାପକ ଅନୁଶୀଳନ ଆତୃପ୍ତ ଛନ୍ଦ 'ଉଠ କଙ୍କାଳ'କୁ ଚିରନ୍ତନ ଉଦ୍‌ବୋଧନ ଗୀତିର ପ୍ରତିଷ୍ଠା ଦେଇଛି ।

''ନିଜାମ ଭୁବନେ କଳବର୍ଗାର ଅର୍ଗଳ ଏଡ଼ି ଦିନେ
  ଗଜପତି ବୀର ବେରାର ଭେଜିଲା ଜୟ ଗୌରବ ଗାନେ
  ଦୁର୍ଜୟଗଡ଼ ଦେବର କୋଣ୍ଡା କହେ ଆଜି ସେଇକଥା
  ଗଜପତି ବୀର ଦେଇଥିଲା ତା'ର ରଣେ ଉନ୍ନତ ମଥା ।''

'ଉଠ କଙ୍କାଳ'ର ଛତ୍ରେ ଛତ୍ରେ ବାହମନିପତି ଯବନ ଓ ବିଜୟ ନଗରର ପରାଜୟ କାହାଣୀ ସହିତ ଛିନ୍ନମସ୍ତା ଉତ୍କଳର ସମସ୍ତ ବିଚ୍ଛିନ୍ନାଞ୍ଚଳ ସଂପର୍କୀୟ ତଥ୍ୟ ଖୁବ୍ ମର୍ମସ୍ପର୍ଶୀଭାବରେ ଫୁଟିଉଠିଛି । 'ଶିଖ୍ମନାଇ' ନାମକ କବିତାରେ କବି ଜାତୀୟତାର ବିରୋଧୀ ଶକ୍ତିଙ୍କୁ ସଚେତନ କରିଛନ୍ତି । ଯୁଗେ ଯୁଗେ ଶିଖ୍ମନାଇଗଣ ରାଜଶକ୍ତିକୁ କବଳିତ କରିବାକୁ ଓ ପ୍ରଭାବିତ କରିବାକୁ ଚାହିଁଥାଆନ୍ତି, କବିଙ୍କ ଭାଷାରେ–

"ତୁମରି ପାପର ଚାନ୍ଦ୍ରାୟଣ ଏତେ ବର୍ଷ ଯେ ଭୋଗିବା ହେଲା
ମହାମାନବର ଏ ମହାଦେଶେ ମହାଦାନବର ଚାଲିଲା ଲୀଳା ।"

ଏହି ଅପଶକ୍ତି ନିଜର କ୍ଷୁଦ୍ର ସ୍ୱାର୍ଥପାଇଁ ଦେଶର ସ୍ୱାଧୀନତାକୁ ନିର୍ବିକାରରେ ପର ହାତକୁ ଟେକିଦେଇପାରନ୍ତି, ସେମାନଙ୍କ ଅପକର୍ମ ବିଷୟରେ କବି ନିଜ ଅନୁଭୂତିରୁ ଅନେକ ତଥ୍ୟ ଜାଣନ୍ତି, ତେଣୁ ସେ ପରିହାସାତ୍ମକ ଭାବର ସେହି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ଏଭଳି କବିତା ରଚନା କରିଛନ୍ତି । ଇତିହାସର ପୁନରୁଜ୍ଜୀବନ ଭଳି ବର୍ତ୍ତମାନର ବିଶିଷ୍ଟ ବ୍ୟକ୍ତିତ୍ୱ ତଥା ଚିନ୍ତାନାୟକଗଣଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଜଣାଇବା ଜାତୀୟତାର ଅନ୍ୟତମ ପରିଭାଷା । କବି ମହାତ୍ମା ଗାନ୍ଧିଙ୍କ ଉଦ୍ଦେଶ୍ୟରେ ଏକାଧିକ କବିତା ଲେଖିଛନ୍ତି । ସର୍ବହରାଙ୍କ ନେତା ଲେଲିନ୍‌ଙ୍କୁ ନିଜର ଭକ୍ତି ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ କବିଙ୍କର ଉକ୍ତି–

"କୋଟି ଗରିବର ଅଶ୍ରୁ କରିଲ କଣ୍ଠମାଳା
ବକ୍ଷେ ବହିଲ ନିର୍ଯାତନାର ଦହନ ଜ୍ୱାଳା
ନିଷ୍ପେସିତର ଆସନ କରିଲ କୁସୁମମୟ
ପୁଲକେ ବିତରି ସତ୍ୟ ଶାନ୍ତି କି ବରାଭୟ ?"
(ସାବରମତୀର ମହାମାନବର ଚରଣତଳେ)

### ସାମ୍ୟବାଦୀ ଚେତନାର ଧାରା :

ମାର୍କସ୍, ଲେଲିନ୍‌ଙ୍କ ଭଳି ସାମ୍ୟବାଦର ପଥପ୍ରଦର୍ଶକ ନେତୃବର୍ଗ ଏକଦା ବିଶ୍ୱର ଶୋଷିତ ଶ୍ରେଣୀପାଇଁ ଈଶ୍ୱରଙ୍କ ଦୂତ ସଦୃଶ ଥିଲେ । ଖଟିଖିଆ ମଜୁରିଆମାନଙ୍କର ସର୍ବନିମ୍ନ ଦାବି ଉପସ୍ଥାପନ କରି, ସେମାନଙ୍କୁ ସାମାଜିକ ନ୍ୟାୟ ଦେବାର ପ୍ରଚେଷ୍ଟାହିଁ ସାମ୍ୟବାଦର ଜନ୍ମଦାତା ଥିଲା । ଗୋଦାବରୀଶଙ୍କର ରଚନାରେ– ମୁକୁଟର ପରାଜୟ, ଜମିଦାରର ମୃତ୍ୟୁ, ଚଷାଭାଇ ଭଳି କବିତା ଏହି ସାମ୍ୟବାଦୀ ଚିନ୍ତାଧାରାର ବାହକ ହୋଇଛି । ବାଲା ସ୍ୱାଇଁ ପାଲଟିଛି ଶୋଷିତର ପ୍ରତିନିଧି । ନୈତିକତା, ସତ୍ୟ ପ୍ରତି ଅନୁରାଗ ଓ ଆଦର୍ଶପାଇଁ ଜୀବନର ସାର୍ଥକତାର ଧାରା ସେ ସତ୍ୟବାଦୀ ଗୋଷ୍ଠୀରୁହିଁ ଲାଭ କରିଛନ୍ତି । ଲେଲିନ୍ ତାଙ୍କପାଇଁ ଆଶ୍ୱାସନାର ଏକ ନାମ, ଲେଲିନ୍‌ଙ୍କ ମୃତ୍ୟୁରେ ସେ ଗାଇଛନ୍ତି–

"କେଉଁ ମାୟାପୁରୀ ସ୍ୱପ୍ନ ଦୁଆରେ କିବା ନନ୍ଦନ ଗୋପନ ରଥେ
ସ୍ରଷ୍ଟା ହେ ତବ ନୂତନ ସୃଷ୍ଟି ଶଂକା ଆଣିଲା ମାନବ ପଥେ
ମେରୁ ହିମ ତଳେ ତମରି ମଧୁର କମ୍ପିତ କର ପରଶ ଲାଗି
ପଥେ ପଥେ ହସି ମୁକ୍ତି ଭିକାରି, ମରଣ ଯାତ୍ରୀ ଉଠିଲେ ଜାଗି ।"

କୋଟି କୋଟି ଜୀବନ୍ମୃତ ମଣିଷ କଣ୍ଠରେ ଭାଷା ଓ ବୁକୁରେ ଆଶାଭରି ଦେଇଥିବା ବିଶିଷ୍ଟ ଜନନାୟକଙ୍କ ଉଦ୍ଦେଶ୍ୟରେ ରଚିତ ଏହି କବିତାରେ ତାଙ୍କର ସାଧାରଣ ମଣିଷ ପ୍ରତି ଥିବା ଦରଦର ସ୍ୱର ଅନୁରଣିତ । ୧୯୩୬ ପରେ ରଚିତ ତାଙ୍କର କବିତାଗୁଡ଼ିକରେ ଜାତୀୟତାର ଭାବନା ଅଧିକ ତୀବ୍ର । ବିଶ୍ୱପ୍ରୀତି ମଧ୍ୟରେ ଓଡ଼ିଶାର ଜାତୀୟଜୀବନ କିଭଳି ମହିମାମୟ, ତାହା କବି ବାରମ୍ବାର ଉଲ୍ଲେଖ କରିଛନ୍ତି । ତାଙ୍କର ଆଦର୍ଶ ହେଉଛନ୍ତି ମହାମାନବ ମହାତ୍ମା ଗାନ୍ଧି । ତେଣୁ ଲେଲିନ୍‌ଙ୍କର ସାମ୍ୟବାଦୀ ଦୃଷ୍ଟିକୋଣ ଏଠାରେ ମାନବବାଦୀ ଦୃଷ୍ଟିକୋଣରେ ପରିଣତ ହୋଇଯାଇଛି । ବିପ୍ଳବ ମଧ୍ୟରେ ସୃଷ୍ଟିରେ ଆବାହନ କବିର ଲକ୍ଷ୍ୟ, ତେଣୁ 'ଛନ୍ଦେ ଛନ୍ଦେ' କବିତାରେ ସତ୍ୟାଗ୍ରହର ସାର୍ଥକତାପାଇଁ –

''ସତ୍ୟାଗ୍ରହ ଜଳେ ଅନ୍ତରେ
ନାଚୁ ଚିର ଚଞ୍ଚଳ ଅର୍ନ୍ତର ଅବିରଳ ।''

'ଉଠ ନବଯୁଗ ନବମନ୍ତ୍ରରେ' (ଛନ୍ଦେ ଛନ୍ଦେ) ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଉତ୍କଳର ଯୋଗଦାନ ଓ ତା'ର ବୈଶିଷ୍ଟ୍ୟ ପ୍ରତିପାଦନ ସଂପର୍କରେ ସଚେତନ ସ୍ରଷ୍ଟା ବାରମ୍ବାର ଉତ୍କଳପ୍ରୀତି, ଭାରତପ୍ରୀତି ସହିତ ବିଶ୍ୱପ୍ରୀତିର ଧାରାକୁ ଫେଣ୍ଟି ଦେଇଛନ୍ତି । ତାଙ୍କର ସାମ୍ୟବାଦ କିନ୍ତୁ ମାନବବାଦ ଦିଗକୁ ସର୍ବଦା ଉତ୍ତରିତ ହୋଇ ରହିଛି । ସେ ଶୋଷକର ପରିବର୍ତ୍ତନ ଉପରେ ଗଭୀର ଆସ୍ଥା ରଖିଛନ୍ତି ।

**ବ୍ୟଙ୍ଗ ବିଦ୍ରୂପର ଆଲେଖ୍ୟ :**

ତୀକ୍ଷ୍ଣ ଶାଣିତ ବ୍ୟଙ୍ଗ ଯେ ପଥଭୁଲା ମଣିଷକୁ ଉପଯୁକ୍ତ ପଥର ସନ୍ଧାନ ଦେବାର ସାମର୍ଥ୍ୟ ରଖେ, ଏହା ସର୍ବବାଦୀସମ୍ମତ । ପରିହାସଜର୍ଜରିତ ହେଲେହିଁ ବ୍ୟକ୍ତିର ତ୍ରୁଟି ସଂଶୋଧିତ ହୁଏ । ସାହିତ୍ୟ ମାଧ୍ୟମରେ ବ୍ୟଙ୍ଗର ଏହି ସାବଲୀଳ ପ୍ରକାଶ ଗୋଦାବରୀଶଙ୍କ ଲେଖନୀର ବୈଶିଷ୍ଟ୍ୟ । ୧୯୩୮ ମାର୍ଚ୍ଚ ୧୨ଠାରୁ 'ନିଆଁଖୁଣ୍ଟା'ର ପ୍ରକାଶ ଏଥିପାଇଁ ମାର୍ଗ ପ୍ରକାଶ କରିଥିଲା । ଘୋର ଆର୍ଥିକ ସଂକଟଭିତରେ ମଧ୍ୟ ଗୋଦାବରୀଶଙ୍କ ନିଷ୍ଠା ଓ ଅଧ୍ୟବସାୟ ବଳରେ 'ନିଆଁଖୁଣ୍ଟା' ବଞ୍ଚିରହିଥିଲା ଓ ଓଡ଼ିଶାର ସାମାଜିକ ତଥା ରାଜନୈତିକ ଜୀବନକୁ ପ୍ରଭାବିତ କରିଥିଲା । ସମୟ ଉପଯୋଗୀ ଚେତାବନୀ ଶୁଣାଇ ସମାଜରୁ ଅସମତା ଦୂରକରି, ସାମାଜିକ ନ୍ୟାୟ ପ୍ରତିଷ୍ଠା କରିବା ଥିଲା 'ନିଆଁଖୁଣ୍ଟା'ର ଉଦ୍ଦେଶ୍ୟ । 'ନିଆଁଖୁଣ୍ଟା'ରେ ପ୍ରକାଶିତ 'ଗରିବର ଦୁର୍ଗା ସ୍ତବ' କବିତାରେ କବି ଦୁର୍ଗା ଠାକୁରାଣୀଙ୍କୁ ମନ୍ତ୍ରୀଙ୍କ ସହିତ ତୁଳନା କରିବସିଛନ୍ତି–

''ଜନନୀ ଗୋ ତୁମେ ଗସ୍ତରେ ଆସି କାଲି ତ ଯାଇଛ ଫେରି
କି ଅବା ତୁମର 'ପ୍ରୋଗ୍ରାମ' ଥିଲା ଜାଣିବାକୁ ଚାହେଁ ଖାଲି
ନଗରେ ନଗରେ ବାଜା ବାଜୁଥିଲା
ଜମା ହୋଇଥିଲେ କେତେ ଥିଲାବାଲା
ବିଚାରିଲି, ତୁମେ ପାଲଟିଗଲ କି ଆମରି ମନ୍ତ୍ରୀପରି
ଆସିଥିଲ ମାଆ ସତେ କି ଚଢ଼ି ଗୋ ନୂତନ ହାଓ୍ୱାଗାଡ଼ି ।''

ବେଳ ଅବେଳରେ ଯିଏ ଯେତେଥର ଭୋଗ ଦେଲେ ଖାଇବା, ସହରରେ ପୂଜା ପାଇ ମଫସଲର ଝାଟି ମାଟି ରାସ୍ତାକୁ ପାସୋରି ଯିବା, ଅଳ୍ପଦିନ ଗସ୍ତକରି ବେଶି ଦିନର ଟି.ଏ. ନେବା ପ୍ରଭୃତି ରାଜନେତାଙ୍କର ଦୁର୍ଗୁଣ ସବୁକୁ ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ପ୍ରୟୋଗ କରି ସେ ପରିହାସର ନୂତନ କୋଟୀ ଉନ୍ମୋଚିତ କରିଛନ୍ତି ।

ତୁମେ ଓ ଆମେ, ପ୍ରାର୍ଥନା, ରୋଷେଇ ସଂକଟ, ଠିକ୍ ଭଳି କବିତାରେ ଏହି ପରିହାସର ତୀବ୍ର କଟାକ୍ଷ ଆମେ ଦେଖିଥାଉ । ହାଣ୍ଡିଶାଳକୁ ଘୃଣା କରିଥିବା ଆଧୁନିକା ନାରୀ ନିଜର ତ୍ରୁଟି ବୁଝି ପୁଣିଥରେ ହାଣ୍ଡିଶାଳ, ଚୂଲୀ, କରେଇ ଓ କାଠଜାଳକୁ ଆଦରି ନିଏ । 'ହାଣ୍ଡିଶାଳର ବିପ୍ଳବ'ରେ ମଧ୍ୟ ପରିହାସାତ୍ମକଭାବରେ ଆଧୁନିକ ସଭ୍ୟତାର ଦୁର୍ବଳ ଦିଗ ପ୍ରତି ଅଂଗୁଳି ନିର୍ଦ୍ଦେଶ କରାଯାଇଛି । ଓଡ଼ିଶାର ରାଜନୀତି ସହିତ ଜଡ଼ିତ ଏହି ସ୍ରଷ୍ଟାପୁରୁଷ ସମାଜର ପ୍ରତି ସ୍ତରକୁ ଖୁବ୍ ନିକଟରୁ ଦେଖିବାର ସୁଯୋଗ ପାଇଛନ୍ତି, ତେଣୁ ତେଲୀର ଘଣାଠାରୁ କଣ୍ଟ୍ରାକ୍ଟରର ବିଲ୍, ବଜାର ସଉଦା, ଡାକ୍ତର, ଥାନାବାବୁ, ସ୍କୁଲ ମାଷ୍ଟର ସମସ୍ତଙ୍କ ଦୋଷ ଦୁର୍ବଳତା ତାଙ୍କ ଆଖିରେ ଧରାପଡ଼ିଛି–

''ଲେଖିବାକୁ ଠିକ୍ କଥା ଭୟକରେ ଥାନାବାବୁ
ବଜାରରେ ଠିକ୍ ନାହିଁ ସରକାରୀ ଦରସବୁ
x x x
ଠିକ୍ ହେବା ଆଗୁ କାମ ବିଲ୍ ଦିଏ କଣ୍ଟ୍ରାକ୍ଟର
ଠିକ୍ ପାଠ ପଢ଼ାଏନି ଉସ୍କୁଲେ ମାଷ୍ଟର ।''

## ପ୍ରତୀକ ପ୍ରୟୋଗରେ ସ୍ୱାତନ୍ତ୍ର୍ୟ :

ପ୍ରତୀକ ସାଧାରଣକୁ ଅସାଧାରଣରେ ପରିଣତ କରେ । ସମକାଳୀନକୁ ସର୍ବକାଳୀନ କରିଦିଏ । କବି ଗୋଦାବରୀଶ ମହାପାତ୍ରଙ୍କ ବ୍ୟଙ୍ଗ ଦୃଷ୍ଟିରେ ପେଚା, ଚିଲ, ଛତା, ବୁଲା କୁକୁର, ଚଟି ଓ ଶାଗୁଣା ପ୍ରତୀକରେ ରୂପାନ୍ତରିତ ହୋଇଛନ୍ତି । ପେଚାକୁ ମନ୍ତ୍ରୀ ତଥା ଶାସନକର୍ତ୍ତାଭାବେ ଗ୍ରହଣ କରି ସେ କହିଛନ୍ତି–

''ମାନବ ଭଜିଛି ପେଚା, ପେଚାମୟ ଆଜି ଏ ସମାଜ
ତୁମକୁ ମଣେ ମୁଁ ମନ୍ତ୍ରୀ, ତୁମେ ଏବେ ଏ ଦେଶପାଳକ
ମୃତ୍ୟୁପଥେ ନେବାପାଇଁ ତୁମେ କିହେ ହୋଇବ ଚାଳକ ?''

ଅନୁରୂପ ଭାବରେ 'ଚଟି' କବିତାରେ–

''ପଶୁର ଚମଡ଼ା ତୁମେ ପଶୁ ଆତ୍ମା ଯାଇ ଅପସରି
ଆଶ୍ରୟ ନେଇଛ କେତେ ଏ ଦେଶର ନର ଦେହ ଭରି ।''

'ପେଚା' ଅଶୁଭର ସଂକେତ । ତେଣୁ ମନ୍ତ୍ରୀ ବା ଶାସନକର୍ତ୍ତା ଯଦି ପେଚା ହୁଅନ୍ତି, ତେବେ ଏ ଦେଶ ଶୀଘ୍ର ମୃତ୍ୟୁପଥର ଯାତ୍ରୀ ହେବ । 'ଚଟି'ରେ ଥିବା ପଶୁର ଚମଡ଼ା ଏବେ ମଣିଷ ଚମଡ଼ାରେ ରୂପାନ୍ତରିତ ହୋଇଛି । ଅର୍ଥାତ୍ ମଣିଷ ପଶୁ ପାଲଟି ଯାଇଛି । ମାୟାବୀ; ସଂଶୟବାଦୀ ନେତୃବର୍ଗ ଆଜି ନର ଗୃଧ୍ର ଦଳରେ ପରିଣତ ହୋଇଛନ୍ତି । ଶାଗୁଣା ଯେମିତି ମୃତବ୍ୟକ୍ତିର ମାଂସପାଇଁ କୋଳାହଳ କରନ୍ତି, ସେଇମିତି ନେତାମାନେ ବିବସ୍ତ୍ର ବୁଭୁକ୍ଷୁ ଜନସାଧାରଣଙ୍କ ସ୍ୱାର୍ଥପାଇଁ ଅଯଥା କୋଳାହଳ କରୁଛନ୍ତି । 'ମୁକୁଟର ପରାଜୟ' ଓ 'ଜମିଦାରର ମୃତ୍ୟୁ' ମଧ୍ୟ ତାଙ୍କର ଉଲ୍ଲେଖଯୋଗ୍ୟ ପ୍ରତୀକଧର୍ମୀ କବିତା । ଏଠାରେ ମୁକୁଟ ଶକ୍ତି-ସାମର୍ଥ୍ୟ ଓ ଅହଂକାରର ପ୍ରତୀକ । କୌପୀନ ଓ ମୁକୁଟ ମଧ୍ୟରେ ବ୍ୟବଧାନ, କୌପୀନର ନ୍ୟାର୍ଯ୍ୟ ଦାବି ଉପସ୍ଥାପନ ଓ ମୁକୁଟର ପରାଜୟ ଅର୍ଥାତ୍ ସାମ୍ୟବାଦର ଜୟଯାତ୍ରା ଏହାର ମୂଳକଥା –

''କୌପୀନ ଆଉ ମୁକୁଟ ମଝିରେ ବିରାଟ ଯେ ବ୍ୟବଧାନ
କହେ କୌପୀନ ଗଲା ଏ ମୁକୁଟ ଛାଡ଼ିଦେଇ ତା'ର ଥାନ ।''

କିନ୍ତୁ ମୁକୁଟଧାରୀମାନେ ଅତିକ୍ରାନ୍ତ ହେଲେ ମଧ୍ୟ ପୁଞ୍ଜିପତିଙ୍କ କୁଟୀରେ ବୀଣା ବାଜୁଥାଏ । ସେମାନେ ରାଜପୁତ୍ର ଓ ରାଜଦଣ୍ଡ ସହିତ ଅନ୍ତର୍ହିତ ହୁଅନ୍ତିନାହିଁ । ରାଜନୀତିରେ ବିକାକିଣା ବଜାରରେ ବେପାରୀ ସାଜି ସାଧାରଣ ମଣିଷକୁ ଭୁଆଁ ବୁଲାଉଥାନ୍ତି । ବନ୍ୟାଞ୍ଚଳର ନିୟନ୍ତଣ, ଲାଠି ଓ ବଳିକ, ଖଣ୍ଡଗିରି ତଳେ, ହେ କୋଡ଼ି କୋଦାଳ, ଦଳେଇ ଘାଇ, ଶୁଣ ଦେବୀ ଦୁର୍ଗେ, ଛବିଶ ଜାନୁୟାରୀ, ପ୍ରାର୍ଥୀ ଅଭ୍ୟର୍ଥନା ଭଳି କବିତାରେ ସମକାଳୀନ ଉତ୍କଳର ବିଭିନ୍ନ ଦୁର୍ଦ୍ଦଶା ତଥା ନେତୃବୃନ୍ଦଙ୍କ ଦ୍ୱୈତବ୍ୟକ୍ତିତ୍ୱର ଚିତ୍ର ପ୍ରତିଫଳିତ । ସାମ୍ୟବାଦୀ ଚେତନାର ପ୍ରତୀକଭାବରେ ଦାଆ ହାତୁଡ଼ି ଗୃହୀତ, ମାତ୍ର ଗୋଦାବରୀଶ ମହାପାତ୍ର କୋଡ଼ି ଓ ଶାବଳକୁ ମେହେନତି ଜନତାର ମୁଖପାତ୍ରରେ ପରିଣତ କରିଛନ୍ତି–

''ଧନଗର୍ବ ଅହମିକା କ୍ଷମତା ବିଳାସ ଲାଞ୍ଛ ମିଛ ଚୋରି କାରବାରେ
କବର ଦେବାକୁ ହେବ, ହେ କୋଡ଼ି କୋଦାଳ, ଆସିବ କି ତୁମେ ଏତେବେଳେ ।''

'ଦଳେଇ ଘାଇ' ଓଡ଼ିଶାରେ ଦୁର୍ଦ୍ଦଶା ଆଣିଦେଇଛି, ମାତ୍ର କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କପାଇଁ ଦଳେଇ ଘାଇ ହୋଇଛି ସ୍ୱାର୍ଥସିଦ୍ଧିର ସାଧନ । ହାସ୍ୟରସ ଓ ବ୍ୟଙ୍ଗର ଏଭଳି ସମନ୍ୱୟ ହୁଏତ ଗୋଦାବରୀଶଙ୍କ ପୂର୍ବରୁ ବା ପରେ ହୋଇପାରି ନାହିଁ । ଏସମସ୍ତ କବିତାରେ ଓଡ଼ିଶାର ଦୁର୍ଦ୍ଦଶା, ଓଡ଼ିଆମାନଙ୍କର ହୀନମନ୍ୟତା, ଦାବି ପୂରଣ ଦିଗରେ ଅନାଗ୍ରହ ଓ ମୁଷ୍ଟିମେୟ ଗୋଷ୍ଠୀଙ୍କର ସ୍ୱାର୍ଥପରତାର ସ୍ୱରୂପ ପ୍ରକାଶ ପାଇଛି । ସେ ସାଧାରଣ ମଣିଷକୁ 'ଗଧ'ର ପ୍ରତୀକ ଭିତରେ ଅବଲୋକନ କରିଛନ୍ତି । ଏହି ଗଧ ପ୍ରତିବାଦହୀନ । 'ଗଧ ସ୍ତବ' କବିତାରେ–

''ହେ ମୋର ଜାଗ୍ରତ ଗଧ, ହେ ସତ୍ୟର ଚରମ ପୂଜାରୀ
କାଳସିନ୍ଧୁ ବେଳାଭୂମି ତଳେ
ସ୍ତୂପୀକୃତ ବେଦନାର କି ନିବିଡ଼ ମହାଭାର ବହି
ପାଦଚାଳ ନେତ୍ର ତୀର ଧାରେ ।''

ସେହି ଗଧ ଏ ଦେଶର ଭୋଟଦାତା ଜନସାଧାରଣ, ଯେଉଁମାନେ ନିର୍ବିକାର, ଅବିଚଳିତ, ଦୁଃଖିନୀ ଧୋବଣୀର ଆଦରର ଧନ । ତା'ର ପିଠି ବୋଝ ବୋହି ବୋହି କ୍ଲାନ୍ତ । ସେ ଚିରଦିନ ଜୀବନ ଯାତ୍ରାରେ ଊର୍ଦ୍ଧ୍ୱଶ୍ୱାସ । ତା'ପାଇଁ ବିଧାନସଭାରେ ଆଲୋଚନା ଚାଲେ । ତା'ପାଇଁ ସମସ୍ତେ କାନ୍ଦନ୍ତି, ମାତ୍ର କାହା ଆଖିରୁ ଲୁହ ଝରେ ନାହିଁ । ଏତାଦୃଶ କବିତାର ଆବେଦନ ସ୍ୱାଧୀନତାର ପଚାଶ ବର୍ଷ ପରେ ମଧ୍ୟ ନିତ୍ୟନୂତନ ମନେହୁଏ ।

## ପ୍ରକୃତିର ପ୍ରେରଣା :

ପ୍ରକୃତି ତାଙ୍କପାଇଁ ଅପରୂପ ଶୋଭାର ପସରାନୁହେଁ, ସେ କେବେ ଭୀମ ଭୟଙ୍କର ତ କେବେ ପ୍ରେରଣାଦାତ୍ରୀ, ପ୍ରକୃତିର ଅନ୍ତର୍ନିହିତ ଆବେଗ ଓ ମାନବୀୟ ଆବେଦନ ତାଙ୍କୁ ପ୍ରେରଣା ଯୋଗାଇଛି, 'ଯେ ଫୁଲ ଫୁଟିଥିଲା' ସଂକଳନର ବର୍ଷା, ଆହ୍ୱାନ, ଶ୍ରାବଣ ଶେଷେ ଭଳି କବିତାରେ ଏହାର ସ୍ୱର ସ୍ପଷ୍ଟ, 'ବର୍ଷା' କବିତାରେ–

''ଅଖିଳ ଅବନୀ ଅଭିଯାନ ବାଣୀ ନିହି ଏ ରୁଦ୍ରବୁକେ
ଆସିଛି ବରଷା ଆଜି ମୁଁ ବଜ୍ର ଡାକେ ।''

ବଜ୍ରର ନିନାଦ ଭିତରେ ବିପ୍ଲବର ସ୍ୱର ସ୍ପଷ୍ଟ ହୋଇଛି ଓ କବି ବଜ୍ର ସହିତ ବର୍ଷାର ସଂପର୍କ ଭଳି ସୃଷ୍ଟି ସହିତ ବିପ୍ଲବର ସଂପର୍କ ନିର୍ଦ୍ଧାରଣ କରିଛନ୍ତି । କେବେ

ସେ ବର୍ଷାକୁ ଆହ୍ୱାନ କରି ନିଜ ନିଜ ତୀର ତରୁଭଳି ପଲ୍ଲବିତ ହେବାର କାମନା ରଖିଛନ୍ତି; କିନ୍ତୁ ଏହି ଭାବନା ଦୀର୍ଘସ୍ଥାୟୀ ହୋଇପାରିନାହିଁ । ସେ ମଣିଷର ଅଭାବ କଷଣ ସହିତ ରାଜନୀତିର ଚାତୁର୍ଯ୍ୟ ଦେଖି କ୍ଷୁବ୍ଧ ହୋଇପଡ଼ିଛନ୍ତି, ସେହେତୁ ଜନତାର ଦୁଃଖରେ ବିଚଳିତ କବି 'ମୃତ୍ୟୁର ଶୋଭାଯାତ୍ରା' କବିତାରେ ଗାଇ ଉଠିଛନ୍ତି—

''ସ୍ଥିର ରହ ହେ ତପନ ଗତି ତବ ବନ୍ଦକର ମେଘ
ବନ୍ଦକର ସମୀରଣ ତୁମର ଏ ପ୍ରଭଞ୍ଜନ ବେଗ
ଜୀବନର ଅଭିଯୋଗ ଆଜି ଟେକ ଶତମୁଖେ ଫଣା
କର ରସାତଳଗାମୀ ଏ ଶାସକ ଯେତେ ବାଟବଣା ।''

ଏଠାରେ ପ୍ରକୃତି ହୋଇଛି ଉପଲକ୍ଷ୍ୟ, ମାତ୍ର ଲକ୍ଷ୍ୟ ହେଉଛି ବାଟବଣା ଶାସକମାନଙ୍କୁ ବିଦ୍ରୂପର ଚାବୁକମାରି କ୍ଷତାକ୍ତ କରିବା । ଏଠାରେ ପ୍ରକୃତିର ସୁଷମା ନାହିଁ, ଅଛି ପ୍ରତିରୋଧକାରୀ ଶକ୍ତି । ଏପରିକି କବି ଚେତନାରେ ଶ୍ମଶାନ ଜୀବନ ଓ ମୃତ୍ୟୁର ସଂଗମସ୍ଥଳ । ସେ ଅତୀତ ଗୌରବର ବିଶ୍ରାମସ୍ଥଳୀଭାବରେ ଅଶେଷ ସମ୍ମାନର ଅଧିକାରୀ ।

**ସାଧାରଣ ଜନତା ପ୍ରତି ସମବେଦନା :**

ଗ୍ରାମ୍ୟ ଜୀବନର ଚିତ୍ରସମ୍ବଳିତ ତାଙ୍କର କବିତାଗୁଡ଼ିକରେ ଗ୍ରାମର ମନଲୋଭା ଛବି ନାହିଁ, ଅଛି ରୋଗ, ଅଭାବ, ବନ୍ୟାବାତ୍ୟା ପ୍ରପୀଡ଼ିତ ଅତ୍ୟାଚାରକ୍ଲିଷ୍ଟ ଗ୍ରାମବାସୀର ହାହାକାର । ବର୍ମା ତଥା ରେଙ୍ଗୁନ୍ ଫେରନ୍ତା ଓଡ଼ିଆ କୁଲିର ଜୀବନଯନ୍ତ୍ରଣା, ଶୋଷଣ ଓ ଅତ୍ୟାଚାର ଦାଉରେ ଛଟପଟ ଓଡ଼ିଆର କାନ୍ଦଣା ତାଙ୍କ କବିତାକୁ ସମବେଦନାରେ ସିକ୍ତ କରିଛି, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ଆର୍ଥନୀତିକ ସ୍ଥିତିର ଚିତ୍ର—

''ଆଜି ପଚାରୁଚ କି କଥା କହିବି ହେ ଭାଇ ହେ ମୋର ଭଉଣୀ
ଟଙ୍କାକର ଯେ ଧାନ ଦେଲି କିଣି ପୂରିଲାନାଇଁ ଯେ ଗଉଣୀ
ଏ କୋଳ ପିଲାକୁ ମିଶାଇ ଚାରିଟି
ଘରେ ବସି ଲୋକେ କରୁଥିବେ ପାଟି
ଉଷେଇ ଶୁଖେଇ ଚାଉଳ କରିବି ପେଟ ପୂରାକୁ ଏ ପାଉନି
ପିଲା ଅଳି ଝଳି କେମିତି ସହିବି ଆହା ଏ ପରାଣ ଯାଉନି ।''

ପ୍ରାଣର ବ୍ୟଥା, ତୁମେ ଓ ଆମେ ଭଳି କବିତାରେ ଏହି ସ୍ୱର ସ୍ପଷ୍ଟ । 'ତୁମେ ଓ ଆମେ' କବିତାରେ କବି ନିଜକୁ 'ଆମେ' ଗୋଷ୍ଠୀର ପ୍ରତିନିଧି ମନେକରିଛନ୍ତି ।

ଏହି 'ଆମେ'ମାନଙ୍କ ପାଖରେ ଉପଭୋଗର ସାଧନ ଅଜାଡ଼ି ହୋଇପଡ଼େ । 'ତୁମେ'ମାନେ କିନ୍ତୁ ମଫସଲରେ ନାହିଁ ନାହିଁର ଚିତ୍କାର କରୁଥାଆନ୍ତି –

"ତମେ ଅଛ ସେଇ ପୁରୁଣାକାଳିଆ ଘରେ,
ଆମ ଘର ଏବେ ରାଜଧାନୀ କଟକରେ
x x x x
ତୁମରିପାଇଁ କି ଦିନରାତି ଧାଇଁ ଧାଇଁ
ଆମ ମୋଟରକୁ କ୍ଷଣେ ଅବସର ନାହିଁ ।୯୪

କବି ଗୋଦାବରୀଶ ମହାପାତ୍ର କବିତାରେ ନାନାବିଧ ପରୀକ୍ଷା କରିଛନ୍ତି । ତାଙ୍କର ଉଦ୍‌ବୋଧନ କବିତାଗୁଡ଼ିକ ସ୍ୱତନ୍ତ୍ର ଆଲୋଚନାର ଆବଶ୍ୟକ କରନ୍ତି । ସେ ଗାଥା-କବିତା, ସମ୍ବୋଧନ-ଗୀତିକା, ଶୋକ-ଗୀତିକା, ବ୍ୟଙ୍ଗଗୀତି, ସନେଟ ଆଦି ରଚନା କରିଛନ୍ତି । ପ୍ରବାସ ପଥେ, ଶ୍ରାବଣ ଶେଷେ, ଜନ୍ମାଷ୍ଟମୀ, ଗଣେଶ-ଗୀତିକା ପ୍ରଭୃତିରେ ସାଂଗୀତିକତା ଚମତ୍କାର ପ୍ରୟୋଗ ଦେଖାଯାଏ । ସବୁଜ ଯୁଗର ଆରମ୍ଭ ପୂର୍ବର ସେ ଓଡ଼ିଆରେ ମାତ୍ରାବୃତ୍ତ ଛନ୍ଦର ପ୍ରୟୋଗ କରିଛନ୍ତି ।

କବି ଗୋଦାବରୀଶ ନିଜର ଅପୂର୍ବ ପ୍ରତିଭାର ସ୍ପର୍ଶରେ ଓଡ଼ିଶାର ପ୍ରକୃତିକୁ ଜୀବନ୍ତ କରିଛନ୍ତି । ମୂକ ଓଡ଼ିଆକୁ ମୁଖର କରିଛନ୍ତି । ଶୋଷକକୁ ସଚେତନ କରିବା ସହିତ ଶୋଷିତକୁ ପ୍ରତିରୋଧ ଶକ୍ତି ଦେବାର ପ୍ରୟାସ କରିଛନ୍ତି । ସମକାଳୀନ ସମସ୍ୟାକୁ ସର୍ବକାଳୀନ ରୂପ ଦେବା ଓ ତହିଁରେ ଉନ୍ନତ କଳାର ସୁଷମା ସଂଚାର କରିବାରେ ତାଙ୍କର ସାମର୍ଥ୍ୟ ପ୍ରକଟିତ । ଯୁଗର ସନ୍ଧିକ୍ଷଣରେ ଆବିର୍ଭୂତ ଏହି ସ୍ରଷ୍ଟାପୁରୁଷ ନିଜ ସମୟକୁ ନିଜ ସାହିତ୍ୟରେ ବାନ୍ଧିରଖିବାର ସାର୍ଥକ ପ୍ରୟାସ କରିଛନ୍ତି ।

---

# ଭୀମଭୋଇଙ୍କ ଭଜନମାଳା :
# ଏକ ମୁଗ୍ଧ ଅନୁଭବ

'ଭଜନ' ସାହିତ୍ୟ ଦୃଷ୍ଟିରୁ ଯେତିକି ଉଚ୍ଚାଙ୍ଗ, ସଂଗୀତ ଦୃଷ୍ଟିରୁ ସେତିକି ଆକର୍ଷଣୀୟ । ଈଶ୍ୱରଙ୍କର ନାମ, ମହିମା ତଥା ବିଭିନ୍ନ ଧର୍ମତତ୍ତ୍ୱର ଆଖ୍ୟାନରେ ଭଜନ ପାଲଟିଯାଏ ଅନୁଭୂତି ଓ ଅଂତରଙ୍ଗତାର ସମନ୍ୱିତ ସାହିତ୍ୟରୂପ, ଯାହା ପୁରୁଣା ହୁଏ ନାହିଁ ବରଂ ନିତ୍ୟନୂତନଭାବରେ କାଳର କପାଳରେ ମାନବୀୟ ଆକାଙ୍‌କ୍ଷାର ଚିହ୍ନ ପାଲଟିଯାଏ । କୌଣସି ସୃଷ୍ଟିର ମୂଲ୍ୟାୟନ କରିବା ସମୟରେ ସ୍ରଷ୍ଟାର ମନୋଜଗତ ଓ ତା'ର ପାରିପାର୍ଶ୍ୱିକ ଜଗତର ସଂପର୍କ କଥା ସ୍ୱତଃ ମନକୁ ଆସିଯାଏ; କିନ୍ତୁ କବିତା ବା ସଂଗୀତପାଇଁ ତା'ର ଶରୀର ଓ ଆତ୍ମାର ସମନ୍ୱିତ ରୂପକୁହିଁ ପ୍ରତୀକ୍ଷା କରିବାକୁ ହୁଏ । ବ୍ୟକ୍ତିଗତ ଭାବପ୍ରବଣତା ସମୂହର ଚିତ୍ତସ୍ପର୍ଶ କରିପାରିବା ଯେ ଉଚ୍ଚାଙ୍ଗ ସାହିତ୍ୟର ଲକ୍ଷଣ ଏହା ଯୁଗ ଯୁଗ ଧରି ସ୍ୱୀକୃତ ହୋଇଆସିଛି । ଭଜନ କ୍ଷେତ୍ରରେ ଏହି ଉକ୍ତିର ସାର୍ଥକତା ଲକ୍ଷ୍ୟ କରାଯାଇପାରେ । ଏହି ଭଜନ ଏକ ଚମତ୍କାର ଅନୁଭବ ପ୍ରଦାନ କରିବାରେ ସମର୍ଥ ଯାହା ସମସ୍ତ ଲୌକିକ ଆନନ୍ଦଠାରୁ ଶ୍ରେଷ୍ଠ । ଏଠାରେ ଭକ୍ତର ଅଭିମାନ, ଆଗ୍ରହ, ହାସ୍ୟ, ଅଶ୍ରୁ, ପୁଲକ, ଗ୍ଲାନି ତଥା କ୍ଷୋଭ ସବୁମିଶି ଏକାକାର ହୋଇଯାଏ । ଭଗବାନ୍ ପାଲଟିଯାଆନ୍ତି ଏକାନ୍ତ ଆତ୍ମୀୟ । ବ୍ୟକ୍ତିଗତ ସୁଖଦୁଃଖ କଥା ତାଙ୍କ ନିକଟରେ ଯେମିତି ପରିଷ୍କାରଭାବରେ ନିବେଦନ କରିହୁଏ, ବିଶ୍ୱର ଦୁଃଖଯାତନା ମୋଚନପାଇଁ ତାଙ୍କୁ ସେମିତି ଆନ୍ତରିକଭାବରେ ଜଣାଇ ଦିଆଯାଇପାରେ । ଏହି ସଂପର୍କର ପ୍ରଗାଢ଼ତା ଓ ଆନ୍ତରିକତା ଭିତରେ ବିଶ୍ୱ ବ୍ୟକ୍ତି ଏକୀଭୂତ ହୋଇଯାଆନ୍ତି । ଭାବାନୁଭୂତି ସମୂହ ବ୍ୟକ୍ତିଗତ ଲୌକିକତାରୁ ଊର୍ଦ୍ଧ୍ୱକୁ ଯାଇ ସାମୂହିକ ଜୀବନାନୁଭୂତିରେ ରୂପାନ୍ତରିତ ହୋଇଯାଆନ୍ତି । ସନ୍ଥକବି ଭୀମଭୋଇଙ୍କର ଭଜନାବଳୀ ଏହି ଦୃଷ୍ଟିରୁ ଅନନ୍ୟ । ନିଜ ସମୟର ସମସ୍ତ ବେଦନାବୋଧକୁ ସେ ପରମାତ୍ମାଙ୍କ ଉଦ୍ଦେଶ୍ୟରେ ବ୍ୟକ୍ତକରି ନିଜର ଅଜାଣତରେ ସେ ପାଲଟିଯାଇଛନ୍ତି ସମୟର ପ୍ରତିନିଧି । ତାଙ୍କର ଭଜନଗୁଡ଼ିକ ପାଲଟିଛି An act of communication ଅର୍ଥାତ୍ ଈଶ୍ୱରଙ୍କୁ ବିଶ୍ୱ ସଂପର୍କରେ କହିବାର ମାଧ୍ୟମ । ଏଠାରେ ଭୀମଭୋଇ ଭଜନ ସାହିତ୍ୟ ସଂପର୍କରେ ଆଲୋଚନା କରିବାବେଳେ ତାଙ୍କୁ ନିର୍ଦ୍ଦିଷ୍ଟ

ଧର୍ମମତର ଅନୁଗାମୀ ଭବନର ଅଭିହିତ କଲେ ତାଙ୍କର କବିପ୍ରତିଭା ପ୍ରତି ଉପଯୁକ୍ତ ମର୍ଯ୍ୟାଦା ଦେବା ସମ୍ଭବ ହେବନାହିଁ । କୌଣସି ଧର୍ମୀୟ ଅନୁଷ୍ଠାନରେ ସଂପୃକ୍ତ ହେବା ବ୍ୟକ୍ତିଗତ ବ୍ୟାପାର । କିନ୍ତୁ ବିଶ୍ୱର ମାନବସମାଜପାଇଁ ସହାନୁଭୂତିଶୀଳ ହେବା ଓ ନିଜର ପ୍ରାଣ ଦେଇ ଅନ୍ୟର ଦୁଃଖକୁ ଅନୁଭବ କରିବା ଏକ ସତ୍‌କବି ପକ୍ଷରେହିଁ ସମ୍ଭବ । ତଥାପି ତାଙ୍କର ଧର୍ମମତକୁ ଆଲୋଚନା ନକଲେ ଭୀମଭୋଇଙ୍କର ବୈଶିଷ୍ଟ୍ୟ ଆକଳନ କରିବା ସମ୍ଭବନୁହେଁ । ଭାରତୀୟ ଜନମାନସରେ ନବଜାଗରଣ (Renaissance)ର ଧାରା କ୍ରିୟାଶୀଳ ହୋଇଥିବା ସମୟରେ ମହିମା ଧର୍ମର ଉଦାର ଦର୍ଶନକୁ ନେଇ ସେ ଓଡ଼ିଶାର ଜନମାନସରେ ନିଜପାଇଁ ତଥା ନିଜର ଧର୍ମ ପାଇଁ ଏକ ଆତ୍ମୀୟତାପୂର୍ଣ୍ଣ ପରିବେଶ ସୃଷ୍ଟି କରିପାରିଥିଲେ । ଭୀମଭୋଇ ମହିମା ଧର୍ମର ପ୍ରଚାରକ । ମହିମା ଧର୍ମ ଉନବିଂଶ ଶତକର ଉତ୍ତରାର୍ଦ୍ଧରେ ଖୁବ୍ ଶକ୍ତିଶାଳୀ ଥିଲା ଓ ସାଧାରଣ ମଣିଷମାନଙ୍କୁ ଏକେଶ୍ୱରବାଦର ଉଦାର ଭାବନାରେ ଦୀକ୍ଷିତ କରିବାରେ ସକ୍ଷମ ହୋଇଥିଲା । ଏହା ଏକ ରହସ୍ୟାତ୍ମକ ଧର୍ମ; ଯହିଁରେ ବିଶ୍ୱାସ ଓ ଆଚରଣର ସମନ୍ୱୟ ସାଧିତ ହୋଇପାରିଛି । ଯୁଗ ଯୁଗ ଧରି ମହାତ୍ମା ସନ୍ଥମାନେ ଆବର୍ତ୍ତିତ ହୋଇ ପୃଥିବୀବାସୀଙ୍କୁ ଧର୍ମର ମାର୍ଗ ଦେଖାନ୍ତି । ସେମାନଙ୍କର ତତ୍ତ୍ୱ ବ୍ୟାଖ୍ୟାନ ତଥା ଆଚରଣ ଶୁଦ୍ଧିଦ୍ୱାରା ସାଧାରଣ ମାନବ ଅନୁପ୍ରାଣିତ ହୁଅନ୍ତି ଓ ଅନୁରୂପଭାବରେ ନିଜର ଜୀବନକୁ ଗଢ଼ିବାର ପ୍ରୟାସ କରନ୍ତି ।

ଭକ୍ତ ଓ ସନ୍ଥମାନଙ୍କ ସଂପର୍କରେ ଆଲୋଚନା କରିବାବେଳେ ଏତିକି ମନେରଖିବାକୁ ହେବ ଯେ ସବୁ ସନ୍ଥ ଭକ୍ତ ଶ୍ରେଣୀଭୁକ୍ତ ହୋଇପାରନ୍ତି । ମାତ୍ର ସବୁ ଭକ୍ତ ସନ୍ଥ ନୁହନ୍ତି । ଧର୍ମସନ୍ଦେଶ ମଧ୍ୟରେ ଭକ୍ତ ଭଗବାନ୍ ତଥା ଅନୁଷ୍ଠାନର ଗୁରୁତ୍ୱ, ଏକୀଭୂତ ହୋଇଥାଏ । ସେମାନେ ଆଧ୍ୟାତ୍ମିକ ଧାରଣା ନେଇ ଅନ୍ୟକୁ ପ୍ରଭାବିତ କରନ୍ତି । ନିଜର ସିଦ୍ଧି ଓ ସମୃଦ୍ଧିପାଇଁ ଧର୍ମକୁ ଉପଯୋଗ କରନ୍ତି । ମାତ୍ର ସନ୍ଥମାନେ ଭକ୍ତଙ୍କଠାରୁ ଭିନ୍ନ ଏକ ସ୍ୱତନ୍ତ୍ର ଚିନ୍ତାଧାରାରେ ବଞ୍ଚୁଥିବା ବିବେକୀ ବ୍ୟକ୍ତିବିଶେଷ । ଆଲୋଚକ ଚିତ୍ତରଂଜନ ଦାସଙ୍କ ଭାଷାରେ, "ସନ୍ଥତା ଜୀବନର ପ୍ରତ୍ୟେକ କ୍ଷେତ୍ର ଏବଂ ପ୍ରତ୍ୟେକ ଭାଗକୁହିଁ ଆପଣାର ଆଧ୍ୟାତ୍ମିକ ସମଗ୍ରାକାଙ୍କ୍ଷାଟିଦ୍ୱାରା ଜୁଆଇ ରଖିବାକୁ ଇଚ୍ଛାକରେ । ଆପଣା ଭିତରେ ପ୍ରବେଶ କରିବ ବୋଲି ସିଏ ତଥାପି ବ୍ୟବହାରକୁ ବର୍ଜନ କରି ପଳାଏନାହିଁ ଅଥବା ବାହାର ପୃଥିବୀରେ ଆପଣାକୁ କ୍ରିୟାଶୀଳ କରିରଖିବା ସକାଶେ ତାଙ୍କୁ କୌଣସି ପ୍ରକାରେ ଆପଣାଠାରୁ ଖିଅଛିଡ଼ାଇ ବାହାରକୁ ଆସିବାକୁ ପଡ଼େନାହିଁ ।" (ସନ୍ଥ ଭକ୍ତ ସାହିତ୍ୟ– ଚିତ୍ତରଂଜନ ଦାସ – ପୃ.୩୧) ଏହି ସନ୍ଥମାନେ ସର୍ବଦା ନିଜଭିତରେ ଏକ ଦିବ୍ୟ ପ୍ରେରଣା ଅନୁଭବ କରନ୍ତି ଓ ସର୍ବଦା ଶ୍ରଦ୍ଧାଳୁ ହୋଇ ବଞ୍ଚିରହନ୍ତି । ଜୀବନ ସହିତ ଜଗତକୁ ଯୋଡୁଥିବା ସୂତ୍ରଟିକୁ

ଆତ୍ମୀୟତାରେ ଘଷିମାଜି ତହିଁରୁ ସୁସ୍ୱର ସୃଷ୍ଟି କରିବାର କ୍ଷମତା ସେମାନଙ୍କର ଥାଏ । ସେମାନେ ଏକ ଉତ୍ସର୍ଗୀକୃତ ସତ୍ୟ ପାଳଟିଯାଆନ୍ତି ଓ ନିଜକୁ ବିଶ୍ୱ ହିତସାଧନର ନିମିତ୍ତମାତ୍ର ବୋଲି ବିଚାର କରିଥାଆନ୍ତି । ସେହି ସନ୍ଥପୁରୁଷମାନେ ସର୍ବଦା ନିଜଭିତରେ ଏକ ବ୍ୟାକୁଳତାକୁ ଜୀବନ୍ତ ରଖିଥାଆନ୍ତି । ଏହି ବ୍ୟାକୁଳତା ହେଉଛି ପୃଥିବୀକୁ ନିଜ ବାଗରେ ସୁନ୍ଦର କରି ଦେଖିବାର ଆକାଙ୍‌କ୍ଷା । ସେହି ଆକାଙ୍‌କ୍ଷା ପୂର୍ତ୍ତି ହେବାପାଇଁ ସେମାନେ ପ୍ରୟାସ କରିଥାଆନ୍ତି, ନହୋଇପାରିଲେ ସେମାନେ କ୍ରୋଧିତ ହୁଅନ୍ତି, ଅପମାନିତ ହୁଅନ୍ତି । ସେମାନଙ୍କଭିତରେ ଥିବା ଦିବ୍ୟସତ୍ତାଟି କଷ୍ଟପାଏ ।

ଏହି ସନ୍ଥ ଶବ୍ଦ 'ସତ୍'ରୁ ନିଷ୍ପନ୍ନ ବୋଲି କୁହାଯାଇଥାଏ । ସେମାନେ ଶାନ୍ତ, ଉଦାରଚିତ୍ତ ସମଦର୍ଶୀ ସର୍ବଦର୍ଶୀ ତଥା କ୍ରାନ୍ତିଦର୍ଶୀ । ସେମାନଙ୍କୁ ନିର୍ଗୁଣ ଭକ୍ତିମାର୍ଗର ସାଧକ ବୋଲି କୁହାଯାଏ । ଏହି ସାଧକ 'ସ୍ୱାନୁଭୂତି' ନେଇ ସନ୍ଥରେ ରୂପାନ୍ତରିତ ହୋଇଯାଏ । ତା'ର ଖୋଜିବା ଶେଷ ହୁଏ ଓ ତା'ର ଆରାଧ୍ୟ ସହିତ ଅନୁଭୂତି ସ୍ୱରରେ ପରିଚିତ ମଧ୍ୟ ହୋଇଯାଏ । ତେଣୁ ସନ୍ଥପୁରୁଷଙ୍କ ଜୀବନ ପାଲଟିଯାଏ ବିଶ୍ୱହିତ ପାଇଁ ଉତ୍ସର୍ଗୀକୃତ ଜୀବନ, ଯାହା ବ୍ୟକ୍ତିର ହିତଠାରୁ ଊର୍ଦ୍ଧ୍ୱକୁ ଯାଇ ଭଗବତ୍ ଆରାଧନା ଆଡ଼କୁ ଆକର୍ଷିତ ହୋଇ ରହିଥାଏ । ପୃଥିବୀ ଇତିହାସରେ ଯୁଗ ପରେ ଯୁଗ ଅନେକ ସନ୍ଥପୁରୁଷ ଆବିର୍ଭୂତ ହୋଇଛନ୍ତି । ସେମାନେ ନିଜ ସମୟର ଉଦାହରଣ ପାଲଟିଯିବା ସହିତ ଭବିଷ୍ୟତପାଇଁ ଆଶା ଆନନ୍ଦର ଉତ୍ସ ପାଲଟିଛନ୍ତି ।

ଭୀମଭୋଇଙ୍କ ସମୟ ହେଉଛି ୧୮୫୫ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧ । ଏହି ସମୟରେ ଖ୍ରୀଷ୍ଟିଆନ ଶାସକ ଓ ମିଶନାରୀମାନଙ୍କର ପ୍ରାବଲ୍ୟ ବେଶ୍ ଅନୁଭୂତ ହେଉଥିଲା । ପୁରୀ ଓ ଉପକୂଳବର୍ତ୍ତୀ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରଭାବ ବଳବତ୍ତର ରହିଥିଲା । କଲିକତା ସହିତ ଓଡ଼ିଶାର ରାଜନୀତିକ ତଥା ସାଂସ୍କୃତିକ ସଂପର୍କ ଥିବାରୁ ବ୍ରାହ୍ମଧର୍ମର ପ୍ରଭାବ ମଧ୍ୟ ଓଡ଼ିଶାରେ ପଡୁଥିଲା । ଖ୍ରୀଷ୍ଟିଆନ ଓ ବ୍ରାହ୍ମ ଉଭୟ ଧର୍ମ ଥିଲା ଏକେଶ୍ୱରବାଦର ଧର୍ମ; ଯାହା ପ୍ରାଚୀନ ବୈଦିକ ଧର୍ମ ସହିତ ସାମଞ୍ଜସ୍ୟ ରକ୍ଷା କରୁଥିଲା । ତେଣୁ ଏକପକ୍ଷରେ ଖ୍ରୀଷ୍ଟିଆନ ଧର୍ମର ପ୍ରବଳ ଧକ୍‌କା ଅପରପକ୍ଷରେ ବ୍ରାହ୍ମ ଧର୍ମର ଔଜ୍ଜ୍ୱଲ୍ୟ ଉଭୟ ଓଡ଼ିଶାର ଜନମାନସକୁ ବିସ୍ମିତ ବିମୂଢ଼ କରିଦେଇଥିଲା । ଅନେକ ବିଶିଷ୍ଟ ଚିନ୍ତାଶୀଳ କବି, ସଂସ୍କାରକମାନେ, ବ୍ରାହ୍ମଧର୍ମ ଗ୍ରହଣ କରି ଅନୁରୂପଭାବର କାବ୍ୟକବିତାମାନ ରଚନା କରିଥିଲେ । ମାତ୍ର ଏହି ରଚନାବଳୀ ସାଧାରଣ ନିରକ୍ଷର ଜନତାର ପ୍ରାଣ ସ୍ପର୍ଶ କରିପାରୁନଥିଲା । ଏହି ସମୟରେ ଭୀମଭୋଇଙ୍କର ଆବିର୍ଭାବ ସତେଯେପରି ସମୟର ଆବଶ୍ୟକତାହିଁ ଥିଲା । ଓଡ଼ିଶାର ଗ୍ରାମ୍ୟ ଜନସାଧାରଣଙ୍କୁ ମହିମା ଧର୍ମରେ ଦୀକ୍ଷିତ କରି ସେ ଏକ ଉଜ୍ଜ୍ୱଳ

ଦିଗନ୍ତର ସୂଚନା ଦେଇଥିଲେ । ଯୁଗାନୁଶୀଳ ହେବାର ପ୍ରୟାସରେ ଉଦାର ମାନବିକତାର ଜୟଗାନ କରି କବି ଭୀମଭୋଇ ନିଜର ପାରଦର୍ଶୀତାର ପ୍ରମାଣ ପ୍ରସ୍ତୁତ କରିଥିଲେ । କେତେକ ଆଲୋଚକଙ୍କ ମତରେ, ମହିମା ଧର୍ମ ସହଜିଆ ଓ ନାଥଧର୍ମର ମିଶ୍ରଣ । କିନ୍ତୁ ଭୀମଭୋଇଙ୍କ ରଚନାରେ ବୈଷ୍ଣବୀୟ ସ୍ୱାନୁଭୂତିର ବର୍ଣ୍ଣନା ଚମତ୍କାର ଧର୍ମୀୟ ଉଦାରତାରେ ବିଶ୍ୱାସୀ ଭୀମ ଚକ୍ଷୁହୀନ ଥିଲେ ବୋଲି କୁହାଯାଏ । କେତେ ଆଲୋଚକ ଯୁକ୍ତି ସହିତ ପ୍ରମାଣ ଉପସ୍ଥାପନ କରି ସେ ଚକ୍ଷୁଷ୍ମାନ ଥିଲେ ବୋଲି କହନ୍ତି, କିନ୍ତୁ ତାଙ୍କ ଲେଖାକାର ଥିଲେ ହରି ପଣ୍ଡା ଓ ବାସୁଦେବ ପଣ୍ଡା ନାମକ ଦୁଇଜଣ ବ୍ରାହ୍ମଣ । ଅପାଣିପାଦ ଅନାଦିବ୍ରହ୍ମଙ୍କୁ ଉପାସନା କରିବାକୁ ଉପଦେଶ ଦେଉଥିବା ଭୀମଙ୍କ ଭଜନରେ ଜଗନ୍ନାଥ ଭଜନର ସମନ୍ୱୟ ଦେଖିବାକୁ ମିଳେ । ସେ ବୈଷ୍ଣବ ଧର୍ମର ଭକ୍ତିଭାବନା ଷଡ଼ଚକ୍ରସାଧନ, ଗୁରୁବାଦ, ନାମକୀର୍ତ୍ତନ, ଜ୍ଞାନ କର୍ମ ଓ ଭକ୍ତିରେ ବିଶ୍ୱାସ, ଶାସ୍ତ୍ରଜ୍ଞାନରେ ଦକ୍ଷତା, ଆତ୍ମସମର୍ପଣର ଦିବ୍ୟ ଭାବନା ଭଳି ଅନେକ ବୈଶିଷ୍ଟ୍ୟକୁ ଆତ୍ମସ୍ଥ କରିଛନ୍ତି । ଭୀମଭୋଇଙ୍କର ଆବିର୍ଭାବ କିପରି ସମୟର ଆବଶ୍ୟକତା ଥିଲା ସେ ସଂପର୍କରେ ଆଲୋଚକ ଚିତ୍ତରଂଜନ ଦାସ କହନ୍ତି– "ଭାରତୀୟ ଧର୍ମଭିତରେ ଆବହମାନକାଳରୁ ପ୍ରତିଷ୍ଠିତ ଶାସ୍ତ୍ରବାଦ ଏବଂ ରକ୍ଷଣଶୀଳତା ବିରୁଦ୍ଧରେ ଯେଉଁ ସନାତନ ପ୍ରତିବାଦ ରହିଆସିଥିଲା ଓ ଧର୍ମର ବାରମିଶା ଅରଣ୍ୟ ଭିତରୁ ଜୀବନଗ୍ରାହୀ ଅସଲ ଅଧ୍ୟାୟଗୁଡ଼ିକ ଅଲଗା କରି ଦେଖାଇ ଦେବାରେ ଯାହା ଯୁଗେ ଯୁଗେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଥିଲା, ସେହି ପ୍ରତିବାଦଟି ସହିତ ଏହି ନୂତନ ସ୍ୱୀକାରଟି ମିଶି ଓଡ଼ିଶାରେ ଊନବିଂଶ ଶତାବ୍ଦୀରେ ମହିମା ଧର୍ମକୁ ଜନ୍ମ ଦେଇଥିଲା ।" (ସନ୍ଥକବି ସାହିତ୍ୟ– ଚିତ୍ତରଂଜନ ଦାସ – ପୃ. ୫୫୬-୫୫୭)

## ଗୁରୁପାଦ ତଳେ ଗତି ମୁକତି :

ଗୁରୁସେବା ଓ ଗୁରୁ ଆଜ୍ଞା ପାଳନ ମହିମାଧର୍ମର ଲକ୍ଷ୍ୟ । ଏହି ଗୁରୁ ପୁଣି ସଦ୍‌ଗୁରୁ । ସଦ୍‌ଗୁରୁ ଛାଟ ବାଜିଲେ ଶିଷ୍ୟପାଇଁ ସବୁବାଟ ଫିଟିଯାଏ । ଦୂବ ଦାରୁରେ ପରିଣତ ହୋଇଯାଏ । ଗୁରୁ ଆଶୀର୍ବାଦ ମିଳିଗଲେ ତେଣିକି ଆଉ କିଛି ଅପ୍ରାପ୍ତ ରହେ ନାହିଁ । ବ୍ରହ୍ମଜ୍ଞାନ ମଧ୍ୟ ସହଜ ମନେହୁଏ । ଜଣେ ପଣ୍ଡିତ ନାନା ଶାସ୍ତ୍ର ଅଧ୍ୟୟନରେ ପଟୁ ବା ବୁଦ୍ଧିମାନ ହୋଇପାରେ । ମାତ୍ର ଗୁରୁସେବା ବ୍ୟତୀତ ତା'ର ସକଳ ଜ୍ଞାନ ଅକାରଣ ହୋଇଯାଏ । ଭୀମଭୋଇଙ୍କ ଭାଷାରେ–

"ଗୁରୁପାଦେ ସେବାକର ନାମ ବ୍ରହ୍ମରେ ବିହର
ଅଛି ଯେବେ ଭାଗ୍ୟ ଗୋ, ଦିଆଯିବ ଭାଗ

କୋଟି ଜନ୍ମ ପାପଯିବ ହେତୁ ଚେତନ ବୁଡ଼ିବ
ଚିହ୍ନିପାରିବ ଯେମନ୍ତେ ସ୍ୱଦେହେ ଗୋ ।''

ଅନାଦି ଅନନ୍ତ ପରମେଶ୍ୱର ଭକ୍ତର ଆତୁର ଡାକ ଫଳରେ ଭାଗଗ୍ରାହୀ ପାଲଟି ଯାଆନ୍ତି; କିନ୍ତୁ ସେହି ଭାବଗ୍ରାହୀ କେବଳ ଗୁରୁସେବା କଲେହିଁ ପ୍ରସନ୍ନ ହୁଅନ୍ତି । ଗୁରୁ ସେବାର ପରଂପରା ପ୍ରାଚ୍ୟ ଭୂଖଣ୍ଡରେ ଚିରଦିନ ଉର୍ଜସ୍ୱଳ ରହିଛି । ମହିମା ଗୋସେଇଁଙ୍କର ପରମ ସେବକ ଭୀମଭୋଇଙ୍କପାଇଁ ଗୁରୁହିଁ ସବୁ ରହି – ଭଣ୍ଡାରର ଚାବିକାଠି ଧରିବସିଛନ୍ତି । ସେହି ଗୁରୁଙ୍କ ବଚନରେ ମାୟା ମୋହ ତୁଟିଯାଏ । ହୃଦୟ ଆକାଶ ନିର୍ମଳ ହୁଏ । ତାଙ୍କର ମୁଖରେହିଁ ସକଳ ସଦ୍‌ଜ୍ଞାନ ବିଦ୍ୟମାନ । ସେହି ଗୁରୁ ସକଳ ଦୁଃଖ ମୋଚନ କରିପାରନ୍ତି । ତାଙ୍କ ଆଜ୍ଞାରେ ଶିଷ୍ୟ ବ୍ରହ୍ମ ଦର୍ଶନ କରିପାରେ । ସକଳ ସଂଶୟ ଅପସାରଣ କରିବାପାଇଁ ଏହି ଗୁରୁହିଁ ସମର୍ଥ । ବ୍ରହ୍ମଙ୍କର ରୂପ ନାହିଁ । ତେଣୁ ସେ ଅରୂପ; କିନ୍ତୁ ଗୁରୁଙ୍କର ରୂପ ଅଛି । ତାଙ୍କୁ ଦେଖି ହୁଏ । ମନକଥା କହିହୁଏ । ବ୍ରହ୍ମ ଗୁରୁ ହେଲେ, ଗୁରୁ ହେଉଛନ୍ତି ସେହି ବ୍ରହ୍ମଙ୍କ ଶିଷ୍ୟ । ସେ ଅନ୍ତର୍ଯ୍ୟାମୀ ଭୀମଭୋଇଙ୍କ ଭାଷାରେ–

''ଗୁରୁପାଦପଦ୍ମ ଜାଣ ସେବାକରେ ଯେଉଁ ଜନ
ଚେତାଥିଲେ ନାମ ନୁହେଁ ମୁରୁଛି ଗୋ
ଗୁରୁ ଦେଲେ ବତାଇ ଏହା ମୁଁ ଜାଣନ୍ତି କାହିଁ
ଅମନ ମଳିରୁ ଉଦେ ହୋଇଛି ଗୋ ।''

ଗୁରୁ ଆଶୀର୍ବାଦ ସହିତ ସମଗ୍ର ବିଶ୍ୱ ପ୍ରତି ସମ୍ବେଦନଶୀଳତା ଭୀମଭୋଇଙ୍କ କବିତ୍ୱକୁ ଏକ ସ୍ୱତନ୍ତ୍ର ଗାମ୍ଭୀର୍ଯ୍ୟ ପ୍ରଦାନ କରିଛି । ତାଙ୍କ ଗୁରୁ ପାଲଟିଛନ୍ତି ଜଗଦ୍‌ଗୁରୁ ଓ ସେ ସମଗ୍ର ବିଶ୍ୱର ଦୁଃଖ ସୁଖକୁ ନିଜର ଅନୁଭବ ଭିତରକୁ ଆଣିପାରିଛନ୍ତି । ମନୁଷ୍ୟ ତଥା ସମଗ୍ର ଜୀବଜଗତକୁ ଭଲପାଉଛନ୍ତି । ଐଶ୍ୱର୍ଯ୍ୟଭିତରେ ପାଲଟିଯାଇଛନ୍ତି ମାନବାତ୍ମାର ପ୍ରତିନିଧି ।

## ନାମ ବହିଆସୁଅଛି ଅଣ ଅକ୍ଷରୁ :

ନାମକୀର୍ତ୍ତନହିଁ କଳିଯୁଗରେ ଭକ୍ତର ସର୍ବୋତ୍ତମ ସାଧନ – ଏହି ନାମ ଭଜନ ତଥା କୀର୍ତ୍ତନ କଲେ ଭକ୍ତ ନିଜର ଉନ୍ନତି କରିବା ସହିତ ନିଜ ପରିବେଶକୁ ମଧ୍ୟ ପରିଚ୍ଛନ୍ନ, ରୁଚିପୂର୍ଣ୍ଣ ତଥା ସରସ ସୁନ୍ଦର କରିପାରେ । ଭୀମଭୋଇଙ୍କ ମତରେ, ସେ ନା, ''ନିରାମିଷ ନିଅଇଣ୍ଟା, ପିଉଥିଲେ ଲାଗେ ମିଠା, ଅଦେଖା ଅନାମେ ସ୍ୱାଦ ଏମନ୍ତ ସେ ସୁଧାଧାର'' ଅର୍ଥାତ୍ ଏହି ନାମ ସକଳ ରସରୁ ଆହୁରି ରସାଳ । ନାମବ୍ରହ୍ମ ଅବ୍ୟୟ ଅକ୍ଷୟ । ସେ ସକଳ କଳ୍ପନାରୁ ଊର୍ଦ୍ଧ୍ୱତର । ଏହି ଜୀବ ଯଦି କଳି କଳୁଷରୁ ଉଦ୍ଧାର

ପାଇବାକୁ ଚାହିଁବ ତେବେ ସେ ନାମକୁ ଭରସା କରିପାରେ । ଯେହେତୁ ତାଙ୍କର ଉପାସ୍ୟ ଦେବତା ମହିମାଗୋସ୍ୱାମୀ ଅଲେଖ, ଅରୂପ, ଅବ୍ୟକ୍ତ, ଶୂନ୍ୟପୁରୁଷ; ତାଙ୍କୁ ପାଇବାପାଇଁ କେବଳ ନାମ ଭଜନହିଁ ଆବଶ୍ୟକ, ତେଣୁ ଜୀବ ଯଦି ମୋକ୍ଷକାମନା କରିବ ତେବେ କେବଳ ଅଣଅକ୍ଷରରୁ ବହିଆସୁଥିବା ନାମର ଧାରକୁ ପାନ କରିବାପାଇଁ ତାକୁ ଏକାଗ୍ର ଚିତ୍ତ ହେବାକୁ ପଡ଼ିବ, ଯାହାର ରୂପ ନାହିଁ ତାକୁ ଭଜନ କରିବାକୁ ହେଲେ ନାମହିଁ ଏକମାତ୍ର ଆଶ୍ରା । ବାରମ୍ବାର ନାମର ଗୁରୁତ୍ୱ ବ୍ୟାଖ୍ୟା କରିଥିବା କବି କହନ୍ତି—

"ନାମରେ ପବିତ୍ର ହୋଇଲେ ଦିଗ
ପ୍ରକାଶିତ ତହୁଁ ସକଳ ଶୁଭ ଗୋ
x x x x
ନାମଭଜ ରାତ୍ରଦିନେ-ସତ୍ୟ ସୁକୃତ ପ୍ରମାଣେ
ଜଗତ ଭଗତଜନେ ଛାଡ଼ି ମନୁ ଚିନ୍ତା ହେ ।"

କେବେ ସେ ନାମ ପ୍ରଭୁଙ୍କର ନାମ ତ କେବେ ଗୁରୁଙ୍କର ନାମ । ଏ ନାମ ପୁଣି ଗୁରୁ ଆଜ୍ଞାରେ ରୂପାନ୍ତରିତ ହୋଇ ଆହୁରି ଗୁରୁତ୍ୱପୂର୍ଣ୍ଣ ହୋଇଯାଏ । ଆର୍ତ୍ତରେ ଡାକିଲେ ଯମ ମଧ୍ୟ ଦଣ୍ଡ ଦେବାକୁ ଭୟକରେ । ଆହାର ଭକ୍ଷଣ କଲେ ପେଟପୂରେ; କିନ୍ତୁ ନାମ ଭଜନ କଲେ ଆତ୍ମାବୋଧହୁଏ ଓ ଗତି ମୁକ୍ତି ମିଳିଥାଏ । ପ୍ରଥମେ ନାମ ଶ୍ରବଣ କରିବ ତା'ପରେ ପଠନ କରିବ । ପାଠକଲା ପରେ ବୁଝିବ ଓ ଭେଦକରିବ, ବିବେକ ଲଗାଇବ, ତେଜିବ, ଧରିବ, ଚିହ୍ନିବ, ବାନ୍ଧିବ, ଜାଗ୍ରତରେ ଧରିବ ଓ ତହିଁରେ ମଜ୍ଜିଯିବ ।

ଏହି ନାମରେ ମହିମା ଗାନ କରି କବି ସମଗ୍ର ମାନବ ସମାଜର ଉଦ୍ଧାର କାମନା କରିଛନ୍ତି । ନାମ ଭଜନ ଚିତ୍ତକୁ ଏକାଗ୍ର କରେ । ସମସ୍ତ ସାଂସାରିକ କଳୁଷରୁ ମୁକ୍ତି ଦେବାପାଇଁ ଏକା ନାମ ଭଜନ ଓ ଶ୍ରବଣହିଁ ସମାନ ।

## ଅନାଦି ମଣ୍ଡଳରୁ ସର୍ବେ ସଞ୍ଚରି :

ଏହି ନାମ ଅନାଦି ମଣ୍ଡଳରୁ ସଂଚରି ଆସୁଛି । ଏହି ସଂଚରଣର ଦିଗବାରିବା ପାଇଁ ଗୁରୁକୃପାହିଁ ଆବଶ୍ୟକ । ଭୀମଭୋଇ ମହିମା ଗୋସେଇଁଙ୍କ ପ୍ରବୃଦ୍ଧ ଅବତାର ବୋଲି କହିଛନ୍ତି । ତାଙ୍କର ରୂପରେଖ ନାହିଁ । ସେହି ଅରୂପାନନ୍ଦ ସ୍ୱାମୀଙ୍କ ଆଜ୍ଞାରେ ଠୁଳ ଶୂନ୍ୟରୁ ଆକାଶ ଜାତ ହୋଇଛି । ଆକାଶରୁ ଅଣଚାଶ ପାଳ, ତହିଁରୁ ଅଗ୍ନି, ଅଗ୍ନିରୁ ଜଳ, ଜଳରୁ ଜ୍ୟୋତି ଓ ଜ୍ୟୋତିରୂପରୁ ଭୂତ ଭବିଷ୍ୟତ ଜନ୍ମ ନେଇଛି । ଭବିଷ୍ୟ କାମନାରୁ କଳ୍ପନା ଓ କଳ୍ପନାରୁ ବସୁନ୍ଧରାର ଜନ୍ମ ସଂଭବ ହୋଇଛି ।

ଶ୍ୱେତାଶ୍ୱେତର ଉପନିଷଦରେ ଏହିଁ ଅନାଦି ପରମ ବ୍ରହ୍ମଙ୍କର ସ୍ୱରୂପ ଏହିପରି ବ୍ୟାଖ୍ୟା କରାଯାଇଛି—

''ଏକୋ ଦେବଃ ସର୍ବଭୂତେଷୁ ଗୂଢ଼ଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା
କର୍ମାଧକ୍ଷଃ ସର୍ବଭୂତାଧିବାସଃ ସାକ୍ଷୀ ଚେତାଃ କେବଳୋ ନିର୍ଗୁଣଶ୍ଚ ।''

ସେ ସର୍ବବ୍ୟାପୀ ଓ ସମସ୍ତଙ୍କର ଅନ୍ତରାତ୍ମାରେ ତାଙ୍କର ଅଧିବାସ, ସେ ହିଁ ଜୀବକୁ ଚୈତନ୍ୟ ପ୍ରଦାନ କରନ୍ତି । ଏହି ବ୍ରହ୍ମଙ୍କୁ ଭୀମଭୋଇ, ସ୍ୱାମୀ, ଶୂନ୍ୟ, ଅଲେଖ, ଗୁରୁ, ଅନାୟତାହୋରୀ, ଅରୂପାନନ୍ଦ, ପରମେଶ୍ୱର, ଅବ୍ୟକ୍ତ, ଅନାମ, ଅରୂପ, ଅନିର୍ଦ୍ଦେଶ୍ୟଭାବରେ ସମ୍ବୋଧନ କରିଛନ୍ତି, ସେ ହିଁ ଆନନ୍ଦଘନରୂପ ଭୀମଭୋଇଙ୍କ ଶବ୍ଦରେ ଏହି ବ୍ରହ୍ମଙ୍କର ସ୍ୱରୂପ— ଅଣାକାର ଅରୂପ ବ୍ରହ୍ମ ମୂରତି, ଅରୂପ ପୁରୁଷ ରୂପବନ୍ତ ହୋଇଲେ, ଅନାମିକା ପୁରୁଷ ସେ ନାମକୁ ବହି, ଅଚିହ୍ନା ପୁରୁଷ ସେ ଯେ ଚିହ୍ନଟ ଦେଲେ । ଅକଳ୍ପନା ପୁରୁଷ ସେ କଳ୍ପନା କଲେ, ପୂର୍ଣ୍ଣାନନ୍ଦ ପୂର୍ଣ୍ଣବ୍ରହ୍ମ ଅଟନ୍ତି ସେହି, ସଦାନନ୍ଦ ସଦାସର୍ବଦାରେ ଅଛନ୍ତି । ତାଙ୍କର କ୍ଷୟ ବୃଦ୍ଧି ନାହିଁ, ଏହିଭଳି ସହସ୍ରାଧିକ ପଦରେ ଆମେ ମହିମାଧର୍ମରେ ଈଶ୍ୱରଙ୍କ ସ୍ୱରୂପ ସଂପର୍କୀୟ ଧାରଣାର ଉଦାହରଣ ପାଇପାରିବା । ସେହି ବ୍ରହ୍ମପିଣ୍ଡ ମଧରେ ରହିଛନ୍ତି । ତାଙ୍କର ଆକାରନାହିଁ ମାତ୍ର ବିବେକବନ୍ତ ପୁରୁଷ ନିଜ ଆଖି ମଧରେ ତାଙ୍କ ସ୍ୱରୂପ ଦର୍ଶନ କରିପାରେ । କେବେ ସେ ନାରୀ ବା କେବେ ପୁରୁଷ । କେବେ ବୃଦ୍ଧ ତ କେବେ ବାଳକ ।

''ରୂପମଧେ ଅରୂପର ଅଛ ବ୍ରହ୍ମସ୍ୱରୂପ
ପାର ଯେବେ ଚିହ୍ନି, ଘଟେ ଧର ଆଣି
ଅଲେଖ ଅବଧୂତ ସତ୍ୟବାଦୀ ।''

କିନ୍ତୁ ଏହି ନିର୍ଗୁଣ ବ୍ରହ୍ମ ଉପାସକ କବି ଅନେକ ସମୟରେ ସଗୁଣର ଉପାସନା ମଧ କରିଛନ୍ତି । ଅର୍ଥାତ ଅରୂପାନନ୍ଦଙ୍କ ବର୍ଣ୍ଣନା କାଳରେ ଶ୍ରୀଜଗନ୍ନାଥଙ୍କ ବନ୍ଦନା କରିବାକୁ ଆଗେଇଆସିଛନ୍ତି ।

**ଉଠ ସ୍ୱାମୀ ବ୍ରହ୍ମାଣ୍ଡ ଠାକୁର ହେ, ବେଳ ହେଉଛି ଉଚ୍ଛୁର :**

ଏଠାରେ ବ୍ରାହ୍ମାଣ୍ଡ ଠାକୁର ପାଲଟିଛନ୍ତି ନୀଳାଚଳ ନିବାସୀ ଜଗନ୍ନାଥ । ପ୍ରତ୍ୟହ ପ୍ରାତଃ ଅବକାଶ କାଳରେ ତାଙ୍କରହିଁ ମୁହଁ ଧୋଇ ଦିଆଯାଏ । ଭକ୍ତମାନେ ରାତ୍ରି କାଳରୁ ସ୍ନାନ କରି, ବ୍ରାହ୍ମଣମାନେ ଗାୟତ୍ରୀ ପାଠ କରି ପ୍ରଭୁଙ୍କର ଦୁଆର ଖୋଲିବାପାଇଁ ଅପେକ୍ଷା କରିଛନ୍ତି । ସମସ୍ତେ କାକୁସ୍ଥରେ ହାତଯୋଡ଼ି ଦୁଆରେ ଉଭା ହୋଇଛନ୍ତି । ବିଭିନ୍ନ ଦ୍ୱାରରେ ବିଭିନ୍ନ ପାରିଷଦବର୍ଗ ବେଢ଼ି ରହିଛନ୍ତି । ଏଭଳି ଗହଳି

ହୋଇଛି ଯେ ବାଟଘାଟ ମିଳୁନାହିଁ। ଗୁହାରିଆମାନେ ନିଜ ନିଜ ଦୋଷ ଜଣାଇ କ୍ଷମାଭିକ୍ଷା କରୁଛନ୍ତି। ପୁଣି ଏହି ଦେହଭିତରେ ଶ୍ରୀମନ୍ଦିରର ଅବସ୍ଥିତି ଅନୁଭବ କରିପାରିଲେ—

"ଏ ଦେହରେ ସବୁ ଅଛି, ବେଦ ଭୁଲାଇ ମାରୁଛି
କିଅର୍ଥେ ନ ଯାଅ କ୍ଷେତ୍ର ଓଡ଼ିଶା ଗୋ।"

ଅର୍ଥାତ୍ ଓଡ଼ିଶା କ୍ଷେତ୍ରରେ ଥିବା ପୁରୁଷୋତ୍ତମଙ୍କୁ ଦେଖିବାକୁ ନଗଲେ ମଧ୍ୟ ନିଜ ଅନ୍ତରଭିତରେ ଅନୁଭବ କରିହେବ।

"ସ୍ୱାମୀ ବୋଲିବାର ଯେବଣ ବିଭୂତି,
ଛପନକୋଟିର ଅଟନ୍ତି ଯେ ପତି
ସେ ଜଗତନାଥ ସମସ୍ତଙ୍କ ହିତ,
ଭକତଙ୍କ ବନ୍ଧୁ ସେହି ଇଷ୍ଟ ମିତ୍ର
ଅବତାର ହୋଇ ଅଣରୂପରୁ।"

ଭୀମଭୋଇଙ୍କ ମତାନୁସାରେ କଳିଯୁଗରେ ନାରାୟଣ ବୁଦ୍ଧ ଅବତାର ହୋଇଛନ୍ତି। ଜଗନ୍ନାଥଙ୍କୁ ବୁଦ୍ଧ ଅବତାର ବୋଲି କୁହାଯାଏ। ପୁଣି ଏହି ଜଗନ୍ନାଥ ରୂପଶୂନ୍ୟ ହୋଇ ମଧ୍ୟ ସକଳରୂପଗୁଣର ଆକର ବୋଲି କୁହାଯାଇଥାଏ। କେବେ ମହିମା ଗୋସାଇଁଙ୍କ ଗୁରୁତ୍ୱ ପ୍ରଖ୍ୟାପନପାଇଁ ସେ ଜଗନ୍ନାଥଙ୍କୁ ପାର୍ଶ୍ୱଦେବତା ମଧ୍ୟ ସଜାଇଛନ୍ତି। ପୁଣି ଅନ୍ୟତ୍ର ସେ ଘଟ ମଧ୍ୟରେ ଜଗନ୍ନାଥଙ୍କ ଉପସ୍ଥିତି ଅନୁଭବ କରି ପ୍ରତିମାପୂଜାର ଘୋର ବିରୋଧ ମଧ୍ୟ କରିଛନ୍ତି, ଜଗନ୍ନାଥଙ୍କ ମୂର୍ତ୍ତି ଶୁଷ୍କ କାଷ୍ଠରେ ତିଆରି। ସେ ମୁକ୍ତି ଦେବାପାଇଁ ସମର୍ଥ ନୁହନ୍ତି। ପିତୁଳାପୂଜା କିପରି ମଣିଷମାନଙ୍କୁ ଅବାଟରେ ନେଇଯାଇଛି ଓ ପ୍ରକୃତି ସତ୍ୟଠାରୁ ଦୂରେଇ ରଖୁଛି ଏକଥା ଚିନ୍ତାକରି ଭୀମଭୋଇ କ୍ଷୋଭ ପ୍ରକାଶ କରିଛନ୍ତି। ତେଣୁ ସେ ଧର୍ମଜଗତରେ ବିଧର୍ମୀ ବିପ୍ଲବୀ ଆଦି ବିଶେଷଣରେ ଭୂଷିତ ହୋଇଛନ୍ତି। ଏପରିକି ଭୀମଙ୍କର ଏତାଦୃଶ ବିଚାରଧାରା ତତ୍କାଳୀନ ପତ୍ରପତ୍ରିକାରେ ବହୁଭାବରେ ସମାଲୋଚିତ ହୋଇଛି।

## ବିଧିରେ ମତ୍ତହସ୍ତୀ ପରେ ମାହୁନ୍ତ :

ବୈଷ୍ଣବଧର୍ମ ଓ ନାଥଧର୍ମ ଆଦିରେ ପ୍ରତୀକାତ୍ମକ ଭାଷାର ପ୍ରୟୋଗ ଦୃଷ୍ଟି ଆକର୍ଷଣକାରୀ। ଏଥିରେ ଶବ୍ଦର ଅଭିଧା ଅର୍ଥଠାରୁ ଲକ୍ଷାର୍ଥ ବା ବ୍ୟଂଜନାର୍ଥ ଅଧିକ ଗୁରୁତ୍ୱପୂର୍ଣ୍ଣ। ଭୀମଭୋଇ ମଧ୍ୟ ଶରୀର ଭେଦ ଭଜନ ସଦୃଶ ବହୁ ଭଜନ ରଚନା କରିଛନ୍ତି। ଏ ଭିତରୁ ଅଧିକାଂଶର ଅର୍ଥ ବେଶ୍ ଗହନ; କିନ୍ତୁ ବେନିପାବଛିଆ କୂଅ ଗୋ ପୂରି ରହିଅଛି ନୀର, ଅଣଚିମିଳାରେ ଗୋ ଭୂମିରେ ବସିଛି କୁମ୍ଭ, ବଡ଼ସି

ଲାଠିରେ ଗୋ ଆହାର ଝିଙ୍କୁଛି କଚ୍ଛ । ପାଞ୍ଚଭାଇ, ପଚିଶିପ୍ରାଣୀ କୁଟମ୍ବ, କଚ୍ଛ ଧୀବରଟିକୁ ଗିଳିଦେବା, ଭଲଆ ବେନିଗିରିରେ ଝରଣା ବହୁଛି, ମୀନ ଡେଉଁଛନ୍ତି ଅଥଚ ମୀନକୁ କେହି ଧରିପାରୁନାହାନ୍ତି ଏତାଦୃଶ ବର୍ଣ୍ଣନା ମଧ୍ୟରେ ଆମେ ଏକ ସରଳ ଅର୍ଥ ସହିତ ଅନ୍ୟ ଏକ ଗୂଢ଼ଅର୍ଥର ବର୍ଣ୍ଣନା ଦେଖିଥାଉ ।

ଭୀମଭୋଇଙ୍କ ଭଜନ :

"ବାଲିମାଟି ନାହିଁ ଉବୁକୁଛି ହ୍ରଦ

ଗଂଗାଜଳ ଛାଡ଼ି, କୂପଜଳେ ଗାଧ ।" ଭଳି ଭଜନରେ ଅଚ୍ୟୁତାନନ୍ଦଙ୍କ ସ୍ପଷ୍ଟ ପ୍ରଭାବ ପରିଲକ୍ଷିତ ହୁଏ । ଯେମିତି "ଗଙ୍ଗାତୀରେ ନାହିଁ ସଦଗତିରେ ମୂଢ଼ମତି ।"

ଶିଶୁ ଅନନ୍ତଙ୍କ ଭଜନ :

"ଶୂନ୍ୟରୁ ସଞ୍ଚରି ଯେଉଁ ଚରଣ ଅଇଲା
ଶୂନ୍ୟପୀଠ ଭେଦି ସମଦରଦୀ ବହିଲା,"

ଯଶୋବନ୍ତଙ୍କ ଭଜନ :

"ପାଞ୍ଚ ପଧାନ ପଚିଶି ମୂଲିଆ
ଯେତେବନ୍ଧାଇଲେ ପଡ଼େ ଗଳିଆ ।"ଙ୍କ ଅନୁରୂପ ଭୀମଭୋଇଙ୍କ ଭଜନ ହେଉଛି ଯଥାକ୍ରମେ—

"ଉଠ ଶୂନ୍ୟଶିଖରେ ଭେଟ ଅଲେଖପୁରେ
ଖଟ ସେବା ଭକତି ମୁକତି ହେ—

"ନବଲକ୍ଷତାରାଧୂଳି କାଠ ଝୋଲା
ଶୂନ୍ୟେ ଉଡୁଛନ୍ତି ହୋଇ ହୁଳାହୁଳା ।"

ଓ "ପାଞ୍ଚଗୋଟି ଭାଇ ପଚିଶି ପରାଣି ତରିବୁ ସମସ୍ତେ ନିଶ୍ଚେ
ପୂରିବ ଉଦର ତିରିଶି ପ୍ରାଣୀର କଲେ ଏହା କଣାକଚ ।"

ଏଭଳି ସମାନ ଚିନ୍ତାର ଭଜନ ଆମେ ଉଭୟ ଯୁଗର ଦୁଇ ମହାନ୍ ସାଧକଙ୍କ ରଚନାରୁ ଶତାଧିକ ପାଇପାରିବା । ଏ ଭିତରେ ସବୁଠାରୁ ଆକର୍ଷଣୀୟ ହେଉଛି ଶରୀରଭେଦ ଭଜନର ଧାରା । ଯାହା ପିଣ୍ଡରେ ଅଛି ତାହାହିଁ ବ୍ରହ୍ମାଣ୍ଡରେ ରହିଛି । ଏହା ଶରୀରଭେଦ ଭଜନର ବୈଶିଷ୍ଟ୍ୟ । ଠୁଳଶୂନ୍ୟରୁ ଆକାଶ, ଆକାଶରୁ ଅଣଚାଶ ପବନ ବା ତହିଁରୁ ଅଗ୍ନି, ଜଳ, ଜ୍ୟୋତି ଇତ୍ୟାଦିର ଜନ୍ମ ବିଷୟକ ଧାରଣା ନେଇ ଯେଉଁ ଭଜନଗୁଡ଼ିକ ଭୀମଭୋଇ ରଚନା କରିଛନ୍ତି ତାହା ବୈଷ୍ଣବୀୟ ଶରୀରଭେଦ ଭଜନ ଅନୁରୂପ ଅଚ୍ୟୁତାନନ୍ଦଙ୍କର "ବାଇମନ ହୋ ବସି ହଂସକୁ ଖେଳା, ବାଇମନରେ ବସି ଅବନାବନ", ଭଳି ଭଜନରେ ଏହି ତଥ୍ୟ ଦେଖିବାକୁ ମିଳେ । ଏଠାରେ ଭୀମଭୋଇଙ୍କର ଅନ୍ୟ ଏକ ଭଜନରୁ ଉଦ୍ଧୃତିଟିଏ ଦେବା ଆବଶ୍ୟକ ।

"ଘଟେ ଘଟେ ବିଜେ ଗୁରୁ ଅଣାକାର କଳ୍ପତରୁ
ପିତାମାତା ଶୂନ୍ୟ ନିଗମ କଳ୍ପନାରେ ରତି ସଂଗମ
ଏପିଣ୍ଡ ବ୍ରହ୍ମାଣ୍ଡ ପୃଥ୍ୱୀ ନବଖଣ୍ଡ, ଦେହଟି ପ୍ରତିମା ତ୍ରିଦାରୁ
ପାଦରୁ ତାଳୁକା ପର୍ଯ୍ୟନ୍ତ, ଅସ୍ଥିମାଳମାନ ପ୍ରଥିତ ଅଙ୍ଗରୋଗ ମୂଳ,
ମହୀ ମାଳ ମାଳ, ଦେହ ଅଛି ମାଳ ସେ ମେରୁ ।"

ଏଠାରେ ଅଣାକାର କଳ୍ପତରୁ ଦେହାନ୍ତ ହେବାର ସ୍ତରମାନ ଉଲ୍ଲେଖ ରହିଛି ।

## ଦିନୁଦିନ ହୋଇଲାଣି ଘୋର କଳିକାଳ :

ଘୋର କଳିକାଳର ନାନାଦି ଅପକର୍ମ କିଭଳି ମାନବସମାଜକୁ ଲଣ୍ଡଭଣ୍ଡ କରିଦେବ, ତା'ର ଅନେକ ଉଦାହରଣ ଭୀମଭୋଇ ପ୍ରସ୍ତୁତ କରିଛନ୍ତି । ଏହା ତାଙ୍କର ସାମାଜିକ ପ୍ରତିବଦ୍ଧତାର ନିଦର୍ଶନ । ଅଶିକ୍ଷିତ ନିମ୍ନବର୍ଗରେ ସମାଜରେ ଅନେକ ତ୍ରୁଟି ବିଚ୍ୟୁତି ସହଜଭାବରେ ଗୃହୀତ ହୋଇଯାଏ । ମାତ୍ର ଦିବ୍ୟଦ୍ରଷ୍ଟା ଜ୍ଞାନୀ ଊନବିଂଶ ଶତାବ୍ଦୀର ଶେଷଭାଗରେ ଯେଉଁ ସାମାଜିକ ତଥା ପାରିବାରିକ ତ୍ରୁଟିର ରୂପ ଦେଖିପାରିଥିଲେ ଆମେ ବିଂଶ ଶତାବ୍ଦୀର ଶେଷପାଦରେ ସେହି ତ୍ରୁଟି ଭିତରେ ଜୀବନ ବଂଚୁଛୁ, ଏକଥା କହିବା ଅତିରଂଜନ ହେବନାହିଁ । ଯେମିତି ଗ୍ରାମଗ୍ରାମରେ ମେଳିହେବ । ସାହି ପଡ଼ିଶାରେ ଉତ୍ତମ ସଂପର୍କ ରହିବ ନାହିଁ । ଚାଷ ବୁଡ଼ିଯିବ ଅର୍ଥାତ୍ ହଳବଳଦ ଭାଙ୍ଗିଯିବ । ବାପପୁଅଙ୍କର ଅପଡ଼ ହେବ । ଶାଶୁବୋହୂଙ୍କ ସଂପର୍କ ତିକ୍ତ ହୋଇଯିବ । କୁଳନାରୀମାନେ କୁଳଟା ହେବେ । କେହି ଶାସ୍ତ୍ରପଠନ କରିବେନାହିଁ ବା ତୀର୍ଥବ୍ରତ କରିବେନାହିଁ । ସନ୍ଧ୍ୟା ତର୍ପଣ ଇତ୍ୟାଦି ଭୁଲି ନୀଚକର୍ମରେ ମନଦେବେ । ସମାଜରେ ବଡ଼ ସାନ ଭେଦ ରହିବନାହିଁ । ଜାତିଭେଦ ନଷ୍ଟ ହୋଇଯିବ ପରେ କେହି କାହାକୁ ମାନିବେନାହିଁ । ଶୂନ୍ୟରୁ ଘଡ଼ଘଡ଼ି ପଡ଼ିବ । ଖେଳିବାକୁ ଯାଉଥିବା ଶିଶୁ ଘରକୁ ଫେରିବନାହିଁ । ବକ୍ତାମାନେ ମିଥ୍ୟା ଭାଷଣ ଦେବେ । ସମସ୍ତେ ମାୟା ମଦିରାରେ ମତ୍ତ ହୋଇ ଅଚେତ ଭଳି ଆଚରଣ କରିବେ । କାଳିକା ନିଜର ପାଶ୍ୱବର୍ତ୍ତିନୀମାନଙ୍କୁ ଧରି ଗାଁ ଗାଁ ବୁଲି ଖର୍ପରରେ ସମସ୍ତଙ୍କୁ ହାଣିଦେବେ । ଦୁଷ୍ଟମାନଙ୍କର ବଂଶବୃଦ୍ଧି ହେବ । ବ୍ରହ୍ମାଣ୍ଡ ଉଚ୍ଛନ୍ନ ହୋଇଯିବ । ସ୍ଥାନେ ସ୍ଥାନେ କାନ୍ଦବୋବାଳି ପଡ଼ିବ । କାଳିକା ରକ୍ତମଖା ଖର୍ପର ଧରି ବୁଲିବା କଥାଟି ଆଜିର ଯୁକ୍ତିସିଦ୍ଧ ପରିବେଶରେ ଅସ୍ୱାଭାବିକ ମନେ ହେଉଥିଲେହେଁ ଆଜିର ନାନାଦୁର୍ଘଟଣା ଓ ଦୁରାରୋଗ୍ୟ ବ୍ୟାଧି ପ୍ରଭୃତି ଯେପରି ମନୁଷ୍ୟସମାଜକୁ ଭୀତତ୍ରସ୍ତ କରି ରଖିଛି ତାକୁ କାଳିକା ଦେବୀଙ୍କ ଖଡ୍ଗର କାର୍ଯ୍ୟ ବୋଲି କୁହାଯାଇପାରେ । ଏଭଳି ଦୁଃସ୍ଥିତିରୁ ତ୍ରାହି ପାଇବାକୁ ହେଲେ ଗୁରୁଙ୍କୁ ଆଶ୍ରା କରିବାକୁ ପଡ଼ିବ । ତାଙ୍କରି ନାମ କୀର୍ତ୍ତନ କଲେ, ମହିମା ଶ୍ରବଣ କଲେ ବା ତହିଁରେ

ଅବଗାହନ କଲେହିଁ ଘୋର କଳିକାଳର ଦୁର୍ଗତି ଖଣ୍ଡିତ ହୋଇପାରିବ । ଏତେ ସହଜସାଧ୍ୟ ଔଷଧ ହାତପାହାନ୍ତାରେ ଥାଉଁ ଥାଉଁ କଳିର ରୋଗରୁ ମୁକ୍ତି ନପାଇଲେ ତାହା ବ୍ୟକ୍ତିର ଦୁର୍ଭାଗ୍ୟ ବୋଲି ବୁଝିବାକୁ ହେବ ।

### ହସ୍ତ ନଲଗାଇ ପିଣ୍ଡ ଗଢ଼ନ୍ତି :

ସକଳ ଧର୍ମରେ ପିଣ୍ଡର ଗୁରୁତ୍ୱ ସ୍ୱୀକୃତ । ଏହି ଦେହ ଥିଲେ ଈଶ୍ୱର ପ୍ରାପ୍ତିପାଇଁ ସାଧନା କରିହେବ । ତେଣୁ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡ ଦେଖିବାର କାମନା ନେଇ ଭୀମଭୋଇ ଅନେକ ଭଜନ ରଚନା କରିଛନ୍ତି । କେବଳ ଧର୍ମଦୃଷ୍ଟିରୁ ନୁହେଁ ସାହିତ୍ୟର ସର୍ବକାଳୀନତା ଦୃଷ୍ଟିରୁ ତାଙ୍କର କେତେକ ଭଜନ ସ୍ୱତନ୍ତ୍ର ଉଲ୍ଲେଖର ଅପେକ୍ଷା ରଖେ । ଯେମିତି ଉଦାହରଣସ୍ୱରୂପ ''ଜଗିବସି କାଳ କରୁଛି ଦୁର୍ବଳ ଯେସନେ ଖାତକ ସାହୁ'' ଅର୍ଥାତ୍ କାଳ ସଚେତନତାହିଁ ମନୁଷ୍ୟର ଆଣ୍ଠ ଭାଙ୍ଗିଦିଏ । ଯେମିତି ସାହୁକାର ଦୁଆରେ ଜଗିବସିଲେ ଖାତକର ଦମ୍ଭ ଭାଙ୍ଗିଯାଏ ଠିକ୍ ସେମିତି କାଳହିଁ ମନୁଷ୍ୟର ଦମ୍ଭ ନଷ୍ଟ କରିପାରେ । ମହିମା ଧର୍ମର ପ୍ରବକ୍ତା ଭୀମଭୋଇଙ୍କର ଭଜନରେ ଶତାଧିକ ପ୍ରାଚୀନ ଶବ୍ଦର ପ୍ରୟୋଗ ଦୃଷ୍ଟି ଆକର୍ଷଣକାରୀ । ଯେମିତି ଅବନା ମନ୍ଦିର, ଅମନ, ନିର୍ବେଦ ଧର୍ମ, ଠୁଳଶୂନ୍ୟ ଅର୍ଗଳି କବାଟ, ଅମନ ଦାଣ୍ଡ, ଅବାଇମଣ୍ଡଳ, ଅନାହତ ଧୂଳି ଭଳି ଧର୍ମୀୟ ଶବ୍ଦଗୁଚ୍ଛ । ଏଥି ସହିତ ପ୍ରାଚୀନ ଗ୍ରାମ୍ୟ ପ୍ରୟୋଗ ମଧ୍ୟରେ ଆଣ୍ଠ, ନିଅଣ୍ଟ, ରଣଭଣ, ନଟକୂଟ, ହଟପଟ, ପୁଡୁଗ, ତାମ୍ଭି, ଅଗାଡ଼ି, ଝାବୁଡ଼, ହେତୁ, ଝାସ ଇତ୍ୟାଦି ଶବ୍ଦର ବହୁଳ ପ୍ରୟୋଗ ଦେଖାଯାଏ ।

ଭୀମଭୋଇ ଏକ ସମୟରେ ନିର୍ଦ୍ଦିଷ୍ଟ ଧର୍ମତତ୍ତ୍ୱରେ ବିଶ୍ୱାସୀ, ମନୁଷ୍ୟର ଭବିଷ୍ୟତ ସଂପର୍କରେ ଆଶାବାଦୀ ଓ ତା'ର ତ୍ରୁଟିବିଚ୍ୟୁତି ସଂପର୍କରେ ସଚେତନ । ତେଣୁ ସେ ନିର୍ଗୁଣ ଓ ସଗୁଣ ଉଭୟଭାବରେ ଜୀବର ନିଷ୍ଠା ଓ ଆତ୍ମସମର୍ପଣ ସଂପର୍କରେ ସୂଚନା ଦେଇଛନ୍ତି । ଏଥିପାଇଁ ମନକୁ ସରୁ କରିବାକୁ ହେବ । ଗୁରୁଙ୍କ ପାଦରେ ଭକ୍ତି କରିବାକୁ ହେବ ଓ ନାମରେ ଚିତ୍ତ ଲଗାଇବାକୁ ହେବ । ଶରଣ ପଶିପାରିଲେହିଁ ଏଭଳି ସମର୍ପଣ ସମ୍ଭବ । ତେବେ ଓଡ଼ିଶାର ଭକ୍ତି ପରଂପରାରେ ଯେଉଁ ନିର୍ଗୁଣ ପରଂବ୍ରହ୍ମ ଉପାସନାର ଧାରା କେଉଁ ଅନାଦି କାଳରୁ ରହିଥିଲା ଭୀମଭୋଇ ତାହାକୁ ଆଧୁନିକ ଜଗତ ସହିତ ପରିଚିତ କରାଇ ଦେଇଛନ୍ତି । ସେ ନିଜକୁ ହୀନ, ପାମର, ପତିତ, ଚଣ୍ଡାଳ ଇତ୍ୟାଦି କହିବା ମଧ୍ୟରେ ସମତାର ବାର୍ତ୍ତାହିଁ ପ୍ରଚାର କରିଛନ୍ତି । ତାଙ୍କର ଭଜନର ସଂଖ୍ୟା ଅକଳନୀୟ । ପ୍ରାୟ ୩୧୦ଟି ଭଜନର ପ୍ରକାଶିତ ସଂକଳନ ପାଠ କରି ଏତାଦୃଶ ପ୍ରବନ୍ଧ ରଚନାର ପ୍ରୟାସ ନିଶ୍ଚିତ ପୂର୍ଣ୍ଣାଙ୍ଗ ନୁହେଁ । ତାଙ୍କର ଅକଳନ୍ତି ଭଜନ ଏପର୍ଯ୍ୟନ୍ତ ଛପାଯାଇପାରିନାହିଁ । ନିଚ୍ଛେ ଅଶେଷ

ଦୁର୍ଭୋଗ ମଧ୍ୟରେ ବଞ୍ଚୁଥିବା ମଣିଷ ମନରେ ବିଶ୍ୱର ମାନବାତ୍ମା ପ୍ରତି ଦୟା, ଅନୁକମ୍ପା ତଥା ମମତ୍ୱବୋଧ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ ଓ ବିଭୁକୃପା ଉପରେ ସ୍ୱତଃ ଆସ୍ଥା ଆସିଯାଏ ।

ପ୍ରାଚୀନ ଯୁଗଠାରୁ ଆରମ୍ଭ କରି ବର୍ତ୍ତମାନ ସମୟ ପର୍ଯ୍ୟନ୍ତ ଓଡ଼ିଶାର ଭଜନ ସାହିତ୍ୟ ଗୁଣ ଓ ପରିମାଣ କୌଣସି ଦୃଷ୍ଟିରୁ ଊଣାନୁହେଁ । ବିଜ୍ଞାନର ଉନ୍ନତି ସହିତ ରେଡ଼ିଓ, କ୍ୟାସେଟ୍, ଟେଲିଭିଜନ୍ ପ୍ରଭୃତି ମାଧ୍ୟମରେ ସହସ୍ରାଧିକ ଭଜନ ପ୍ରଚାରିତ ହେଉଛି । ଅନେକ ଲୋକପ୍ରିୟ ଭଜନ ସାଧାରଣ ଲୋକେ ଗୁଣୁଗୁଣୁ ଗାଉଥିବା ଲକ୍ଷ୍ୟ କରାଯାଉଛି । ଏପରିକି ଅଣଓଡ଼ିଆ କଣ୍ଠଶିଳ୍ପୀମାନଙ୍କ କଣ୍ଠରେ ଗାନ କରାଯାଉଥିବା ଭଜନଗୁଡ଼ିକ ବୈଷୟିକ ଜ୍ଞାନ କୌଶଳରେ ମଣ୍ଡିତ ହୋଇ ଖୁବ୍ ଲୋକପ୍ରିୟ ହେଉଛି । ଏସବୁ ସତ୍ତ୍ୱେ ଭୀମଭୋଇଙ୍କର ସ୍ୱାଭାବିକ କବିତ୍ୱ ନିଜର ସ୍ଥାନ ଅକ୍ଷୁଣ୍ଣ ରଖିପାରିଛି । ଆଜି ମଧ୍ୟ ଓଡ଼ିଶାର ଗାଁଗହଳିରେ ଖଞ୍ଜଣି ସହିତ ସେଗୁଡ଼ିକ ଗାନ କରାଯାଉଛି । ତା'ର ଶତାଧିକ ପଦ ନିତ୍ୟବ୍ୟବହାର୍ଯ୍ୟ ଭାଷାରେ ପ୍ରଯୁକ୍ତ ହେଉଛି । ଏହାହିଁ ଭୀମଭୋଇଙ୍କର ବିଶେଷତ୍ୱ ।

---

# ଗଙ୍ଗାଧର ସାହିତ୍ୟର ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ଓ ଉପଦେଶାତ୍ମକତା

ଗଙ୍ଗାଧର ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ବିଶିଷ୍ଟ ପ୍ରତିଭା । ଏହି ବହୁ ଆଲୋଚିତ ସ୍ରଷ୍ଟା ରାଧାନାଥଙ୍କର ସମକାଳୀନ ହୋଇଥିଲେହେଁ ନିଜର ବୈଶିଷ୍ଟ୍ୟ ନେଇ ଏକ ସ୍ବତନ୍ତ୍ର ଆସନର ଅଧିକାରୀ । ଯେଉଁ କେତେକ ପ୍ରତିଭା ଓଡ଼ିଶା ମାଟିରେ ନବାଗତ ଆଧୁନିକ ଜୀବନ ଦୃଷ୍ଟିକୁ ପାରଂପରିକ ମୂଲ୍ୟବୋଧ ସହିତ ସମନ୍ବିତ କରି ଯଥାର୍ଥ ଯୁଗ ସାହିତ୍ୟ ସୃଷ୍ଟିରେ ସମର୍ଥ ହୋଇଥିଲେ ସେମାନଙ୍କ ମଧ୍ୟରେ ଗଙ୍ଗାଧର ଅଗ୍ରଗଣ୍ୟ ।

ଆଲୋଚକଗଣ ଗଙ୍ଗାଧରଙ୍କର କାବ୍ୟକୃତି ଓ ଜୀବନ ଦର୍ଶନ ପ୍ରଭୃତିକୁ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରିଛନ୍ତି । ପ୍ରକୃତିପ୍ରୀତି ଓ ପ୍ରକୃତିମଧ୍ୟରେ ମାନବିକତାର ଆରୋପ ଗଙ୍ଗାଧର ପ୍ରତିଭାର ଏକ ଉଜ୍ଜ୍ୱଳ ଦିଗନ୍ତ । ଏତଦ୍‌ବ୍ୟତୀତ ପୁରାଣର ଚରିତ୍ରମାନଙ୍କୁ ଯୁଗୋପଯୋଗୀ କରି ମୂଲ୍ୟବୋଧର ସତର୍କ ପ୍ରହରୀରେ ପରିଣତ କରିବା ତାଙ୍କର ଅନ୍ୟ ଏକ ଆଧୁନିକ ଦୃଷ୍ଟିକୋଣ । ସେହିପରି ରାମାୟଣର ବିଭିନ୍ନ କଥା ଭାଗକୁ ତପସ୍ୱିନୀ, ଇନ୍ଦୁମତୀ ଭଳି କାବ୍ୟରେ ପୁନଃସୃଜନ କରିବା ମଧ୍ୟ ତାଙ୍କର ବୈଶିଷ୍ଟ୍ୟର ପରିଚାୟକ ।

ଗଙ୍ଗାଧର ଥିଲେ ପରମ୍ପରାର ଉପାସକ । ଓଡ଼ିଆ ଜନଜୀବନର ମୁଖ୍ୟ ପ୍ରବାହ ସହିତ ତାଙ୍କର ଥିଲା ନାନା ନକ୍ଷତ୍ରର ପରିଚୟ । ତେଣୁ ଯେଉଁଠି ସେ ଏହି ପରମ୍ପରାର ତ୍ରୁଟି ଲକ୍ଷ୍ୟ କରିଛନ୍ତି ସେଠାରେ ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ତାହାକୁ ବ୍ୟଙ୍ଗ କରିବାକୁ ଭୁଲିନାହାନ୍ତି । ସ୍ରଷ୍ଟା ଯେଉଁ ପରିବେଶରେ ବଞ୍ଚେ ସେହି ପରିବେଶରେ ସନ୍ତୁଷ୍ଟ ହୋଇପାରେନାହିଁ । ସେ ପରିଚିତ ପରିବେଶର ତ୍ରୁଟିବିଚ୍ୟୁତିକୁ ପରିହାସ କରିବା ସହିତ ଏକ ଦିବ୍ୟଦୃଷ୍ଟି ଦେଇ ସୁନ୍ଦର ଭବିଷ୍ୟତର ପରିକଳ୍ପନା କରେ ଓ ସେଠାରେ ପହଞ୍ଚିବାପାଇଁ ଅନ୍ୟମାନଙ୍କୁ ଉପଦେଶ ମଧ୍ୟ ଦିଏ । କବି ଗଙ୍ଗାଧର ତାଙ୍କର କବି ଜୀବନର ପ୍ରାଥମିକ ପର୍ଯ୍ୟାୟରେ ପରୋକ୍ଷଭାବରେ ସମାଜକୁ ବ୍ୟଙ୍ଗ କରିଛନ୍ତି, 'ଅର୍ଘ୍ୟଥାଳୀ' ତାଙ୍କର ପରିଣତ ବୟସର ରଚନା ହୋଇଥିବାରୁ, ଏହି କବିତା ସମୂହରେ ଲେଖକଙ୍କର ପ୍ରଜ୍ଞା, ଦୂରଦର୍ଶିତା ତଥା ଉପଦେଶାତ୍ମକତା ଏକୀଭୂତ ହୋଇଯାଇଛି । ଅଭାବର କଷାଘାତରେ ମଧ୍ୟ ସେହି ଦ୍ରଷ୍ଟାପଣରେ ଘୂଣ ଲାଗିନାହିଁ ।

ଗଭୀର ଆତ୍ମବିଶ୍ୱାସ ନେଇ ସେ ପ୍ରତିଷ୍ଠିତ ସମାଜପତିମାନଙ୍କୁ ବ୍ୟଙ୍ଗ କରିଛନ୍ତି ଓ ସମାଜକୁ ଉପଦେଶ ପ୍ରଦାନ କରିଛନ୍ତି ।

ଆଧୁନିକ ଓଡ଼ିଆ ସାହିତ୍ୟର ଅଭ୍ୟୁଦୟ ପର୍ବର ଅନ୍ୟ ଦୁଇ ମହାରଥୀ ରାଧାନାଥ ଓ ମଧୁସୂଦନ ମଧ୍ୟ ନିଜ ନିଜ କାବ୍ୟ-କବିତାରେ ସମାଜକୁ ବ୍ୟଙ୍ଗଜର୍ଜର କରିବାକୁ ପଛେଇନାହାନ୍ତି । ଯେଉଁ ସମାଜରେ ସେମାନେ ନିଃଶ୍ୱାସ ନେଉଥିଲେ, ସେହି ସମାଜର ଅଧୋଗତି ପ୍ରତି ଉଦାସୀନ ନହୋଇ, ତା'ର ଦୁର୍ଗତିକୁ ନିବିଷ୍ଟ ଚିତ୍ତରେ ଅବଲୋକନ କରିଛନ୍ତି । ରାଧାନାଥ ସାହିତ୍ୟର ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ଏକ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ତାଙ୍କର 'ଦରବାର' ସଂପୂର୍ଣ୍ଣ ବ୍ୟଙ୍ଗାତ୍ମକ ଶୈଳୀରେ ରଚିତ କାବ୍ୟ । 'ତୁଳସୀ ସ୍ତବକ'ରେ ଉପଦେଶାତ୍ମକତା, ପ୍ରକୃତି ସହିତ ମାନବ ପ୍ରକୃତିର ସମନ୍ୱୟ ଓ ମନୁଷ୍ୟର ପରିବର୍ତ୍ତନ ଉପରେ ଆସ୍ଥାର ସୂଚନା ମିଳିଥାଏ ।

''ନୀଳ ନୀରଦମାଳେ ଖେଳେ ଚପଳା-
ଖଳ ପୀରତି ପ୍ରାୟ ସଦାଚପଳା
ବର୍ଷନ୍ତି ମହୀମୁଖେ ନଇଁ ଅମ୍ବୁଦେ-
ବିଦ୍ୟା ସଂପଦେ ଯଥା ନମନ୍ତି ବୁଧେ ।''

(ରାଧାନାଥ ଗ୍ରନ୍ଥାବଳୀ, ତୁଳସୀ ସ୍ତବକ—୨୬୧)

'ପାର୍ବତୀ' କାବ୍ୟର—

''ଭବିତବ୍ୟ ଯାହା ଅବଶ୍ୟ ଘଟିବ
କିଏ ତା କରିବ ଆନ
କିଏ ଅବା ସେହି ଜ୍ୟୋତିଶ୍ଚକ୍ରଗତି
ରୋଧିବାକୁ ବଳବାନ୍ ।''

(ରାଧାନାଥ ଗ୍ରନ୍ଥାବଳୀ, ପାର୍ବତୀ—୧୨୦)

ମଧ୍ୟ ସମପର୍ଯ୍ୟାୟବାଚୀ ପଦବିଶେଷ । ଭକ୍ତକବି ମଧୁସୂଦନଙ୍କର 'ଜୀବନ ଚିନ୍ତା' ଏ ପର୍ଯ୍ୟାୟରେ ସ୍ୱତନ୍ତ୍ର ଉଲ୍ଲେଖ ଆବଶ୍ୟକ କରେ । ତାଙ୍କର ବ୍ୟଙ୍ଗକବିତା 'ଭଣ୍ଡ ରସାୟନ କାବ୍ୟ' ଉତ୍କଳ ସାହିତ୍ୟ କ୍ଷେତ୍ରରେ ସେ ସମୟରେ ଉପୁଜିଥିବା ଅବାଞ୍ଛିତ ସମର ସଂପର୍କରେ ରଚିତ । 'ସାବାସ୍ ସାହିତ୍ୟ ଚର୍ଚ୍ଚା ସାବାସ୍ ସାବାସ୍' ମଧ୍ୟ ଅନୁରୂପ ବ୍ୟଙ୍ଗାତ୍ମକ କବିତା । ଭଞ୍ଜ ଓ ରାଧାନାଥଙ୍କୁ ନେଇ ଇନ୍ଦ୍ରଧନୁ ବିଜୁଳିର ବିବାଦ, ସମଗ୍ର ଓଡ଼ିଆ କାବ୍ୟଜଗତ ଦୁଇ ଶିବିରରେ ପରିଣତ ହୋଇ ପରସ୍ପରକୁ ଦୋଷାରୋପ କରିବାର ମାନସିକତାକୁ ଏଥିରେ ଦୃଢ଼ ସ୍ୱରରେ ନିନ୍ଦା କରାଯାଇଛି ।

କୁସୁମାଞ୍ଜଳି ଓ ହସ ଓ ଗାଥାର ଅନେକ କବିତାରେ କବିଙ୍କର ଉପଦେଶ ତଥା ବ୍ୟଙ୍ଗ ଭାବନାର ପ୍ରତିଫଳନ ଦୃଷ୍ଟିଗୋଚର ହୋଇଥାଏ । 'ଉତ୍କଳ ଜନନୀ ପ୍ରତି' କବିତାରେ–

''କୋଟିଏ ସନ୍ତାନ ମା' ଗୋ ଧରିଅଛୁ କୋଳେ
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ଡୋଳେ''
କବିତା ପଙ୍କ୍ତିରେ (ମଧୁସୂଦନ ଗ୍ରନ୍ଥାବଳୀ–୨୩୯)

ବ୍ୟଙ୍ଗ ସହିତ କାରୁଣ୍ୟର ସମନ୍ୱିତଭାବ ଦୃଷ୍ଟି ଆକର୍ଷଣ କରିଥାଏ, ଏହି ବ୍ୟଙ୍ଗର ଇଂରାଜୀ ପ୍ରତିଶବ୍ଦ ହେଉଛି, Satire, New Standard Encyclopaediaରେ Satire ଶବ୍ଦର ଅର୍ଥ ହେଉଛି, "The essential element of this quality is attack or critism. x x x The object of attack may be a person, type of person, group of people, or all mankind; It may be a custom, philosophy, social institution, or art form." (New Std. Encyclopaedia – S.146)

ଏହି ବ୍ୟଙ୍ଗ ସହିତ ହାସ୍ୟ ରସ ଓ ଚାତୁର୍ଯ୍ୟ ଏକୀଭୂତ ହୋଇଥାଏ । ସାଧାରଣତଃ ବ୍ୟଙ୍ଗ ସର୍ବଦା ସମାଜ ସୁଧାରର କାମନା ନେଇହିଁ କରାଯାଇଥାଏ । ଏହି ଶ୍ରେଣୀୟ ରଚନାରେ ବ୍ୟକ୍ତି, ସମାଜ, କୌଣସି ଧର୍ମ ବା ସାମାଜିକ ପରମ୍ପରାକୁ ପରିହାସ ଜର୍ଜର କରାଯାଇଥାଏ । Drydenଙ୍କ ମତରେ, "The true end of Satire is the amendment of vices by correction." (Quintessence of Literary Essays – W. R. Goodman–Page.68)

ଗଙ୍ଗାଧରଙ୍କର କାବ୍ୟଜଗତ ନିଜସ୍ୱ ଦୀପ୍ତିରେ ଉଦ୍‌ଭାସିତ । ତାଙ୍କର କାବ୍ୟ ସମୂହରେ ଉପଦେଶାତ୍ମକତା ଓ ବ୍ୟଙ୍ଗାତ୍ମକତା କିଭଳି ତିଳତଣ୍ଡୁଳିତ ହୋଇଯାଇଛି ତାହା ଆଲୋଚନା କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

'ତପସ୍ୱିନୀ'ର ତୃତୀୟ ସର୍ଗରେ ବିରହବ୍ୟଥିତ ରାମଙ୍କୁ ଅବଲୋକନ କରିବା ପାଇଁ ପାହାନ୍ତା ପ୍ରହରର ତାରାମାନେ ପ୍ରୟାସ କରିଛନ୍ତି । କବିଙ୍କ ଲେଖନୀରେ–

''ଗୁଣୀର ସଦ୍‌ଗୁଣ ନ ବୁଝି ନିପୁଣ
ହେଲେ ଦୋଷ-ଦରଶନେ
ବିଧି ବିଡ଼ମ୍ବନା ରୋଗ ସମ୍ଭାବନା
ହୁଏ ତା'ର ଉଚ୍ଚାସନେ ।''
(ଗଙ୍ଗାଧର ଗ୍ରନ୍ଥାବଳୀ– ପୃ.୧୪)

ଷଷ୍ଠ ସର୍ଗରେ ତପସ୍ୱିନୀ ସୀତା ନିଜର ଆଶ୍ରମବାସିନୀ ସଖୀମାନଙ୍କ ସମ୍ମୁଖରେ ନିଜର ଅତୀତର କାହାଣୀ କହିଛନ୍ତି । ନିଜର ସ୍ୱୟଂବର ସଂପର୍କରେ ମନେପକାଇ

ସେ କହନ୍ତି ଯେ କେତେକ ପରାକ୍ରମଶାଳୀ ରାଜା ନିଜର ବୟସ ଲୁଚାଇ ତରୁଣୀ କନ୍ୟାର ପାଣିଗ୍ରହଣ ପାଇଁ ସ୍ୱୟଂବର ସଭାରେ ଉପଗତ ହୋଇଥିଲେ । ସେମାନଙ୍କ ସଂପର୍କରେ ସୀତାଙ୍କର ଉକ୍ତି–

''ରତନ କିରୀଟେ ଢାଙ୍କି ଧବଳ କୁନ୍ତଳ
କେତେ ନରପତି ତହିଁ ଦେଖାଇଲେ ବଳ ।''

(ଗଙ୍ଗାଧର ଗ୍ରନ୍ଥାବଳୀ-ପୃ.୨୩)

ଏଠାରେ ସୀତାଙ୍କ ମୁଖରେ ଗଙ୍ଗାଧରହିଁ ଭୋଗପ୍ରବଣ ସମାଜପତିମାନଙ୍କର ଭୋଗ ଲୋଲୁପତାକୁ ପରିହାସ କରିଛନ୍ତି ।

'ଅର୍ଘ୍ୟଥାଳୀ'ର 'ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର' ଏହି ବ୍ୟଙ୍ଗାତ୍ମକତାର ବଳିଷ୍ଠ ଉଦାହରଣ । ସାଧାରଣତଃ ଶାସକ ବା ନ୍ୟାୟାଧୀଶମାନଙ୍କୁ 'ଧର୍ମାବତାର' ବୋଲି ସମ୍ଭ୍ରମରେ ସମ୍ବୋଧନ କରାଯାଇଥାଏ । ଶାସକ ହେବାର ସୁଯୋଗ ନେଇ ଯେଉଁମାନେ ଶାସିତମାନଙ୍କୁ ଶାନ୍ତି ସନ୍ତୋଷରେ ରଖିବାପାଇଁ ଅସମର୍ଥ ହୁଅନ୍ତି ସେମାନେ ପ୍ରକୃତ ଶାସକ ପଦବାଚ୍ୟ ନୁହନ୍ତି । ଗଙ୍ଗାଧର ଆଦର୍ଶ ଶାସକ ରାମଚନ୍ଦ୍ର, ଦୁଷ୍ମନ୍ତ, ଅଜ ପ୍ରଭୃତିଙ୍କର ଦେବୋପମ ଚରିତ୍ର ଚିତ୍ରଣରେ ଶତମୁଖ ହୋଇଉଠିଛନ୍ତି । ରାଜା ହେଉଛନ୍ତି 'ମହତୀ ଦେବତା' ଯେଉଁମାନେ କୀର୍ତ୍ତିସୁଧା ପାନ କରି ଅମର ହୋଇଥାଆନ୍ତି । ଏହିଭଳି ଉନ୍ନତ ଚିନ୍ତାଧାରାର ସାହିତ୍ୟ ସୃଷ୍ଟିକରି ବାର୍ତ୍ତା ପ୍ରଚାର କରିଥିବା କବି ତତ୍‌କାଳୀନ ଶାସକବର୍ଗଙ୍କର ଖର୍ବକାୟ ବ୍ୟକ୍ତିତ୍ୱକୁ ଦେଖି ମର୍ମାହତ । ପରସ୍ୱ ଅପହରଣକୁ ପୌରୁଷ ବୋଲି ମଣୁଥିବା ଶାସକମାନେ ସାଧାରଣ ଜନତାର ସ୍ୱେଦ ରକ୍ତର ବିନିମୟରେ ଅୟସରେ ଦିନକାଟନ୍ତି । ସେମାନଙ୍କର ବିଦ୍ୟା ଧର୍ମନୀତିର ବିରୁଦ୍ଧାଚରଣ କରେ । ସେମାନଙ୍କର ବୁଦ୍ଧି ସତୀକୁ ହୀନପ୍ରଭ କରିଦିଏ । ନିଜର ତ୍ରୁଟିକୁ ଢାଙ୍କିବାପାଇଁ ସେମାନେ ନିଜ ନିଜ ଉପରିସ୍ଥ ହାକିମମାନଙ୍କୁ ବହୁମୂଲ୍ୟର ଉପହାର ଦିଅନ୍ତି; ଯେଉଁ ଉପହାର ଦରିଦ୍ରମାନଙ୍କର ଅର୍ଥ ବିନିମୟରେ ସଂଗୃହୀତ ହୋଇଥାଏ । ଏହି କରିତ୍‌କର୍ମା ପୁରୁଷମାନଙ୍କୁ ଗଙ୍ଗାଧର ପରିହାସ ଜର୍ଜର କରିଛନ୍ତି । ତାଙ୍କ ଭାଷାରେ–

''ମନ ଯାର ବ୍ୟସ୍ତ ସଦା ପରସ୍ୱ ହରଣେ
ଧନ ଯାର ନିବେଦିତ ଗଣିକା ଚରଣେ
ଜୀବନ ଯା କୋଟି କୋଟି ଲୋକଙ୍କର ଭାର
ତାକୁ ମଧ୍ୟ ବୋଲିଥାନ୍ତି ଧର୍ମଅବତାର ।''

(ଗଙ୍ଗାଧର ଗ୍ରନ୍ଥାବଳୀ)

'ଜ୍ୟେଷ୍ଠ ଜାତିର ଅପକର୍ମର ପରିଣାମ' ମଧ୍ୟ ଅନୁରୂପ ବ୍ୟଙ୍ଗଭାବନାର ଦ୍ୟୋତକ । ଜ୍ୟେଷ୍ଠ ଜାତି ନିଜର ଅଭିମାନକୁ ଧରି କନିଷ୍ଠ ଉପରେ ଅତ୍ୟାଚାର କଲେ ନିଜେ ପରାଭବହିଁ ପାଇଥାଏ । ଯେଉଁ ଦେଶରେ ଲଙ୍ଗଳ ଧରିଲେ ଜାତି ଯିବାର ଭୟଥାଏ ସେ ଦେଶ ଯେ କେବଳ ଭିକ୍ଷାକୁ ସମ୍ବଳ କରି ବଞ୍ଚିରହିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କର୍ମର ମର୍ଯ୍ୟାଦା ଓ ଜାଣିବା ପର୍ଯ୍ୟନ୍ତ ଜାତିର ସର୍ବାଙ୍ଗୀନ ଉନ୍ନତି ଏକ ସ୍ୱପ୍ନ ମାତ୍ର । ତେଣୁ କବି କହନ୍ତି—

"କୁଳ ବଳେ ହୁଅନ୍ତି ନ ପଢ଼ି ପଣ୍ଡିତ
ଶ୍ରମ କଲେ ସମାଜେ ହୁଅନ୍ତି ଦଣ୍ଡିତ ।" (ଗଙ୍ଗାଧର ଗ୍ରନ୍ଥାବଳୀ)

'କର୍ମଗୁଣ' କବିତାରେ ମଧ୍ୟ କବି କର୍ମ ଓ କୌଳିନ୍ୟର ପାର୍ଥକ୍ୟ ଦର୍ଶାଇଛନ୍ତି । କର୍ମ କଲେହିଁ ଫଳଲାଭ ହୋଇଥାଏ । କୌଳିନ୍ୟ ଏକ ଆଡ଼ମ୍ବର ବା ଆଟୋପ ମାତ୍ର, ଯାହା ଗୁଣହୀନ ବ୍ୟକ୍ତିର କ୍ଷୁଦ୍ରତାକୁ ଆବୃତ୍ତ କରି ରଖେ ।

'ଉତ୍କଳ ଭାରତୀଙ୍କ ଉକ୍ତି' କବିତାରେ ଏହି ବ୍ୟଙ୍ଗ ଆତ୍ମବ୍ୟଙ୍ଗ ସ୍ତରକୁ ଉନ୍ନୀତ ହୋଇଅଛି । ଉତ୍କଳ ଭାରତୀ ନିଜର ସନ୍ତାନମାନଙ୍କୁ ଯେଉଁ ଉପଦେଶ ଦେଇଛନ୍ତି ତହିଁରେ ମାତୃହୃଦୟର ଆବେଗପ୍ରବଣତା ସହିତ କାରୁଣ୍ୟ ଏକୀଭୂତ ହୋଇଯାଇଛି । ସମର୍ଥ ସନ୍ତାନମାନେ ଜନନୀଙ୍କୁ ସୁସ୍ଥ, ସୁନ୍ଦର ଓ ଯୁଗୋପଯୋଗୀଭାବରେ ସଜାଇବା ଯଥାର୍ଥ; କିନ୍ତୁ ଜନନୀଙ୍କୁ ଅସମ୍ମାନ କରିବା ବା ତାଙ୍କ ସଦନରେ ଯଥେଚ୍ଛାଚାର କରିବା ଅସହ୍ୟ । ତେଣୁ ଉତ୍କଳ ଭାରତୀ କୁହନ୍ତି—

"ଅଙ୍ଗ ଚାହିଁ ଦିଅ ଯୋଗ୍ୟ ପରିଚ୍ଛଦ
ପରିଚ୍ଛଦ ଯୋଗୁଁ ନକାଟ ଦେହ
କଟା ହେଲେ ହେବ ଜୀବନେ ବିପଦ
ନକରି ମାତାକୁ ସେପରି ସ୍ନେହ
ନଖ ବଢ଼ିଥିଲେ କର କରତନ
ରଞ୍ଜିଦିଅ ତହିଁ ଅଳତା ରଙ୍ଗ
ନାକ ବଡ଼ ଥିଲେ ତା କଲେ ଛେଦନ
ହେବନାହିଁ କି ଗୋ ସୌଷ୍ଠବ ଭଙ୍ଗ ।"
(ଗଙ୍ଗାଧର ଗ୍ରନ୍ଥାବଳୀ— ପୃ.୨୪୫)

ଓଡ଼ିଆ ଲିପି ସଂସ୍କାର ଆନ୍ଦୋଳନ ସମୟରେ ଲିଖିତ ଏହି କବିତାରେ ବ୍ୟଙ୍ଗ ଓ କାରୁଣ୍ୟର ଏହି ସମନ୍ୱିତ ରୂପ ବାସ୍ତବିକ ଅନନ୍ୟ । ପରଂପରା ପ୍ରତି ଅନୁରକ୍ତି ହିଁ କବି ଗଙ୍ଗାଧରଙ୍କୁ ଏଭଳି କବିତା ଲେଖିବାପାଇଁ ଉତ୍ସାହିତ କରିଛି । 'ନର ଓ ମୟୂର'

କବିତାରେ ହସ୍ତୀ ପୃଷ୍ଠ ଆସନ ନରପତିଙ୍କୁ ପର୍ବତ ଶିଖରବାସୀ ମୟୂର ବ୍ୟଙ୍ଗ କରିବାକୁ ପଶ୍ଚାତ୍‌ପଦ ହୋଇନାହିଁ । ମୟୂର ପର୍ବତ ଓ ସମତଳ ଉଭୟ ଅଞ୍ଚଳରେ ସମଭାବରେ ଆନନ୍ଦିତ ହୋଇପାରେ କିନ୍ତୁ ମନୁଷ୍ୟ ପ୍ରାସାଦ ଓ କୁଟୀରକୁ ସମଜ୍ଞାନ କରିପାରେ ନାହିଁ । ଉଚ୍ଚ ସହିତ ନତ ହୋଇ ରହିବା ଉନ୍ନତିର ଲକ୍ଷଣ, ମୟୂର ଜଳଦର ଗର୍ଜନ ଶୁଣି ନୃତ୍ୟକରେ । କବିଙ୍କ ଭାଷାରେ—

''ଭେକର ବିକଟ ରବେ ନ ଥାଏ ମୋ କର୍ଣ୍ଣ
ନାଚୁଥାଏ ଉର୍ଦ୍ଧ୍ୱେ ଶୁଣି ଜଳଦ ଗର୍ଜନ
ନୀଚର କୁବାଣୀ ସହି ଉଚ୍ଚର ଭର୍ତ୍ସନା
ହିତ ମଣି କର କିହେ ଉଚ୍ଚର ଅର୍ଚ୍ଚନା ?''

(ଗଙ୍ଗାଧର ଗ୍ରନ୍ଥାବଳୀ— ପୃ.୨୪୭)

ମନୁଷ୍ୟ କିନ୍ତୁ ନୀଚ ବ୍ୟକ୍ତିର ଖରାପ କଥା ଶୁଣି ବିବ୍ରତ ହୋଇପଡ଼େ ଓ ଉଚ୍ଚ ବ୍ୟକ୍ତିର ଭର୍ତ୍ସନାକୁ ସହଜରେ ଗ୍ରହଣ କରି ନେଇପାରେନାହିଁ । ଏ କବିତାରେ କେବଳ ଜଣେ ରାଜାଙ୍କର କ୍ଷୁଦ୍ରତା ନୁହେଁ ବରଂ ନିଜକୁ ଅନ୍ୟଠାରୁ ଉତ୍କୃଷ୍ଟ ମଣୁଥିବା ମନୁଷ୍ୟ ଜାତିର କ୍ଷୁଦ୍ରତା ପ୍ରଦର୍ଶିତ ହୋଇଛି ।

'ଗର୍ବ' କବିତାରେ ମଧ୍ୟ ଅନୁରୂପଭାବରେ ଗର୍ବୀ ମଣିଷକୁ ସେ ପରିହାସ କରିଛନ୍ତି । ଯେ ଘୁଷୁରି ଉପରେ ବସି ଅଶ୍ୱାରୋହୀଙ୍କଠାରୁ ନିଜକୁ ଉନ୍ନତ ମଣେ, ସେ କେତେ କ୍ଷୁଦ୍ର ତଥା ଅପାଙ୍‌କ୍ତେୟ ତାହା ଏହି କବିତାରୁ ଜଣାଯାଏ ।

'ପ୍ରେତର ଅନୁତାପ' କବିତାରେ ଅପକର୍ମରତ ପୁରୋହିତ ସମାଜ ବିରୁଦ୍ଧରେ କବି ଲେଖନୀ ଚାଳନା କରିଛନ୍ତି । ରାଜାରାଜୁଡ଼ାଙ୍କ ସ୍ତାବକ ତଥା କଥିତ କେତେକ ସାହିତ୍ୟିକ ବିନା ଅଧ୍ୟୟନ ଓ ସାଧନାରେ କିଭଳି କବି ପଦବାଚ୍ୟ ହୁଅନ୍ତି ତା'ର ଦୃଷ୍ଟାନ୍ତ—

''ମାଗଣା ଭୂଷଣ ନେଇ କେତେ ସଭାସଦ
ପାଇଗଲେ ତହିଁ ସଙ୍ଗେ କବିଙ୍କର ପଦ ।'' (ଗଙ୍ଗାଧର ଗ୍ରନ୍ଥାବଳୀ)

ଉପଦେଶାତ୍ମକତା ଗଙ୍ଗାଧର ସାହିତ୍ୟର ପ୍ରତି ପଙ୍‌କ୍ତିରେ ବିଦ୍ୟମାନ । ଉଦାହରଣ ସାହାଯ୍ୟରେ ଚିରନ୍ତନ ସତ୍ୟର ପ୍ରଖ୍ୟାପନ କରି କବି ସତେଯେପରି ସମାଜ ସଂସ୍କାରର ଗୁରୁଦାୟିତ୍ୱ ନିଜ ମଥା ଉପରକୁ ଟେକି ନେଇଛନ୍ତି । 'ତପସ୍ୱିନୀ'ରେ କର୍ମଫଳର ଗୁରୁତ୍ୱ ପ୍ରଦର୍ଶନ କରି ସେ କୁହନ୍ତି—

''କର୍ମଫଳ ପ୍ରାଣୀ ଅବଶ୍ୟ ଭୁଞ୍ଜଇ କେ କରିପାରିବ ଆନ
ଶତ ପ୍ରତିରୋଧ ଲଂଘି ପଶିଥାଏ କର୍ମଫଳ ବଳବାନ ।''

(ଗଙ୍ଗାଧର ଗ୍ରନ୍ଥାବଳୀ)

'ପ୍ରଣୟବଲ୍ଲରୀ'ରେ–

''ଯା ମନ ଯେପରି ତା ପାଇଁ ସେପରି
ଫଳ ଥୋଇଥାଏ ବିଶ୍ୱ
ଉଚ୍ଚମନା ଉଚ୍ଚେ ଅମୃତ ଲଭଇ
ନୀଚମନା ପାଏ ବିଷ ।''

(ଗଙ୍ଗାଧର ଗ୍ରନ୍ଥାବଳୀ– ପୃ.୭୧)

'ଇନ୍ଦୁମତୀ'ରେ ଏହାର ଏକ ଅନୁପମ ଉଦାହରଣ–

''ମହତ ଜନର ଦୟା ସବୁଠାରେ ସମେ ହୁଏ ବିତରିତ
କର୍ତ୍ତକ ମସ୍ତକୁଁ ନ କରଇ ତରୁ ସ୍ୱଚ୍ଛାୟା ଅପସାରିତ ?''

(ଗଙ୍ଗାଧର ଗ୍ରନ୍ଥାବଳୀ– ପୃ.୧୬୫)

'ଇନ୍ଦୁମତୀ'ର ଶେଷ ପର୍ଯ୍ୟାୟରେ କର୍ମଫଳ, ମୃତ୍ୟୁ, ଯମ କୀର୍ତ୍ତି ତଥା କାଳର ଗୁରୁତ୍ୱ ସଂପର୍କରେ ଯଥେଷ୍ଟ ଉପଦେଶ ପ୍ରଦତ୍ତ ହୋଇଛି । ଅର୍ଘ୍ୟଥାଳୀର 'ବିଦୁର ପ୍ରଜାଗର' କବିତାରେ ଏହି ଧରଣର ଉପଦେଶାତ୍ମକତା ଯଥେଷ୍ଟ–

''ରାଜା ହୋଇ ନାହିଁ ଯାର ଅପଯଶେ ଡର
ଦରିଦ୍ର ଯଶସ୍ୱୀ ତାହାଠାରୁ ଶ୍ରେଷ୍ଠତର ।''

(ଗ୍ରନ୍ଥାବଳୀ– ପୃ.୨୭୫)

ଏହା ତପସ୍ୱିନୀରେ ରାଜଧର୍ମ ସଂପର୍କୀୟ ବିଶେଷ ଉଲ୍ଲେଖର ପ୍ରତିଛବି ଭଳି ମନେହୁଏ । ସ୍ୱର୍ଗ ନିଃଶ୍ରେଣୀର ସବୁଠାରୁ ଉର୍ଦ୍ଧ୍ୱରେ ଥିବା ପାବଚ୍ଛଟି ହେଉଛି ରାଜପଦ, ଯହିଁରୁ ଥରେ ଖସିପଡ଼ିଲେ ତଳିତଳାନ୍ତ ହେବାକୁ ପଡ଼ିଥାଏ ।

'ଚାଣକ୍ୟ ଶ୍ଳୋକ'ରେ–

''ସର୍ପକ୍ରୁର ଖଳକ୍ରୁର ସର୍ପାତ୍ କ୍ରୁରତର ଖଳ
ମନ୍ତ୍ରୌଷଧି ବଶତେ ସର୍ପ ଖଳ କେନ ନିବାର୍ଯ୍ୟତେ ।''

ଭଳି ନିତ୍ୟ ନୂତନ ଶ୍ଳୋକ ବାରମ୍ବାର ଅନେକ କବି ଲେଖକଙ୍କୁ ଅନୁରୂପ ପଦ ରଚନା କରିବାକୁ ଉଦ୍‌ବୁଦ୍ଧ କରିଛି । ମଧୁସୂଦନ ରାଓଙ୍କ 'ଦୃଷ୍ଟାନ୍ତମାଳା' ଏହାର ଏକ ସୁନ୍ଦର ଉଦାହରଣ । ଗଙ୍ଗାଧରଙ୍କର 'ବିଦୁର ପ୍ରଜାଗର' କବିତାରେ–

''ସର୍ପ ସଙ୍ଗେ ଖଳ ସଙ୍ଗ ଅଟଇ ସମାନ
ସମୟରେ ତାଙ୍କ ଲାଗି ନାଶ ଯାଏ ପ୍ରାଣ ।''

(ଗଙ୍ଗାଧର ଗ୍ରନ୍ଥାବଳୀ– ପୃ.୨୭୫)

ଏହି କବିତାରେ ଧର୍ମବଳ, ବୁଦ୍ଧି, ତ୍ୟାଗ, ଉଦାରତା, ବିନୟ ଇତ୍ୟାଦିର ବୈଶିଷ୍ଟ୍ୟ ଉପଦେଶାତ୍ମକ ଶୈଳୀରେ ରୂପାୟିତ କରାଯାଇଛି । କବିର, ରହିମ, ଦାଦୁ, ନାନକ ପ୍ରଭୃତି ସନ୍ଥକବିମାନଙ୍କର ସମଗ୍ର ମନୁଷ୍ୟ ସମାଜ ପ୍ରତି ଥିବା ଅନୁରାଗ ଯେପରି ସେମାନଙ୍କ ନୀତିବଚନ ଭିତରେ ପ୍ରତିଫଳିତ ସେହିପରି ଦରିଦ୍ରତା ପଙ୍କପୂର୍ଣ୍ଣ ଜଞ୍ଜାଳ ଜଳଦ ଜଳରେ ଆବିଳ ଉଦର, କବି ଗଙ୍ଗାଧରଙ୍କର ସମାହିତ ସମାଜ ଦୃଷ୍ଟି ଏତାଦୃଶ ଉପଦେଶରାଜି ଚିରନ୍ତନ ସାହିତ୍ୟର ପର୍ଯ୍ୟାୟଭୁକ୍ତ ହୋଇଯାଇଛି । କଥା କଥାକେ ସାଧାରଣ ମଣିଷ ଏହି ଧରଣର କବିତାରୁ କିଛି ଉଦ୍ଧାର କରି ନିଜ ମତର ସାର୍ଥକତା ପ୍ରତିପାଦନ କରିବା ସହିତ ଜୀବନର ଦୁର୍ଦ୍ଦିନକୁ ସହ୍ୟ କରିବାର ଶକ୍ତି ସଂଚୟ କରିପାରୁଛି ।

'ପଞ୍ଚାୟତ' କବିତାରେ ପଞ୍ଚବାୟୁ, ପଞ୍ଚଗଙ୍ଗା, ପଞ୍ଚକୋଷ, ପଞ୍ଚପ୍ରାଣ, ପଞ୍ଚଗବା, ପଞ୍ଚଶର, ପଞ୍ଚମୁଖ ଓ ପଞ୍ଚ ଇନ୍ଦ୍ରିୟର ଉଦାହରଣ ଦିଆଯାଇ ସମାଜର ଶାନ୍ତିପୂର୍ଣ୍ଣ ସହାବସ୍ଥାନପାଇଁ ପଞ୍ଚାୟତର ଆବଶ୍ୟକତା ଉପରେ ଗୁରୁତ୍ୱ ଦିଆଯାଇଛି । ଇଂରେଜ ଶାସନରେ କଳି ଧର୍ମ ଆସନରେ ଉପବିଷ୍ଟ ହୋଇଛି, ତେଣୁ–

''ଅଳ୍ପ ଅଳ୍ପ ଶିକ୍ଷା ଲଭି କେତେ କ୍ରୂର ଜନ
ମିଥ୍ୟା ଜାଲେ କରୁଛନ୍ତି ଅର୍ଥ ଅରଜନ
ମିଥ୍ୟା ଅସ୍ତ୍ର ତୀକ୍ଷ୍ଣ କରି ଅଦାଲତ ଶାଣେ
ମାରୁଛନ୍ତି ଅଶିକ୍ଷିତ ପରଜାଙ୍କ ପ୍ରାଣେ
x x x x
ଶିକ୍ଷା ଫଳ ହେଉଅଛି ମିଥ୍ୟା ପ୍ରସାରଣ
ସତ୍ୟ ମୁଖେ ପ୍ରହାରଣ ସାଧୁ ପ୍ରତାରଣ ।''

(ଗଙ୍ଗାଧର ଗ୍ରନ୍ଥାବଳୀ– ପୃ. ୨୭୧-୨୭୨)

ଏହି କବିତାରେ 'ତାକୁ ମଧ ବୋଲିଥାନ୍ତି ଧର୍ମ ଅବତାର'ଭାବନାହିଁ ରୂପାୟିତ ହୋଇଛି । ଏହି ତଥାକଥିତ 'ଧର୍ମ ଅବତାର'ମାନଙ୍କ ପ୍ରକୃତ ସ୍ୱରୂପ ଉଦ୍‌ଘାଟନ ନିମିତ୍ତ ପଞ୍ଚାୟତହିଁ କ୍ଷମ ହୋଇପାରିବ ବୋଲି ତାଙ୍କର ମତ ।

ଖଦ୍ୟୋତର ଖେଦ, ଅନ୍ଧକାରର ଆତ୍ମପ୍ରସାଦ, ବାକ୍ୟବୀର ଓ କର୍ମବୀର, ସଙ୍ଗଫଳ, ପରିଶ୍ରମ, କର୍ମଗୁଣ, ଗଣେଶଙ୍କ ଆତ୍ମକଥା ପ୍ରଭୃତିରେ ନୀତିଶିକ୍ଷା ଓ ସମାଜତାତ୍ତ୍ୱିକ ଦୃଷ୍ଟିଭଙ୍ଗୀ ଗୁରୁତ୍ୱପୂର୍ଣ୍ଣ । 'ଖଦ୍ୟୋତର ଖେଦ' କବିତାରେ–

''ନ କର ମାନବ କ୍ଷୁଦ୍ର ଜୀବେ ଉପହାସ
ନିଜର ଜୀବନ-ଜ୍ୟୋତି କର ପରକାଶ ।''

(ଗଙ୍ଗାଧର ଗ୍ରନ୍ଥାବଳୀ)

ପ୍ରକୃତ 'ନର'ର ଲକ୍ଷଣ ବର୍ଣ୍ଣନା କରି ଗଙ୍ଗାଧର 'ମହିମା' କବିତା ରଚନା କରିଛନ୍ତି । ପ୍ରକୃତ ମନୁଷ୍ୟ ହେବାକୁ ହେଲେ ତାକୁ ଧର୍ମାନୁସାରୀ, ସମାଜାନୁସାରୀ

ତଥା ବିବେକାନୁସାରୀ ହେବାକୁ ପଡ଼ିବ । ଯେଉଁଭଳି ଉଦାର ଚରିତ୍ର ସୃଷ୍ଟିକରି ସେ ଭାରତୀୟ ପରଂପରାର ଉତ୍କର୍ଷ ପ୍ରଦର୍ଶନ କରିଛନ୍ତି, ସମୂହର ସ୍ୱାର୍ଥପାଇଁ ବ୍ୟକ୍ତି ସ୍ୱାର୍ଥକୁ ତ୍ୟାଗ କରିବାର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । 'ମହିମା' କବିତାରେ ତା'ର ଏକ ଦୀର୍ଘ ବିବରଣୀ ପ୍ରଦତ୍ତ ହୋଇଛି ।

"ଧର୍ମ ମହାତରୁ ପକ୍ଷରେ ମାନବ
ହୃଦୟ-କ୍ଷେତ୍ର ଉର୍ବର
ସୁଶିକ୍ଷା-ଲଂଗଳେ ଚଷି ଧର୍ମବୀଜ
ତହିଁରେ ରୋପଣ କର ।
ଆବଶ୍ୟକ ତହିଁ ସଦାଚାର ଜଳ
ସତ ସଙ୍ଗ ଆଳବାଳ
ବାହାରଇ ଶାଖା ବିନୟ କରୁଣା
ସୌଜନ୍ୟ ସତ୍‌କର୍ମ ଡାଳ ।
ଈଶ୍ୱର ଭକତି ପର ଉପକାର
ପଲ୍ଲବେ ହୁଏ ସୁନ୍ଦର
ଫୁଟଇ ପବିତ୍ର ଶୁଭ୍ର ଦିବ୍ୟ ଫୁଲ
ତା ବାସ ଅବିନଶ୍ୱର ।"

(ଗଙ୍ଗାଧର ଗ୍ରନ୍ଥାବଳୀ– ପୃ.୨୮୮)

'ପଦ୍ମିନୀ' କବିତାରେ ମଧ୍ୟ ଉତ୍ତମ ନରର ଲକ୍ଷଣ ସଂପର୍କରେ ବ୍ୟାଖ୍ୟା କରାଯାଇଛି ।

ପରଂପରା ପ୍ରତି ଅନୁରକ୍ତିହିଁ ଆଧୁନିକତାର ଦୃଷ୍ଟିଭଂଗୀକୁ ଔଦାର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ପ୍ରଦାନ କରିଥାଏ । ଏହି ପରଂପରାପ୍ରୀତି ଲେଖକକୁ ସମାଲୋଚକର ଭୂମିକା ଗ୍ରହଣ କରିବାକୁ ପ୍ରବର୍ତ୍ତାଇଥାଏ । ଏହିଭଳି ଆବେଗ ଓ ମୂଲ୍ୟବୋଧଭିତ୍ତିକ ଜୀବନ ଦୃଷ୍ଟିକୁ ଏକୀଭୂତ କରି ଗଙ୍ଗାଧରଙ୍କ ସାହିତ୍ୟର ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ପାଠକର ଦୃଷ୍ଟି ଆକର୍ଷଣ କରିଥାଏ ।

ସୃଷ୍ଟିଶୀଳ ଲେଖକ ଗଙ୍ଗାଧର ଉତ୍କର୍ଷତାର ସୋପାନ ଆରୋହଣ କରି ସମଗ୍ର ସମାଜକୁ ଅବଲୋକନ କରିଛନ୍ତି । ଯେଉଁଠି ତାଙ୍କର ମନଃପୂତ ହୋଇନାହିଁ ବା ଯେଉଁଠି ସେ ପରଂପରାର ବିଚ୍ୟୁତି ଲକ୍ଷ୍ୟ କରିଛନ୍ତି ତାକୁ ସେ ପ୍ରତ୍ୟକ୍ଷ ବା ପରୋକ୍ଷ ଉପାୟରେ ବ୍ୟଙ୍ଗଜର୍ଜର କରିବାକୁ ପଛେଇନାହାନ୍ତି । ନିଜର ଜୀବିକା ପ୍ରତି ସଚେତନ ରହି ଜୀବନ-ଦୃଷ୍ଟିକୁ ଉପେକ୍ଷା କରିନାହାନ୍ତି ବରଂ ସତ୍‌ସାହିତ୍ୟିକର ସାମାଜିକ କର୍ତ୍ତବ୍ୟ ପାଳନରେ ସମର୍ଥ ହୋଇଛନ୍ତି ।

---

# ପଲ୍ଲୀକବି ନନ୍ଦକିଶୋର : ଏକ ମୂଲ୍ୟାୟନ

ଊନବିଂଶ ଶତକର ଶେଷ ପାଦରେ ସମଗ୍ର ଭାରତୀୟ ସାହିତ୍ୟରେ ନବଜାଗରଣ ସ୍ୱର ଅନୁରଣିତ ହୋଇଥିଲା । ପାଶ୍ଚାତ୍ୟ ସଂସର୍ଗଜନିତ ନୂତନ ରୁଚି ଏହି ସମୟର ସ୍ରଷ୍ଟା ପୁରୁଷମାନଙ୍କୁ ସାମଗ୍ରିକଭାବରେ ପ୍ରଭାବିତ କରିଥିଲା । ସେହି ସମୟରେ ଓଡ଼ିଆ ସାହିତ୍ୟ ରାଜ୍ୟରେ ନୂତନଭାବରେ ପ୍ରବନ୍ଧ, ଶୋକ-କବିତା, ଚତୁର୍ଦ୍ଦଶାପଦୀ-କବିତା, ସମ୍ବୋଧନ-ଗୀତିକା, ଦୁଃଖାନ୍ତ-କାବ୍ୟ, ରମ୍ୟ-ରଚନା ଆଦି ରଚିତ ହେବା ଆରମ୍ଭ ହୋଇଥିଲା । ରାଧାନାଥଙ୍କର ପ୍ରାଚ୍ୟ-ପାଶ୍ଚାତ୍ୟ ସମନ୍ୱୟରେ ରଚିତ ସାହିତ୍ୟ କୃତି, ଉନ୍ନତ ମୂଲ୍ୟବୋଧ ତଥା ଈଶ୍ୱରାନୁରକ୍ତିର ସମନ୍ୱିତ ମଧୁସୂଦନଙ୍କ ରଚନାବଳୀ, ବ୍ୟକ୍ତିଗତ ଦୁଃଖ-ଦୁର୍ଦ୍ଦଶାକୁ ସାର୍ବଜନୀନଭାବରେ ପ୍ରକାଶ କରିବାରେ ସମର୍ଥ ଫକୀରମୋହନଙ୍କ କାବ୍ୟ-କବିତା, ଭାରତୀୟ ପରଂପରାର ବାହକ ଗଙ୍ଗାଧରଙ୍କ କାବ୍ୟ ଶୈଳୀ, ଏ ସମସ୍ତ ସେ ସମୟରେ କିଶୋର ନନ୍ଦକିଶୋରଙ୍କୁ ପ୍ରଭାବିତ କରିଥିଲା । ବାଗ୍ମୀ ବିଶ୍ୱନାଥଙ୍କର ଓ ମଧୁସୂଦନ ରାଓଙ୍କର ବ୍ୟକ୍ତିତ୍ୱ ମଧ୍ୟ ଏହି ସ୍ରଷ୍ଟାଙ୍କ କୈଶୋରକୁ ବହୁଭାବରେ ଅନୁପ୍ରାଣିତ କରିଥିଲା ।

୧୮୭୫ ଡିସେମ୍ବର ୨୨ ତାରିଖରେ ଜନ୍ମ ଏହି ସ୍ରଷ୍ଟାପୁରୁଷଙ୍କ ବାଲ୍ୟଜୀବନ ଖୁବ୍ ଆନନ୍ଦମୟ ଥିଲା । ପିଉସୀ ନାନୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେ ଚାହାଳି ଓ ଉଚ୍ଚପ୍ରାଥମିକ ଶିକ୍ଷା ଶେଷକରି ତତ୍‌କାଳୀନ କଟକର ଟାଉନ୍ ଭିକ୍ଟୋରିଆ ସ୍କୁଲ (ପରବର୍ତ୍ତୀ କାଳରେ ଭକ୍ତମଧୁ ବିଦ୍ୟାପୀଠ)ରେ ମାଟ୍ରିକ୍ ପଢ଼ିଲେ । କିନ୍ତୁ ତତ୍‌କାଳୀନ ଶିକ୍ଷକ ବିଶ୍ୱନାଥ କର ଓ ପ୍ରଧାନଶିକ୍ଷକ ମଧୁସୂଦନ ରାଓଙ୍କ ପ୍ରଭାବରେ କାଳେ ସେ ବ୍ରାହ୍ମ ହୋଇଯିବେ ସେହି ଭୟରେ ତାଙ୍କର ଅଭିଭାବକମାନେ ତାଙ୍କୁ କେନ୍ଦ୍ରାପଡ଼ା ନେଇ ସେଠି ସ୍କୁଲରେ ପାଠ ପଢ଼ାଇଥିଲେ । ପୁନଶ୍ଚ ରେଭେନ୍‌ସାରେ ଆଇ.ଏ. ଶ୍ରେଣୀର ଛାତ୍ର ଥିବା ସମୟରେ ତାଙ୍କର ବିବାହ ମଧ୍ୟ କରାଇ ଦେଇଥିଲେ । ଦୀର୍ଘଦିନ ତାଙ୍କର ପତ୍ନୀ ଗ୍ରାମରେ ରହିବା ପରେ ଗୁରୁଜନମାନଙ୍କର ଅବାଧ ହୋଇ ନନ୍ଦକିଶୋର ତାଙ୍କୁ କଟକ ନେଇଆସିଥିଲେ । ବି.ଏ. ପାସ୍ ପରେ ସେ B.T. ପଢ଼ିବାକୁ କଲିକତା ଗଲେ ଓ ସେଠାରୁ ଫେରି ସେହି ଭିକ୍ଟୋରିଆ ସ୍କୁଲରେ ମାସିକ ତିରିଶି ଟଙ୍କା ବେତନରେ ଶିକ୍ଷକତା ଆରମ୍ଭ କରିଥିଲେ । ତା'ପରେ ସେ ସ୍କୁଲ ଇନ୍‌ସପେକ୍ଟର ହେଲେ ଓ ପରେ

ବାଲେଶ୍ୱର ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ହୋଇଥିଲେ । ମାତ୍ର ୩୫ ବର୍ଷ ବୟସରେ ସେ ବହୁମୂତ୍ର ରୋଗରେ ପୀଡ଼ିତ ହୋଇ ବହୁତ ଭାଙ୍ଗିପଡ଼ିଥିଲେ । ୧୯୨୮ରେ ତାଙ୍କର ଦେହାନ୍ତ ହୋଇଥିଲା ।

କିନ୍ତୁ ନନ୍ଦକିଶୋରଙ୍କର ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଆଲୋଚନାପାଇଁ ଏଠାରେ ଅବକାଶ ନାହିଁ । କବି ନନ୍ଦକିଶୋରଙ୍କ ସ୍ରଷ୍ଟା-ମାନସର ବୈଶିଷ୍ଟ୍ୟ ଆକଳନ ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

## ନନ୍ଦକିଶୋରଙ୍କ ସମକାଳୀନ ସମାଜ :

ଊନବିଂଶ ଶତକର ଶେଷ ଓ ବିଂଶ ଶତକର ଆରମ୍ଭରେ ଦେଶରେ ସମାଜ ସଂସ୍କାରର ସ୍ରୋତ ପ୍ରବାହିତ ହେଉଥିଲା । କେବଳ ଇଂରାଜୀ ଶିକ୍ଷା ଜନିତ ରୁଚି ପରିବର୍ତ୍ତନ ନୁହେଁ ଭାରତୀୟ ଧର୍ମପରମ୍ପରାରେ ମଧ୍ୟ ନୂତନ ଆଲୋଡ଼ନ ସୃଷ୍ଟି ହୋଇଥିଲା । ରାଜାରାମମୋହନଙ୍କ ବ୍ରାହ୍ମ ସମାଜ, ମହର୍ଷି ଦୟାନନ୍ଦଙ୍କର ଆର୍ଯ୍ୟ ସମାଜ, ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦଙ୍କର ରାମକୃଷ୍ଣ ମିଶନ, ଆନିବେସାନ୍ତଙ୍କର ଥିଓସୋଫିକାଲ ସୋସାଇଟି ପ୍ରଭୃତି ଜଗତରୁ କୁସଂସ୍କାର ଦୂର କରି ଧର୍ମକୁ ଆଚରଣ-ପ୍ରଧାନ କରିବାର ସାଧୁ ପ୍ରୟାସ କରିଥିଲେ । ଶିକ୍ଷା ଓ ତଦ୍‌ଜନିତ ଉଦାରତା ଭାରତୀୟ ଜନସମାଜକୁ ପ୍ରାଚୀନତାର ଗଣ୍ଡିରୁ ମୁକ୍ତ କରିଥିଲା । ପତ୍ରପତ୍ରିକା ପ୍ରକାଶନ, ବିଭିନ୍ନ ସଭାସମିତି ତଥା ସ୍ୱେଚ୍ଛାସେବୀ ଅନୁଷ୍ଠାନ ମାଧ୍ୟମରେ ପାରସ୍ପରିକ ସମ୍ପର୍କ ପ୍ରତିଷ୍ଠା ହେବା ସହିତ ଏକ ସଚେତନ ଲେଖକ ପାଠକ ଗୋଷ୍ଠୀ ସୃଷ୍ଟି ହୋଇଥିଲା । ପାଠ୍ୟପୁସ୍ତକ ପ୍ରକାଶନ, ଅନୁବାଦ, ଅନୁସରଣ, ରଚନାରେ ନୂତନ ଶୈଳୀର ପ୍ରବର୍ତ୍ତନ ପ୍ରଭୃତି ସେ ସମୟର ଯୁବମାନସକୁ ପ୍ରଭାବିତ କରିବାରେ କ୍ଷମ ହୋଇଥିଲା । ଏମାନେ ଅନ୍ଧବିଶ୍ୱାସର ପରିପନ୍ଥୀ ଥିଲେ ଓ ଉଦାର ମନୋଭାବାପନ୍ନ ଥିଲେ । ନନ୍ଦକିଶୋର ଏହି ସମୟରେ ଉତ୍ତରାଧିକାର ସୂତ୍ରରେ ଏକ ବିରାଟ କାବ୍ୟପରମ୍ପରା ସହିତ ଆଧୁନିକ ଯୁଗ ରୁଚିର ଚାରଣଭୂମି ପାଇବାପାଇଁ ସମର୍ଥ ହୋଇଥିଲେ । ନନ୍ଦକିଶୋରଙ୍କ ସମକାଳୀନ ବିଶିଷ୍ଟ ବିଦ୍ୱାନ ସମାଜସେବୀ ନେତା ତଥା ଲେଖକମାନେ ହେଲେ କୁଳବୃଦ୍ଧ ମଧୁସୂଦନ ଦାସ, ଭାଷାତତ୍ତ୍ୱ ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜ, ମୁକୁର ସମ୍ପାଦକ ବ୍ରଜସୁନ୍ଦର ଦାସ । ଶିଳ୍ପୀ ବିଦ୍ୟାଧର ବର୍ମା, କବି ପଦ୍ମଚରଣ ପଟ୍ଟନାୟକ ଓ ଜ୍ଞାନୀନ୍ଦ୍ର ବର୍ମା, ଐତିହାସିକ ଜଗବନ୍ଧୁ ସିଂହ ପ୍ରଭୃତିଙ୍କ ସହିତ ତାଙ୍କର ସଦ୍‌ଭାବ ଥିଲା । ଫଳରେ ସମୟର ସ୍ୱର-ବୈଚିତ୍ର୍ୟ ତାଙ୍କ ସାହିତ୍ୟ ସୃଷ୍ଟିରେ ପ୍ରତିଫଳିତ ହୋଇପାରିଥିଲା । ପଲ୍ଲୀ ଜୀବନର ରୂପକାରଭାବରେ ନନ୍ଦକିଶୋର ଅଶେଷ ଖ୍ୟାତିର ଅଧିକାରୀ । ତାଙ୍କର କବିତାଗୁଡ଼ିକ ହେଉଛି ପଲ୍ଲୀଚିତ୍ର, ନିର୍ଝରିଣୀ,

କାକ ବାରତା, ଚାରୁଚିତ୍ର, ବସନ୍ତ କୋକିଳ, ଜେମାଦେଈ, ନାନାବାୟା ଗୀତ, ପ୍ରଭାତ ସଙ୍ଗୀତ, ସନ୍ଧ୍ୟା ସଙ୍ଗୀତ, ନବବର୍ଷା ଭାବନା, ନିର୍ମାଲ୍ୟ ପ୍ରଭୃତି । ସୀତା ବନବାସ, ଶର୍ମିଷ୍ଠା ଓ କୃଷ୍ଣାକୁମାରୀ ନାମକ ତିନୋଟି କାବ୍ୟ ଗ୍ରନ୍ଥର ସେ ରଚୟିତା । ଏକମାତ୍ର ଉପନ୍ୟାସ 'କନକଲତା', ଏକମାତ୍ର ଗଳ୍ପ 'ଲକ୍ଷ୍ମୀ' ସହିତ ଉତ୍କଳ ସାହିତ୍ୟରେ ପ୍ରକାଶିତ ତାଙ୍କର ଏକାଧିକ ପ୍ରବନ୍ଧ ତାଙ୍କର ଗଦ୍ୟ ସାହିତ୍ୟ କ୍ଷେତ୍ରରେ ସଫଳ ଲେଖନୀ ଚାଳନାର ଫଳଶ୍ରୁତି ।

## ପଲ୍ଲୀ ପ୍ରୀତିର ନିଦର୍ଶନ :

ଉତ୍କଳର ପଲ୍ଲୀ ସ୍ୱଚକ୍ଷୁରେ ଦେଖିନଥିବା ବ୍ୟକ୍ତି ଯଦି ନନ୍ଦକିଶୋରଙ୍କ ପଲ୍ଲୀଜୀବନଭିତ୍ତିକ କବିତାରାଜି ପାଠ କରେ ସେ ତା'ର ରୂପରସ ଆସ୍ୱାଦନ କରିପାରିବ । ପଲ୍ଲୀବାସୀଙ୍କର ଦୁଃଖ-ସୁଖ, ଅଶ୍ରୁ-ଆବେଗ, ଜୟ-ପରାଜୟ, ସଫଳତା-ବିଫଳତାର ଏତେ ଟିକିନିଖି ଚିତ୍ର ହୁଏତ ଆଉ କେଉଁ କବି ଏତେ ଜୀବନ୍ତଭାବେ ରୂପ ଦେଉଛନ୍ତି ଏକଥା କହିହେବନାହିଁ । ଗାଁଦାଣ୍ଡ, ଗାଁମହାଜନ, ନୂଆବୋହୂ, ଅବଧାନ, ନଈପଠା, ଆମ୍ବବଣ, ପୋଖରୀତୁଠ, ରଜଦୋଳି, କମାରଶାଳ, ଚାଟଶାଳୀ, ଢିଙ୍କିଶାଳଠାରୁ ଶାଶୁ-ବୋହୂ ସଂପର୍କ, ବୁଢାଙ୍କର ତରୁଣୀ କନ୍ୟା ବିବାହ ପର୍ଯ୍ୟନ୍ତ ସମସ୍ତ ବର୍ଣ୍ଣନା ତାଙ୍କ ଲେଖନୀରେ ଜୀବନ୍ତ । ଚାଳରେ କୁଆ ବୋବାଇବା ଆମ ପରମ୍ପରାରେ ଅତିଥି ଆଗମନର ପୂର୍ବ ସଂକେତ ଯାହା ନନ୍ଦକିଶୋର ତାଙ୍କ ରଚନାରେ ଅବିକଳଭାବରେ ପ୍ରୟୋଗ କରିଛନ୍ତି । ଲୋକକଥାର ଚରିତ୍ର ସମୂହ ଯଥା– ସାଧବଝିଅ କଥା, ଚକୁଳିଆପଣ୍ଡା କଥା, ବାଇଚଢ଼େଇ କଥା, ପୁରାଣର ବିଶ୍ୱାମିତ୍ର ଓ ତାଡ଼କା ରାକ୍ଷସୀ ପ୍ରସଙ୍ଗ, ଭୀମ ଦୁର୍ଯ୍ୟୋଧନ ଓ ଶ୍ରୀକୃଷ୍ଣ ଅର୍ଜୁନ ପ୍ରସଙ୍ଗ ମଧ୍ୟ ତାଙ୍କ କବିତାର କଥାବସ୍ତୁ ପାଲଟିଯାଇଛି । 'ବର୍ଷା' କବିତାରେ ଗ୍ରାମ୍ୟ କୃଷକର ଦୈନନ୍ଦିନ ଜୀବନର ରୂପାୟନ–

''ବିଲ କାମ ସାରି ଗୀତ ଗାଇ ଗାଇ ବାହୁଡ଼ଇ ଚଷା ଘରେ
ପୋଡ଼ପିଠା ମୁଢ଼ି ଖାଇ ମହା ସୁଖେ ବସିବ ଚୁଲିମୁଣ୍ଡରେ ।''

ତାଙ୍କର 'କାକ ବାରତା' କବିତା ସମ୍ପର୍କରେ ଆଲୋଚକ ନଟବର ସାମନ୍ତରାୟ କହନ୍ତି– ''କାକ ବାରତା ନବୀକୃତ ଓଡ଼ିଆ ଗୀତି-କବିତା ରାଜ୍ୟରେ ନବ ସ୍ୱାଧୀନତା ଉପଭୋଗର ଏକ ଅକ୍ଷୟ ସ୍ମୃତିସ୍ତମ୍ଭ । ଭାଷା, ଭାବ, ବିଷୟସଂଯୋଜନା ଓ ଉପସ୍ଥାପନା ସର୍ବୋପରି ସୃଷ୍ଟି ପରିକଳ୍ପନା– ଏ ପ୍ରତ୍ୟେକ ବିଷୟ ବିଚାର କଲେ 'କାକ କବିତା'ର ଏ ନବ ସ୍ୱାଧୀନତା ଏକ ଏକ ପରମ ସୃଷ୍ଟିଗୌରବରେ ମହୀୟାନ ହୋଇଥିବାର ଆମେ ନିଶ୍ଚୟ ଅନୁଭବ କରିବୁ ।''

(ନନ୍ଦକିଶୋର ସାହିତ୍ୟ ସମୀକ୍ଷା, ପୃ.୧୦୯)

'ସନ୍ଧ୍ୟା ସଙ୍ଗୀତ' କବିତା ସଂକଳନର 'ବିରୂପା ତଟେ' କବିତାରେ କବିଙ୍କର କୈଶୋର ସ୍ମୃତି ଉଜ୍ଜୀବିତ ହୋଇଉଠିଛି । ବିରୂପା ତଟବର୍ତ୍ତୀ କବିଙ୍କ ଗ୍ରାମର ସୌନ୍ଦର୍ଯ୍ୟ କବିଙ୍କୁ ଯେତିକି ଉଲ୍ଲସିତ କରିଛି ମୃତା ମାତାଙ୍କର ସ୍ମୃତି ସେତିକି ବିଷାଦିତ କରିଛି । ଡାହାଣୀ, ଚିରଗୁଣୀ, ବାସୁଳେଈଙ୍କର ମଶାଲ ହାତରେ ଧରି ତୋଟାକୁ ଆଗମନ ପ୍ରଭୃତି ତାଙ୍କ ସ୍ମୃତିର ଗନ୍ତାଘରେ ଅକ୍ଷୟ ସମ୍ପଦ–

''କାନ୍ଦିଲେ ଜନନୀ ଡରାନ୍ତି 'କାକଛୁଆ' ନାମରେ
କାକଛୁଆ କିନ୍ତୁ ନୟନେ ନ ଦେଖିଲି ମୁଁ ଥରେ ।''

'ପଲ୍ଲୀ ଚିତ୍ର'ର ପ୍ରସ୍ତାବନାରେ କବିଙ୍କର ପଲ୍ଲୀ ଜୀବନ ପ୍ରତି ମମତ୍ୱବୋଧ ପ୍ରକାଶିତ–

''ଶାନ୍ତିପୂର୍ଣ୍ଣ ଆରେ ପଲ୍ଲୀଗ୍ରାମ/ମଧୁରିମାମୟ ତୋର ନାମ
ନଗରୀର ରାଜସୁଖ ମୋର ପକ୍ଷେ ଘୋର ଦୁଃଖ
ତୋ ପ୍ରିୟ ପଲ୍ଲବମୟ ଅଛି/ଛାୟାତଳ ଆଶ୍ରିବାକୁ ମୁହିଁ ସଦାରଙ୍କ ।''

**ଜୀବନଦର୍ଶନ ଓ ବିଷାଦବୋଧ :**

କେବଳ ଅତୀତର ଆନନ୍ଦ ବିଜଡ଼ିତ ସ୍ମୃତି ଯେ କବିଙ୍କୁ କବିତା ରଚନାପାଇଁ ପ୍ରେରଣା ଦେଇଛି ତାହା ନୁହେଁ । ସେ ଆନନ୍ଦଠାରୁ ଆହୁରି ଉଜ୍ଜ୍ୱଳତର ହୋଇ ଦିଶିଛି ବିଷାଦର ମୁଖ । ଫୁଟିଲା ଫୁଲ ଦିନେ ଝଡ଼ିଯିବ, ବସନ୍ତ ପରେ ଗ୍ରୀଷ୍ମ ଆସିବ । ସୁଖର ଆଢୁଆଳରୁ ଦୁଃଖ ଉଙ୍କିମାରି ଚାହିଁବ । ହାସ୍ୟ ଅନ୍ତରାଳରେ ଅଶ୍ରୁର ପ୍ଲାବନ ଆସିବ, ଏ ବିଷୟରେ ନନ୍ଦକିଶୋର ସଚେତନ । ତେଣୁ ଅତୀତର ଶତସ୍ମୃତି ତାଙ୍କର ଚିତ୍ର ରାଜ୍ୟକୁ ବିଷାଦିତ ମଧ କରିଛି । 'ପ୍ରଭାତ ସଙ୍ଗୀତ'ର ବର୍ଷ ଗଲାଣି କବିତାରେ ନବବର୍ଷ ଦର୍ଶନରେ. କବିଙ୍କର ଭାବଧାରା–

''ପୀୟୂଷେ ଗରଳ ଢାଳିଦେଇ ଆହା ଗଲା ପୁରାତନ ବରଷ କାହିଁ
ସିନ୍ଧୁଗତ ସ୍ରୋତ ରକୁଣାର ରଥ ଗଲା କଥା ଆଉ ବାହୁଡ଼େନାହିଁ ।''

'ନାନାବାୟା ଗୀତ' ସଂକଳନର ବାଟୋଇ ଓ ନାଉରିଆ ଗୀତର ଟ୍ରାଜିକ୍ ଦୃଷ୍ଟିଭଙ୍ଗୀ ସତରେ ଅନନ୍ୟସାଧାରଣ । ମାନନୀୟ ସର୍ଜନଶୀଳତା ପିତୃ ହୃଦୟର ଭାବୋଚ୍ଛ୍ୱାସ ତଥା କବିଙ୍କର ପ୍ରତିଭା ଏକତ୍ରିତ ହୋଇ ଏ କବିତାକୁ ଏକ କ୍ଲାସିକ୍ ସୃଷ୍ଟିରେ ପରିଣତ କରିଛନ୍ତି । ଅଦିନ ମେଘ ଦର୍ଶନରେ କବିଙ୍କର ମନ ଆନନ୍ଦ ଉତ୍‌ଫୁଲ ହୋଇଛି ସତ, ପରମୁହୂର୍ତ୍ତରେ ତାଙ୍କର ମନ ବିଷାଦରେ ଭରିଯାଇଛି । ତା'ର କାରଣ ହେଉଛି–

"ବିଷାଦର ଛାୟା ପତିତ ହୁଅଇ ହୃଦ କ୍ଷେତ୍ରେ ଘନ ଘନ
ବିଗତ ଜନ୍ମର ସୁଖସ୍ମୃତି ଅବା ଅଲକ୍ଷେ ଦହେ ମୋ ମନ
କି ଅବା ଦୂରସ୍ଥ ପ୍ରାଣବନ୍ଧୁ କେହି ମନେକରେ କଥା ମୋର
ଗୁପତେ ମୋ ଆତ୍ମା ବିଦଗ୍ଧ କରୁଛି ସେ ସ୍ମୃତି ଗୁପତ ଚୋର ।"

ଅତୀତ ଜୀବନର ଛାୟାଚ୍ଛନ୍ନ ଛବି କବିଙ୍କୁ ଦୁଃଖୀ କରିଛି । ଶୈଶବର ସୁଖ ସୌଭାଗ୍ୟ ତାଙ୍କୁ ଯେତିକି ଧନୀ କରିଥିଲା, ଯୌବନରେ ସାଂସାରିକ ଦୁଃଖ, ରୋଗ ଶୋକ ତାଙ୍କୁ ଅନୁରୂପ ଦରିଦ୍ର କରିଦେଇଛି । ତେଣୁ 'ନିର୍ଝରିଣୀ'ର ଅତୃପ୍ତ ପ୍ରେମ କବିତାରେ ତାଙ୍କର ଦୃଷ୍ଟିଭଙ୍ଗୀ—

"ମେଣ୍ଟିବାର ନୁହଁଇ ମୋ ପ୍ରାଣ ଆଶା, ନୈରାଶ୍ୟ ସିନ୍ଧୁଜଳେ ଦେଇଛି ଝାସ
ନିୟତି ନୀରେ ଭାସିଗଲା ମୋ ଆଶା, ପ୍ରକାଶି ନ ପାରଇ ମୋ ଦୁଃଖ ଭାଷା
ଛିନ୍ନ ହୋଇଛି ମୂଳ ମୋ ସୁଖ ଦ୍ରୁମ, ପଡ଼ିଛି ବୃନ୍ତ ଝଡ଼ି ସୁଖ କୁସୁମ ।"

ସେହିଭଳି 'କାକ ବାରତା'ର କବି କବିତାର ପ୍ରାନ୍ତ ଭାଗରେ ଜରାମୃତ୍ୟୁ ସମ୍ପର୍କରେ ପାଠକବର୍ଗଙ୍କୁ ଚେତାବନୀ ଦେବାକୁ ପାସୋରି ନାହାନ୍ତି ।

**ସମାଜ ସଂସ୍କାର ଭାବନା :**

ସମୟର ପ୍ରାଣସ୍ପନ୍ଦନ ନନ୍ଦକିଶୋରଙ୍କ କବିତାରେ ଅନୁଭବ କରିବା ଯେକୌଣସି ପାଠକ ପକ୍ଷରେ ସହଜ । କାରଣ ସ୍ୱାଭାବିକଭାବରେ ଘଟଣାଟିଏ କହିବା ଭିତରେ ସେ ପ୍ରତିଷ୍ଠିତ ସମାଜର ଅଜସ୍ର ଅନ୍ଧବିଶ୍ୱାସ ମୂଳରେ କୁଠାରାଘାତ କରିଛନ୍ତି । ତତ୍‌କାଳୀନ ପ୍ରାୟ ପ୍ରତ୍ୟକ କବିଙ୍କ କବିତାରେ ସମାଜର ସ୍ଥିତାବସ୍ଥାକୁ ପରିବର୍ତ୍ତିତ କରିବାର କାମନା ଲକ୍ଷ୍ୟ କରାଯାଇପାରେ । ପଲ୍ଲୀ ଚିତ୍ରରେ ଏହି ଭାବନାର ସ୍ୱରୂପ—

"ଅସାବଧାନରେ କେହି ଯେବେ ଗାଭୀ ମାର୍ଜାର ମାରଇ ପ୍ରାଣେ
ଲୁଣ୍ଠନ୍ତି ବ୍ରାହ୍ମଣେ ତାଙ୍କ ଗଣ୍ଠିଧନ ପାପ ପ୍ରାୟଶ୍ଚିତ୍ତ ନାମେ
ପ୍ରାୟଶ୍ଚିତ ସେହି ବ୍ରାହ୍ମଣେ ପୁଛଇ କହ ଦେଇ ବକ୍ଷେ ହସ୍ତ
ତୁମ୍ଭେ କି କଦାପି କରିନାହଁ ପାପ ପୂର୍ଣ୍ଣ ପୁଣ୍ୟ ସତ୍ୟବ୍ରତ ?"

'ଉତ୍କଳ ସାହିତ୍ୟ'ରେ ଏକ ପ୍ରବନ୍ଧରେ ନନ୍ଦକିଶୋର ଲେଖିଛନ୍ତି— "ଯାହା ଉତ୍ତମ, ମଙ୍ଗଳଜନକ, ତାହା ସୁନ୍ଦର ଏବଂ ଯାହା ମାନବ ସମାଜର ଅନିଷ୍ଟକାରୀ ତାହା ଆପାତତଃ ସୁନ୍ଦର ହେଲେ ମଧ୍ୟ ସାଧୁମାନଙ୍କ ମତରେ ଅସୁନ୍ଦର ହେୟ ଓ ଘୃଣିତ ।" ତାଙ୍କ ଲେଖନୀରେ ବାଲ୍ୟବିବାହ ଓ ତଦ୍‌ଜନିତ ଦୁରାବସ୍ଥାର ମାର୍ମିକ ଚିତ୍ର ରୂପପାଇଛି । ବ୍ରାହ୍ମଣମାନଙ୍କର ଅତ୍ୟାଚାର, ଜାତିଆଣଭାବ, ଅସ୍ପୃଶ୍ୟତା ବ୍ୟାଧି

ସମ୍ପର୍କରେ ମଧ୍ୟ ନନ୍ଦକିଶୋର ଯଥେଷ୍ଟ ଆଲୋକପାତ କରିଛନ୍ତି । ଗ୍ରାମର ସରଳ ନିରୀହ ମଣିଷମାନେ କିଭଳି ବ୍ରାହ୍ମଣମାନଙ୍କର ଚତୁରତା ଓ ଲୋଭରୁ ଲଣ୍ଡଭଣ୍ଡ ହୋଇଯାଉଛନ୍ତି ସେ ସମ୍ପର୍କରେ–

''ଦିନାଇ ତନ୍ତୀର ହଜିଲା ଗାଈ, ଗାଁ ଗଳିକନ୍ଦି ଖୋଜିଲା ଯାଇ
ନପାଇ ଦନେଇ ହୋଇ ହତାଶ, ଶୋଇଲା ସେ ରାତି ଖାଡ଼ା ଉପାସ
ସକାଳୁ ଗାଁରେ ହୁରିପଡ଼ିଲା, ଦନାଇର ଗାଈ ପଘାରେ ମଲା
ଗୋବିନ୍ଦ ତିହାଡ଼ି ଗାଆଁ ପଣ୍ଡିତ, ବ୍ୟବସ୍ଥା ଖୋଜିଣ କଲେ ବିହିତ
ଅଢ଼େଇଶ ଟଙ୍କା ଦନେଇ ଦବ, ତେବେ ଯାଇ ପ୍ରାୟଶ୍ଚିତ୍ତ ହୋଇବ
ବ୍ରାହ୍ମଣୀର ପାଟ ବାସନମାନ, ଭୂମି ଗୋରୁ ସୁନା ଏ ଆଜିଦାନ
ଗରିବ ଦନାଇ ଜମି ବିକିଲା, ପ୍ରାୟଶ୍ଚିତ୍ତ କରି ଦେଶ ଛାଡ଼ିଲା ।''

ଏହିଭଳି ସହସ୍ରାଧିକ ଦନେଇ ଯେ ପୁରୋହିତମାନଙ୍କର ଅର୍ଥ ଲାଳସାର ଶିକାର ହୋଇ ଗାଁ ଭୂଇଁ ଛାଡୁଥିଲେ ତାହା ଏହି ଦନେଇର ଦୁର୍ଗତିରୁ ପ୍ରତୀୟମାନ ହୋଇଥାଏ । ସେ ବାଲ୍ୟବିବାହ ଓ ବୃଦ୍ଧଙ୍କର ତରୁଣୀ କନ୍ୟା ବିବାହ ପ୍ରତି ମଧ୍ୟ ଅସୂୟାଭାବ ପ୍ରକାଶ କରିଛନ୍ତି । ନାରୀ ପ୍ରତି ତାଙ୍କର ଉଚ୍ଚ ବିଚାର ତାଙ୍କର କାବ୍ୟମାନଙ୍କରୁ ଜଣାଯାଏ । ସଂସ୍କାରକର ଭୂମିକା ନେଇ ନନ୍ଦକିଶୋର ଉପଲବ୍ଧି କରିଛନ୍ତି ଯେ ସମାଜର ଭୂୟୋବିକାଶପାଇଁ ନାରୀ ପୁରୁଷ ଉଭୟଙ୍କର ସହଯୋଗ ଲୋଡ଼ା । ତେଣୁ ତାଙ୍କ କଣ୍ଠରେ–

''ଉଠିଲେ ରମଣୀ ଉଠିବେ ପୁରୁଷ ସମାଜର ଚକ୍ର ବେନି
ଉନ୍ନତି ସ୍ୟନ୍ଦନ ଚଳିବନାହିଁଟି ଏକ ନରରକ୍ତ ଘେନି ।''

ଊନବିଂଶ ଶତାବ୍ଦୀରେ ଯେଉଁ ମୁଷ୍ଟିମେୟ ସଚେତନ ପୁରୁଷ ନିଜ ନିଜ ରଚନା ମାଧ୍ୟମରେ ନାରୀଜାତିର ସର୍ବାଙ୍ଗୀନ ଉନ୍ନତି କାମନା କରିଥିଲେ ସେମାନଙ୍କ ମଧ୍ୟରୁ ନନ୍ଦକିଶୋର ଅନ୍ୟତମ । ତାଙ୍କ ଦୃଷ୍ଟିରେ ନାରୀ କେବଳ ରମଣୀନୁହେଁ ଜନନୀ । ସେ ଭୋଗ୍ୟାନୁହେଁ ବରଂ ଯୋଗ୍ୟା-ଯୋଗ୍ୟତମା । ତେଣୁ ନାରୀର ଉନ୍ନତିରେହିଁ ଦେଶର ଉନ୍ନତି ସମ୍ଭବ । ଏକଥା କବି ସ୍ପଷ୍ଟଭାବରେ କହି ତତ୍‌କାଳୀନ ସମାଜର୍ ଦୃଷ୍ଟି ଆକର୍ଷଣ କରିଛନ୍ତି ।

**ଦେଶାତ୍ମବୋଧର ଭାବନା :**

ଏହି ସମାଜ-ସଂସ୍କାର କାମନା ଆହୁରି ବ୍ୟାପକ ତଥା ଗଭୀର ହୋଇ କେଉଁଭଳି ସମଗ୍ର ଭାରତୀୟ ଜନସାଧାରଣଙ୍କ ହୃଦୟକୁ ଛୁଇଁବାରେ ସମର୍ଥ ହୋଇଛି,

ତାହା ଅନୁଧ୍ୟାନର ବିଷୟ । ସରକାରୀ ଚାକିରି କରି ଜୀବିକା ନିର୍ବାହ କରୁଥିବା ନନ୍ଦକିଶୋରଙ୍କର ଜୀବନ ଦୃଷ୍ଟିକୁ ଶାସକର କ୍ରୂରଦୃଷ୍ଟି ପ୍ରତିହତ କରିପାରିନାହିଁ । ସେ ନିର୍ବିକାରଭାବରେ ଶାସକକୁ ସମାଲୋଚନା କରି ନିଜର ଦେଶପ୍ରୀତିର ପରିଚୟ ଦେଇଛନ୍ତି ।

''ମୋ ବାଡ଼ି ଭିତରେ ଲୁଣର ଅମଳ ଅଲଣା ଖାଆନ୍ତି ଦୁଃଖୀ ଓଡ଼ିଆ
ଲୁଚାଇ ଖାଇଲେ ପକଡ଼ିନଅନ୍ତି ଖୋଲ୍‌ଚି କରି ତାଙ୍କୁ ନୀଳ ଟୋପିଆ ।''

'ଚାରୁଚିତ୍ର' ସଂକଳନର ଏକତା କବିତାରେ ସେ ଏକତାର ମହିମା ଗାନ କରିଛନ୍ତି । ଏକତା ବଳରେ ଅସାଧ୍ୟ ସାଧନ କରିହେବ, ଏଥିରେ କବିଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ତେଣୁ ସେ ଏକତାକୁ ସମ୍ବୋଧନ କରି କହନ୍ତି—

''ଧନ୍ୟ ଗୋ ଏକତା ମହିମା ତୋର, ବର୍ଣ୍ଣି ତା' ପାରେ କି ଲେଖନୀ ମୋର
ନର ଯେବେ ତୋତେ ପାଇନଥାନ୍ତା, ଆଜି ତା ଅବସ୍ଥା କି ହୋଇଥାନ୍ତା ।''

ଇଂଲଣ୍ଡର ନୂତନ ଯୁବରାଜ ୭ମ ଏଡଓ୍ୱାର୍ଡଙ୍କର ଅଭିଷେକ ଉତ୍ସବ ଉପଲକ୍ଷେ 'ନବୀନ ସମ୍ରାଟ୍‌ଙ୍କ ନିକଟରେ ଉତ୍କଳ ମାତାଙ୍କ ଗୁହାରୀ' କବିତା ରଚନାକରି ତହିଁରେ ସେ ଉତ୍କଳର ଦୁର୍ଦ୍ଦଶାର ବିବରଣୀ ପ୍ରଦାନ କରିଛନ୍ତି । ବଙ୍ଗ ଓ ମାନ୍ଦ୍ରାଜରେ ଓଡ଼ିଶାର ଅନେକ ଜୟ ମିଶିଯାଇଛି । ତେଣୁ ଉତ୍କଳ ଜନନୀ ଦୁର୍ବଳା, ଦରିଦ୍ରା ତଥା ଅଙ୍ଗହୀନା ହୋଇପଡ଼ିଛନ୍ତି । ଏକତାର ଅଭାବରେ ଉତ୍କଳର ପୂର୍ବର ସୁଦିନ ଫେରିବା ସମ୍ଭବ ହୋଇପାରୁନାହିଁ ବୋଲି ତାଙ୍କର କ୍ଷୋଭ । 'ଜନ୍ମଭୂମି' କବିତା ସଂକଳନର ଦ୍ୱିତୀୟ ଭାବରେ ସନ୍ନିବେଶିତ କବିତାଗୁଡ଼ିକ ଦେଶାତ୍ମବୋଧ ଭାବନାର ପରିଚାୟକ । ଏଗୁଡ଼ିକ ଗଞ୍ଜାମ ଜାତୀୟ ସମିତି ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ସମ୍ମିଳନୀ, କଟକ ସାରସ୍ୱତ ସମିତି, ଗଞ୍ଜାମ ଛାତ୍ର ସମିତି ପ୍ରଭୃତି ଜାତୀୟ ଅନୁଷ୍ଠାନରେ ଗାନ କରାହେବାପାଇଁ ସ୍ୱତନ୍ତ୍ରଭାବରେ ରଚିତ 'ତତ୍‌କାଳୀନ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇ ଆଦୃତ ।

## ପ୍ରେମ ସମ୍ପର୍କୀୟ ଭାବନା :

ନନ୍ଦକିଶୋରଙ୍କ ଦୃଷ୍ଟିରେ ପ୍ରେମ ତ୍ୟାଗପୂତ । ସେଥିରେ କାମନା ମୂର୍ତ୍ତି ମୁଖ୍ୟ ନୁହେଁ । ମୁଖ୍ୟ ହେଉଛି ପ୍ରେମପାଇଁ ତ୍ୟାଗ ଓ ଆତ୍ମବଳିଦାନ । କୃଷ୍ଣକୁମାରୀ ନିଜର ସମ୍ମାନ ଓ ଗୌରବ ରକ୍ଷାପାଇଁ ବିଷପାନ କରି ମୃତ୍ୟୁବରଣ କରିଛନ୍ତି । ପ୍ରେୟ ଓ ଶ୍ରେୟର ଦ୍ୱନ୍ଦ୍ୱ ଭିତରେ ଶର୍ମିଷ୍ଠାର ଜୀବନ ଆଦର୍ଶ ଓ ତ୍ୟାଗର ବାଣୀହିଁ ଉଦ୍‌ଘୋଷଣା କରିଛି । ସାଧାରଣ ଜୀବନରେ ମଧ୍ୟ ପାରସ୍ପରିକ ସୁସଂପର୍କ ଓ ବୁଝାମଣାର

ଆବଶ୍ୟକତା ରହିଛି । ତାଙ୍କର ମଧୁଶଯ୍ୟା, ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନ ପ୍ରଭୃତି କବିତାରେ ସ୍ୱକୀୟା ପ୍ରେମର ମଧୁମୟ ରୂପ ପରିଦୃଷ୍ଟ ହୋଇଥାଏ । 'ଶର୍ମିଷ୍ଠା' କାବ୍ୟର ପଙ୍କ୍ତିଟିଏ–

''ସହକାର ଦ୍ରୁମେ ମାଧବୀ ଲତିକା ଦେଇଅଛି ବାହୁଛନ୍ଦି
ଯୁଗଳ ମିଳନ ଜୟ ଗାଉଅଛି ପାରୁଶେ ମିଳିନ୍ଦ ବନ୍ଦୀ ।''

ଯଯାତି ଓ ଦେବଯାନୀର ମିଳନ ଘଟାଇବାପାଇଁ କବି ଏହିପରି ପରିବେଶ ସୃଷ୍ଟି କରିଛନ୍ତି । ସେହିପରି ଶର୍ମିଷ୍ଠା କଣ୍ଠରେ–

''ମୋ ପ୍ରାଣ ସଙ୍ଗୀତ ତାଙ୍କ କର୍ମବୀଣା ବଜାଏ କେଉଁ ପ୍ରକାରେ
ସେ ମୋ ସହଧର୍ମୀ ମୁଁ ସହଧର୍ମିଣୀ ଶାଶ୍ୱତ ପ୍ରେମ ସଂସାରେ
x x x
ନଶ୍ୱର ଦେହରେ ଯୌବନ କୁସୁମ ଫୁଟି ଦୁଇଦିନେ ଝଡ଼େ
ଚିରନ୍ତନ ପ୍ରୀତି ତ୍ରିଦିବ କୁସୁମ ଫୁଟି ଦିନୁ ଦିନ ବଢ଼େ ।''

ଏଠାରେ ପ୍ରେମ ଦେହ ଭୋଗରୁ ମହତ୍ତର ଏକ ଦିବ୍ୟ ଅନୁଭବ । ବିରହରେ ଏହା ଆହୁରି ଉଜ୍ଜ୍ୱଳତର ହୁଏ । ଚିରନ୍ତନ ପ୍ରୀତି ମୂଳରେ ଆଦର୍ଶ କର୍ତ୍ତବ୍ୟବୋଧ ଓ ତ୍ୟାଗର ଭାବନା ବଳବତ୍ତର ହୋଇ ରହିଯାଏ ।

''ପୀରତି ସ୍ୱର୍ଗୀୟ କାମ ନାରକୀୟ, କାମ ନୁହେଁ ପ୍ରେମ ସରି
ପ୍ରେମ କାମ ମଧ୍ୟେ ପ୍ରଭେଦ ବିଶେଷ, ସ୍ୱରଗ ନରକ ପରି
x x x
ପ୍ରେମିକ ହୃଦୟ ସ୍ୱଚ୍ଛ ସରୋବର, ପ୍ରେମ ଗଗନର ଇନ୍ଦୁ
ପ୍ରେମ ଅଟେ ପୂର୍ଣ୍ଣ ପୂର୍ଣ୍ଣିମା ଚନ୍ଦ୍ରିକା ହୃଦ ଉଚ୍ଛ୍ୱସିତ ସିନ୍ଧୁ ।''

ପ୍ରେମପାଇଁ ଆଉ କି ଆବେଗମୟ ତଥା ବୈଜ୍ଞାନିକ ସଂଜ୍ଞା ସେ ଦେଇପାରିଥାଆନ୍ତେ ଅବା !

**ଆନନ୍ଦବୋଧ :**

କବି ନନ୍ଦକିଶୋର କେବଳ ବିଷାଦର ସଙ୍ଗୀତ ଗାନ କରିନାହାନ୍ତି । ବିଷାଦରୁ ଉର୍ଦ୍ଧ୍ୱମୁଖୀ ହୋଇ ତାଙ୍କର କାବ୍ୟଚେତନା ଏକ ଆନନ୍ଦମୟ ରାଜ୍ୟର ସନ୍ଧାନକରିଛି । ସେ ଭକ୍ତକବି ମଧୁସୂଦନଙ୍କ କବିତାର ଦିବ୍ୟ ଆନନ୍ଦ ପ୍ରାପ୍ତିର ସମକକ୍ଷ କବିତା ରଚନାରେ ସଫଳ ହୋଇଛନ୍ତି ବୋଲି କହିବା ଯଥାର୍ଥ ମନେହୁଏ । 'ବସନ୍ତ କୋକିଳ' ସଂକଳନର 'ନିନ୍ଦୁକପ୍ରତି' କବିତାରେ କବି କହନ୍ତି–

"ଲାବଣ୍ୟ ସୁନ୍ଦର ଆହା ଧରା ସଂସାର, ଦେଖ ଉଛୁଳି ଉଠେ ମୋ ଗୀତ ଭଣ୍ଡାର
ଛଳ ଛଳ ଢଳ ଢଳ ନାରୀ ନୟନ, ଦେଖ ମୋ କବିତା ପକ୍ଷୀ କରେ ଗାୟନ ।"

ସମସ୍ତ ବ୍ୟକ୍ତିଗତ ହତାଶା ଭିତରେ କବି ଉପଲବ୍‌ଧି କରିଛନ୍ତି ଯେ ପୁଣ୍ୟପାଇଁ ପୁରସ୍କାର ଓ ପାପପାଇଁ ଦଣ୍ଡ ରହିଛି । ତାହା ଦୈବର ଅଧୀନ ସତ ମାତ୍ର ସେଥିରେ ଭୁଲ ହେବାର ନୁହେଁ । ତେଣୁ ନିଜ ଚିନ୍ତାଧାରାକୁ ଖଣ୍ଡନ କରି ସେ ଗାଇଛନ୍ତି–

"ବିଷାଦ ସଙ୍ଗୀତ ବିନା ଗାଅ ତେବେ କବି,
ଶୁଣାଅ ଆଶାର ଗୀତ ଚିତ୍ର କର୍ମ ଛବି ।" (ପ୍ରଭାତ ଅବକାଶ)

ଅର୍ଥାତ୍ ବିଷାଦର ସଙ୍ଗୀତ ଚିରନ୍ତନ ନୁହେଁ କ୍ଷଣିକ । ଆଶାର ସଙ୍ଗୀତ ଗାନ ହିଁ ଜୀବନର ପରମ୍ କର୍ତ୍ତବ୍ୟ । ବ୍ୟକ୍ତିଗତ ନୈରାଶ୍ୟ ଯେତେବେଳେ ସାର୍ବଜନୀନ ହୁଏ ତହିଁରୁ ଏକ ନୂତନ ଭାବସଂଗତି ଫୁଟି ଦିଶେ । ନନ୍ଦକିଶୋରଙ୍କ କବିତାରେ ସେହି ଆନନ୍ଦର ସ୍ୱର ଅନୁରଣିତ । ଏହି ପର୍ଯ୍ୟାୟରେ କବି ଦାର୍ଶନିକ ପାଲଟିଯାଆନ୍ତି ଓ ଜୀବନକୁ ସର୍ବତୋଭାବରେ ଗ୍ରହଣ କରିନେବାର ମାନସିକତା ସଞ୍ଚୟ କରନ୍ତି ।

କବି ନନ୍ଦକିଶୋରଙ୍କୁ କେବଳ ପଲ୍ଲୀ-କବି କହିଦେଲେ ତାଙ୍କର କବିତା ସମୂହର ଆଂଶିକ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇପାରେ ମାତ୍ର ତାଙ୍କର ସଂପୂର୍ଣ୍ଣ କବିତା ପ୍ରତିଭାର ଆକଳନ ହୋଇପାରେନାହିଁ । ରାଧାନାଥ, ମଧୁସୂଦନ, ଫକୀରମୋହନ ଓ ଗଙ୍ଗାଧରଙ୍କ ସମକାଳୀନ ଏହି ପ୍ରତିଭା ଏକାଧାରରେ ଶିଶୁ ଭଳି ସରଳ ଓ ପ୍ରୌଢ଼ ଭଳି ଗମ୍ଭୀର । ସେ କେଉଁଠି ପାର୍ବତ୍ୟ ନିର୍ଝରିଣୀ ତ କେଉଁଠି ତରଙ୍ଗାୟିତ ମହାସିନ୍ଧୁ । କେଉଁଠି ତାଙ୍କର କାମନା କଇଁଚିକାକୁଡ଼ି ତୋଳିବା, ବର୍ଷାକାଳୀନ ପ୍ରଭାତରେ ଚାଳମଥାନ ଉପରକୁ ଉଠୁଥିବା ଧୂଆଁ ଦେଇ ଆନମନା ହେବା ତ କେଉଁଠି ତାଙ୍କର ଚିନ୍ତା–

"ସଂସାରର ପ୍ରେମ ଆବିଳ ଭାଇ
ନିର୍ମଳ ପ୍ରେମ ଏ ସଂସାରେ ନାହିଁ ।" (କାକ ବାରତା)

ଏ ସମସ୍ତ ବୈଚିତ୍ର୍ୟ ମଧ୍ୟରେ ଦେଶାତ୍ମବୋଧ ଓ ସଂସ୍କାର ଭାବନା ମଧ୍ୟ ତାଙ୍କ ରଚନାରେ ପ୍ରମୁଖ ସ୍ଥାନର ଅଧିକାରୀ । ଭାରତୀୟ ସଂସ୍କୃତିର ବିଶ୍ୱାସ, ମୂଲ୍ୟବୋଧ, ଈଶ୍ୱର ପ୍ରୀତି ତଥା ବନ୍ଧୁବତ୍ସଳତା ଏକାଧାରରେ ତାଙ୍କ ଲେଖନୀ ମୁନରୁ ଝଡ଼ିପଡ଼ିଛି । କବି ନନ୍ଦକିଶୋର ଓ ତତ୍‌କାଳୀନ ସମୟର ଏକ ସ୍ୱଚ୍ଛ ସୁନ୍ଦର ତଥା ଗଭୀର ପ୍ରତିରୂପ ନିଜ ସାହିତ୍ୟରେ ଅଙ୍କନ କରିବାରେ ସମର୍ଥ ହୋଇଛନ୍ତି ।

———

# କବି କାଳିନ୍ଦୀଚରଣ ପାଣିଗ୍ରାହୀ

କାଳିନ୍ଦୀଚରଣ ସବୁଜଯୁଗର ଯଶସ୍ୱୀ ସାହିତ୍ୟସାଧକ । ସେ ଏକାଧାରରେ କବି, ପ୍ରାବନ୍ଧିକ, ଔପନ୍ୟାସିକ ତଥା ଶିଶୁ-ଉପଯୋଗୀ ସାହିତ୍ୟର ରଚୟିତା । ୧୯୨୦ରୁ ୧୯୩୫ର ସମୟସୀମାକୁ ଆମ ସାହିତ୍ୟରେ ସବୁଜଯୁଗ ନାମରେ ଚିହ୍ନିତ କରାଯାଏ । ସବୁଜଯୁଗର ବିଶିଷ୍ଟ ଦିଗଗୁଡ଼ିକ ହେଉଛି ସ୍ୱପ୍ନପ୍ରବଣତା, ବାସ୍ତବତାଠାରୁ ପଳାୟନ, ରୋମାଣ୍ଟିକ୍ ବିଷାଦଭାବନା, ଦେଶାତ୍ମବୋଧ, ପ୍ରକୃତିପ୍ରୀତି ଓ ଅତୀତବିଧୂରତା । ଏହି ସବୁଜଯୁଗ ତତ୍କାଳୀନ ରେଭେନ୍ସା କଲେଜର ଇଷ୍ଟ ହଷ୍ଟେଲରେ ରହୁଥିବା କେତେଜଣ ଯୁବକଙ୍କର ପ୍ରତିଭାର ଭୂୟୋବିକାଶ । ଯାହା ଓଡ଼ିଆ ସାହିତ୍ୟକୁ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଛି ।

ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ, ଶରତଚନ୍ଦ୍ର ମୁଖାର୍ଜୀ ଓ ହରିହର ମହାପାତ୍ରଙ୍କର ମିଳିତ ଉଦ୍ୟମରେ ହାତଲେଖା ଅବକାଶ ପତ୍ରିକାଠାରୁ ୧୯୨୧ରେ ସବୁଜ ସାହିତ୍ୟ ସମିତିର 'ଯୁଗବୀଣା' ପତ୍ରିକା ଓ ୧୯୩୫ରେ ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ' ପ୍ରକାଶ ପର୍ଯ୍ୟନ୍ତ ଏହି ସବୁଜର ସୀମା ନିର୍ଦ୍ଧାରିତ ହୋଇଛି । କାଳିନ୍ଦୀଚରଣ ସବୁଜଯୁଗର ଅନ୍ୟାନ୍ୟ ସାହିତ୍ୟ ସାଧକମାନଙ୍କଠାରୁ ଆଧୁନିକ ଚେତନା ପ୍ରତି ସର୍ବାଧିକ ଅନୁରକ୍ତ । ୧୯୩୧ରେ କାଳଜୟୀ ଉପନ୍ୟାସ 'ମାଟିର ମଣିଷ' ଲେଖିବାବେଳକୁ ତାଙ୍କର କବି ପ୍ରତିଭା ବହୁ ଉତ୍‌ଥାନ ପତନ ମଧ୍ୟରେ ଉର୍ଜମୂଳ ହୋଇଛି । ୧୯୨୦ରୁ ତାଙ୍କର ସ୍ୱ କାବ୍ୟଜୀବନ ଆରମ୍ଭ । ୧୯୩୧ ବେଳକୁ ତହିଁରେ ସାମ୍ୟବାଦୀ ଚେତନାର ସ୍ୱର ଅଧିକ ଉତ୍ତାଳ । ସବୁଜ କବିତା (୧୯୩୨)ରେ ପ୍ରକାଶିତ ହୁଏ ଓ ଏହି ଗୋଷ୍ଠୀର ଯୁବକମାନେ ନିଜକୁ ନୂତନ ଯୁଗ ଚେତନାର ବାହକଭାବରେ ପରିଚିତ କରାଇ ନିଜର ଆତ୍ମଶକ୍ତି ସଂପର୍କରେ ସଚେତନ ହୁଅନ୍ତି । ବଂଗଳାରେ 'ସବୁଜପତ୍ର' ନାମକ ପତ୍ରିକା ଓ ରବୀନ୍ଦ୍ରନାଥଙ୍କର ଯୁବକମାନଙ୍କୁ 'ଓରେ ସବୁଜ ଓରେ ଅବୁଝ' ଭାବରେ ଉଦ୍‌ବୋଧନ ଦେବା, ଓଡ଼ିଶାର ଯୁବମାନସକୁ ସ୍ୱାଭାବିକଭାବରେ ଆଲୋଡ଼ିତ କରିଥିଲା । ଫଳରେ ସମଧର୍ମା ଯୁବଗୋଷ୍ଠୀ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ସାହିତ୍ୟସାଧନା ଆରମ୍ଭ କରିଥିଲେ ।

୧୯୨୦ ମସିହା ବେଳକୁ ଭାରତୀୟ ଜାତୀୟ କଂଗ୍ରେସ ବେଶ୍ କ୍ରିୟାଶୀଳ । ସାଧାରଣ ଜନତା ପ୍ରାଣରେ ସ୍ୱରାଜ୍ୟପାଇଁ ବ୍ୟାକୁଳତା ଅନୁଭୂତ ହେଉଛି । ଗାନ୍ଧିଜୀଙ୍କର ବିରାଟ ବ୍ୟକ୍ତିତ୍ୱ, ଆତ୍ମନିର୍ଭରଶୀଳ ହେବାପାଇଁ ତାଙ୍କର ଆହ୍ୱାନ ଯୁବପ୍ରାଣକୁ ବେଶ୍ ଉଦ୍‌ବୁଦ୍ଧ କରିଛି । ୧୯୨୧ଠାରୁ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇ ବିଦେଶୀ ଶାସକର ଭୀତିର କାରଣ ହୋଇଛି । ଏହିଭଳି ସମୟରେ ସବୁଜ ସାହିତ୍ୟସାଧକମାନେ ସ୍ୱପ୍ନର ଦୁନିଆରେ ମଗ୍ନ ରହି କବିତା ରଚନା କରିଛନ୍ତି । ଜୀବନ ସଂପର୍କୀୟ ସୀମିତ ଅନୁଭବ ହୁଏତ ସେମାନଙ୍କୁ କଳ୍ପନାପ୍ରବଣ କରିଛି ମାତ୍ର ଖୁବ୍ ଶୀଘ୍ର ସେମାନଙ୍କ ରଚନାରେ ପରିବର୍ତ୍ତନ ଆସିଛି । ସେମାନେ ସାଧାରଣ ମଣିଷର ଦୁଃଖକଷ୍ଟରେ ସମଦୁଃଖୀ ହୋଇଛନ୍ତି ଓ ମଣିଷକୁ ଦେବତାର ପ୍ରତିସ୍ପର୍ଦ୍ଧୀ ଆସନରେ ମଧ୍ୟ ବସାଇଛନ୍ତି ।

ବଂଗଳାର 'କଲ୍ଲୋଳଯୁଗ'ରେ ରବୀନ୍ଦ୍ରନାଥଙ୍କ ଆଧିଭୌତିକ ଚିନ୍ତାଧାରାକୁ ଗୁରୁତ୍ୱ ଦିଆଯାଇନାହିଁ । କାରଣ ଆନ୍ତର୍ଜାତିକ ଚିନ୍ତାଚେତନାର ସାହିତ୍ୟ ସୃଷ୍ଟିପାଇଁ ରବୀନ୍ଦ୍ରଙ୍କ ପରବର୍ତ୍ତୀ ସ୍ରଷ୍ଟାମାନେ ପ୍ରୟାସ କରିଛନ୍ତି । କିନ୍ତୁ ଓଡ଼ିଶାରେ 'କଲ୍ଲୋଳଯୁଗ'ର ପ୍ରଭାବରେ 'ସବୁଜଯୁଗ'ର ସୃଷ୍ଟି ହୋଇଥିଲେହେଁ ସେମାନେ ରବୀନ୍ଦ୍ରନାଥଙ୍କ କାବ୍ୟସ୍ତରକୁ ସଂପୂର୍ଣ୍ଣଭାବେ ଗ୍ରହଣ କରିଛନ୍ତି । ଏପରିକି ଭାଷା, ଛନ୍ଦ ଓ ଭାବ ସବୁଥିରେ ବଂଗଳାର ପ୍ରତ୍ୟକ୍ଷ ପ୍ରଭାବ ସବୁଜଯୁଗକୁ ଆକ୍ରାନ୍ତ କରିଛି । ପ୍ରାଚୀନକୁ ଛାଡ଼ି ନୂତନର ଜୟଗାନ କରିବା ସମୟରେ ସେମାନେ ପ୍ରକୃତରେ
ପ୍ରାଚୀନକୁ ଛାଡ଼ି ନୂତନର ଜୟଗାନ କରିବା ସମୟରେ ସେମାନେ ପ୍ରକୃତରେ
ପ୍ରାଚୀନକୁ ତ୍ୟାଗ କରିପାରିନାହାନ୍ତି । ଯେଉଁଠି ପ୍ରୟାସ କରିଛନ୍ତି, ସେଠାରେ କବିତା ହାଲୁକା ହୋଇଯାଇଛି ।

ସତ୍ୟବାଦୀ ଯୁଗର ପ୍ରଭାବ ସବୁଜ କାଳରେ ସଂପୂର୍ଣ୍ଣ ଅନ୍ତର୍ହିତ ହୋଇନାହିଁ । ଗୋଦାବରୀଶ ମହାପାତ୍ର, ମାୟାଧର ମାନସିଂହ ବା ରାଧାମୋହନ ଗଡ଼ନାୟକଙ୍କ ଭଳି ସାହିତ୍ୟସ୍ରଷ୍ଟା ସବୁଜଧାରାରୁ ଭିନ୍ନ ଥାଇ ମଧ୍ୟ ସେହି ସମୟର କବିତାକୁ ନିଜ ନିଜ ସୃଷ୍ଟିଦ୍ୱାରା ପରିପୁଷ୍ଟ କରିଛନ୍ତି । ତେଣୁ ସବୁଜଯୁଗର ସାହିତ୍ୟ ସୃଷ୍ଟିକୁ କିଛି ଭାବଉଚ୍ଛ୍ୱାସ, କିଛି ଅତୀତପ୍ରୀତି କିଛି ରୋମାଣ୍ଟିକ୍ ଭାବାଳୁତା ଓ କିଛି ବିଷାଦ ଦେଇ ଅନୁଧ୍ୟାନ କରାଯାଇପାରେ; ଯେଉଁଥିରେ ଯୁବମାନସର ଅପରିମିତ ସୃଷ୍ଟିପ୍ରେରଣା ନିହିତ ଥିଲା । ପରବର୍ତ୍ତୀକାଳରେ କାଳିନ୍ଦୀଚରଣ ଓ ବୈକୁଣ୍ଠନାଥଙ୍କ କବିତାରେ ଯାହାର ଉପଯୁକ୍ତ ବିକାଶ ସମ୍ଭବପର ହୋଇଛି ।

ମାତ୍ର ତିରିଶ ବର୍ଷ ବୟସରେ ସେ ରଚନା କରିଥିଲେ 'ମାଟିର ମଣିଷ' ଭଳି କ୍ଲାସିକ୍ ଉପନ୍ୟାସ; ଯାହାର ଚରିତ୍ରମାନେ ପ୍ରତ୍ୟେକ ଓଡ଼ିଆ ପାଠକର ମାନସରେ

ଆଜି ମଧ୍ୟ ଜୀବନ୍ତ । ଏତଦ୍‌ବ୍ୟତୀତ 'ମୁକ୍ତାଗଡ଼ର କ୍ଷୁଧା', 'ଅମରଚିତା' ଓ 'ଲୁହାର ମଣିଷ' ଭଳି ଉପନ୍ୟାସ; 'ରାଶିଫଳ', 'ଶେଷରଶ୍ମି', 'ସାଗରିକା', 'ଦ୍ୱାଦଶୀ', ମୋ କଥାଟି ସରି ନାହିଁ ଭଳି ଗଳ୍ପ ସଂକଳନ ତାଙ୍କର ସୃଷ୍ଟି । 'ଦ୍ୱାଦଶୀ', 'ମନେନାହିଁ', 'ଛୁରିଟିଏ ଲୋଡ଼ା', 'କ୍ଷଣିକ ସତ୍ୟ', 'ମହାଦୀପ' ଭଳି କବିତା ସଂକଳନ, 'ସୌମ୍ୟା', 'ପ୍ରିୟଦର୍ଶୀ', 'ପଦ୍ମିନୀ' ଭଳି ନାଟକରୁ ତାଙ୍କର ସ୍ରଷ୍ଟାପ୍ରାଣର ଆନ୍ତରିକତା ଉପଲବ୍ଧି କରିହୁଏ । 'ସୌମ୍ୟା'କୁ ପ୍ରଥମ ଓଡ଼ିଆ ଏକାଙ୍କିକାର ମର୍ଯ୍ୟାଦା ଦିଆଯାଇଛି । ତାଙ୍କ ରଚିତ 'ଅଂଗେ ଯାହା ଲିଭାଇଛି' ଓ 'ଗଲି ଅଇଲି ରଷ୍ ଜର୍ମାନୀ' ଗ୍ରନ୍ଥଦ୍ୱୟ ଓଡ଼ିଆ ଭ୍ରମଣ ସାହିତ୍ୟକୁ ପରିପୁଷ୍ଟ କରିଛି । ଦୀର୍ଘ କର୍ମମୟ ଜୀବନ ଭିତରେ ସେ ସମବାୟ ବିଭାଗର ମୁଖପତ୍ର 'କଲ୍ୟାଣୀ'ର ସଂପାଦନ କରିଛନ୍ତି । ସମବାୟ ବ୍ୟାଙ୍କ କର୍ମଚାରୀଭାବରେ ମୟୂରଭଞ୍ଜରେ ଅବସ୍ଥାନ କାଳରେ 'ମୟୂରଭଞ୍ଜ କ୍ରୋନିକଲ୍' ଓ 'ଭଂଜ ପ୍ରଦୀପ'ର ସଂପାଦନ ଦାୟିତ୍ୱ ମଧ୍ୟ ଗ୍ରହଣ କରିଛନ୍ତି ।

କିଶୋର ଉପଯୋଗୀ ସାହିତ୍ୟ ରଚନା କରିବାରେ କାଳିନ୍ଦୀଚରଣ ଅପୂର୍ବ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ପାଠ୍ୟପୁସ୍ତକ ରଚନାରେ ତାଙ୍କର କୃତିତ୍ୱ ଅବିସମ୍ବାଦିତ । ତାଙ୍କର କବିତ୍ୱ, ସମ୍ବେଦନଶୀଳତା, ଯୁଗୋପଯୋଗିତା ତଥା ଛାନ୍ଦସିକତା କିଶୋର ଉପଯୋଗୀ ପାଠ୍ୟପୁସ୍ତକ ରଚନାପାଇଁ ତାଙ୍କୁ ପ୍ରେରଣା ଦେଇଛି ଓ କିଶୋରମାନଙ୍କ ଦ୍ୱାରା ଆଦୃତ ହୋଇ ସେ ବାରମ୍ବାର ଏଭଳି କବିତାମାନ ରଚନା କରିଛନ୍ତି ।

କାଳିନ୍ଦୀଚରଣଙ୍କର ପ୍ରାଥମିକ ପର୍ଯ୍ୟାୟର କବିତାଗୁଡ଼ିକରେ ରୋମାଣ୍ଟିକ୍ ଭାବପ୍ରବଣତା ସ୍ପଷ୍ଟ । ୧୯୨୫ରେ ରଚିତ 'ମଧୁବିବାହ' ଏହି ଭାବପ୍ରବଣତାର ଅନୁପମ ଆଲେଖ୍ୟ । 'ବିରହୀଯକ୍ଷ', 'ବ୍ୟର୍ଥସ୍ୱପ୍ନ', 'ଲୋହିତବ୍ୟଥା', 'ରଜ', 'ଫଗୁଣବଂଶୀ', 'ମଧୁବିବାହ' ଭଳି ଏହି ଶ୍ରେଣୀର କବିତାଗୁଡ଼ିକରେ ବ୍ୟକ୍ତିଗତ ଭାବପ୍ରବଣତାର ସ୍ୱର ସ୍ପଷ୍ଟ । 'ରଜ' କବିତାରୁ ପଙ୍କ୍ତିଟିଏ

''ବରଷା କାଳର ଆରମ୍ଭ ବିରହିଣୀର ଦୁଃଖ
କାନ୍ତ କଥା ଭାଳି ବିତିବ ମନେ ପଡ଼ିବ ମୁଖ ।''

ଯେଉଁ ଇନ୍ଦ୍ରିୟାନୁଭୂତି କବିଙ୍କୁ ଏଭଳି ରୋମାଣ୍ଟିକ୍ ଭାବପ୍ରବଣତାର କବିତା ଲେଖାପାଇଁ ଅନୁପ୍ରେରିତ କରିଛି ତାହାର ପ୍ରକୃତ ସ୍ୱରୂପ ବେଶ୍ ଛାୟାଚ୍ଛନ୍ନ । ତାଙ୍କର ପ୍ରେୟସୀ ଅନନ୍ତଯୌବନା । ସେ ଜରାର ଚିନ୍ତାରେ ବିମର୍ଷ ହୋଇପଡ଼ନ୍ତି, ଯୌବନକୁ ଝୁରିହୁଅନ୍ତି ଓ ମଳୟର ଚିନ୍ତାରେ ଆତ୍ମହରା ହୁଅନ୍ତି । କାଳିନ୍ଦୀଚରଣଙ୍କର କବିତାରେ ବିରହ-ମିଳନ, ଆନନ୍ଦ-ବିଷାଦ ଓ ପ୍ରାପ୍ତି-ଅପ୍ରାପ୍ତିର ଚିତ୍ର ବେଶ୍ ହୃଦ୍ୟ । ସେଠାରେ

ଅନୁଭୂତିର ଐକାନ୍ତିକତା ରହିଛି । ଜୀବନକୁ ଭଲପାଇବାର ଗଭୀରତା ରହିଛି ଓ ସମାଜସମ୍ମତ ସଂଯତ ଜୀବନଯାପନପାଇଁ ଅଭୀପ୍‌ସା ରହିଛି । ଏହି ପର୍ଯ୍ୟାୟର ସମସ୍ତ କବିତାରେ ବ୍ୟକ୍ତିଗତ ଭାବପ୍ରବଣତାର ଉଚ୍ଛ୍ୱାସ ପରିଲକ୍ଷିତ ହେଉଥିବା ସମୟରେ 'ପୁରୀ ମନ୍ଦିର' (୧୯୨୭) ଭଳି କବିତାରେ ଏହାର୍ ବ୍ୟତିକ୍ରମ ଦୃଷ୍ଟିଗୋଚର ହୁଏ । ଏହି ପୁରୀମନ୍ଦିରରେ ନିର୍ଜୀବ ଦେବତାମୂର୍ତ୍ତିଠାରୁ ତାକୁ ଗଢ଼ିଥିବା ସଜୀବ ମଣିଷର ଗୁରୁତ୍ୱ ପ୍ରତିପାଦିତ ହୋଇଛି । ପିତାମାତା ପ୍ରେମିକା ତଥା ପତ୍ନୀ କବିଜୀବନକୁ ଯେଭଳି ପରିପୂର୍ଣ୍ଣ କରିଛନ୍ତି, ତାହା ଦେବତାଙ୍କ ପକ୍ଷରେ ସମ୍ଭବନୁହେଁ । କବି କାଳିନ୍ଦୀଚରଣ ପରବର୍ତ୍ତୀ କାଳରେ ସାମ୍ୟବାଦୀ କାବ୍ୟଚେତନାଦ୍ୱାରା ପ୍ରଭାବିତ ହୋଇଛନ୍ତି । ସତେଯେପରି ପୁରୀ ମନ୍ଦିର କବିତା ରଚନା ଦିନରୁ ସେହି ସାମ୍ୟବାଦୀ ଧାରଣା ପ୍ରତି ତାଙ୍କର ଅନୁରାଗ ଜାତ ହୋଇଛି । ମନ୍ଦିରର ଦେବତାଙ୍କୁ 'ଶୂନ୍ୟପ୍ରାଣ' କହି ସେ ମାନବ-ବନ୍ଦନାର ଆଦ୍ୟସ୍ୱର ଉଚ୍ଚାରଣ କରିଛନ୍ତି ।

ତାଙ୍କର ଦ୍ୱିତୀୟ ପର୍ଯ୍ୟାୟର କବିତାଗୁଡ଼ିକରେ ବୈପ୍ଳବିକ ଚେତନାର ସ୍ୱର 'ବେଶ୍ ଉଦାର', 'କ୍ଷଣିକ ସତ୍ୟ' (୧୯୩୪), 'ଜୟ ଭଗବାନ୍' (୧୯୩୬), 'ବାଜିରାଉତ' (୧୯୩୮), 'ଭକ୍ତି ଓ ଚାବୁକ' (୧୯୩୮), 'ଯାଦୁଘର' (୧୯୩୮), 'ଛୁରିଟିଏ ଲୋଡ଼ା' (୧୯୩୯), 'ମୋ ବାଣୀ' (୧୯୪୨), 'ଆଗାମୀ' (୧୯୪୨), 'କିଏ ଶଳା ସଇତାନ୍' (୧୯୪୪), 'ମୋ କବିତା' (୧୯୫୧)ରେ ଏହି ସ୍ୱର ସ୍ପଷ୍ଟ । ଏଠାରେ କବି ସାଧାରଣ ଖଟିଖିଆ ମଣିଷର ପ୍ରତିନିଧି; ଯେ କି ଯୁଗଯୁଗର ମୂକ ଜନତାପାଇଁ ବିପ୍ଳବର ମନ୍ତ୍ର ଗାନ କରିଛନ୍ତି । 'କ୍ଷଣିକ ସତ୍ୟ'ରେ ତାଙ୍କର ଭାବନା ଏକ ନୂତନ ମୋଡ଼ ନେଇଛି; ଯାହା ସାମ୍ୟବାଦୀ ଚେତନାର ଶିଖର ସ୍ପର୍ଶ କରିଛି । ଧର୍ମକୁ ନେଇ ଯୁଗ ଯୁଗ ଧରି ଯେଉଁ ରାଜନୀତି ଚାଲିଛି ତାହାକୁ 'ଯାଦୁଘର' କବିତାରେ ତୀବ୍ର କଟାକ୍ଷ କରାଯାଇଛି ।

''ଧର୍ମ ରଖିଛି ଧରି ଜଗତକୁ ଶୁଣିଲି ବ୍ୟାଖ୍ୟା ବହୁ
ଖୋଜିଲି ଶାସ୍ତ୍ର ଚାଖିବାକୁ ଯେତେ ଧର୍ମ ମଧୁର ମହୁ
ଜଡ଼ ଅକ୍ଷର ଭିତରେ ଜଡ଼ିତ ଆଚାର ନିୟମ ଥୋଡ଼ା
ନପାଇଲି ଖୋଜି ଆଉ ଅଛି ତହିଁ ଅବା କେଉଁ ହାତୀ ଘୋଡ଼ା ।''
(ଯାଦୁଘର)

ଧର୍ମର ସାଂପ୍ରତିକ ଉପଯୋଗିତା କ୍ଷୀଣ ହୋଇଯାଇଛି । ତେଣୁ ତାହାକୁ ଯାଦୁଘରେ ସ୍ଥାନ ଦିଆଯିବା ଉଚିତ ବୋଲି କବିଙ୍କର ମତ । 'କିଏ ଶଳା ସଇତାନ୍' କବିତାରେ ପ୍ରତିବାଦର ଯେଉଁ ଉଗ୍ରସ୍ୱର ନିନାଦିତ ସମଗ୍ର ଓଡ଼ିଆ ସାହିତ୍ୟରେ ଏଭଳି

କବିତାର ସଂଖ୍ୟା ଅଧିକନୁହେଁ । ଯିଏ ଫସଲ ଉତ୍ପାଦନ କରେ, ସେ ଉପବାସ ରହେ । କର୍ମ କରୁଥିବା ବ୍ୟକ୍ତିଠାରୁ ଭିନ୍ନ ଜଣେ ଅନୁଦାର ବ୍ୟକ୍ତି ଫଳ ଭୋଗ କରୁଥାଏ । ତେଣୁ କବି କହନ୍ତି, ଆମେ ଯେଉଁ ରାସ୍ତା ତିଆରି କରିଛୁ, ସେ ରାସ୍ତାରେ ଆମେ ଚାଲିପାରିଲୁନାହିଁ । ଆମ ଠାକୁରଘରଠାରୁ ସେହି ଧନିକ ଗୋଷ୍ଠୀର ପାଇଖାନା ମଧ୍ୟ ଅଧିକ ଆଡ଼ମ୍ବରପୂର୍ଣ୍ଣ । କ୍ଷୋଭଜର୍ଜର କବି ନିଜକୁ ସେହି ଶ୍ରମିକ ଶ୍ରେଣୀର ପ୍ରତିନିଧି ବୋଲି ଭାବି ଗାଇଛନ୍ତି –

''ଜନ୍ମ ଆମର ମଣିଷ କୁଳରେ ନାହିଁ ଇଜ୍ଜତ ମାନ
ଆମ ଝିଅବୋହୂ ସବୁରି ଶାଳୀ ହେ ଆମେ ଶଳା ସଇତାନ୍ ।''

'ଆଗାମୀ' କବିତାରେ ଆମେ ସାମ୍ୟବାଦର ଯେଉଁ ଇସ୍ତାହାର ଦେଖୁ, ସେଥିରେ ସମତୁଲ ସମାଜ ଗଠନରେ ଆଗ୍ରହୀ ଜଣେ ଉଦାର ସମାଜତତ୍ତ୍ୱବିତ୍ ବ୍ୟକ୍ତିଙ୍କୁହିଁ ଦେଖିବାକୁ ମିଳେ । ସେଠାରେ କବିତାର ଗଠନ ରୀତିଠାରୁ ବକ୍ତବ୍ୟ ଶ୍ରେଷ୍ଠ ହୋଇଯାଏ ଆଉ କଳ୍ପିତ ସାମ୍ୟବାଦର ଏକ ମନୋରମ ଚିତ୍ର ଫୁଟିଉଠେ ।

କବିତା ପଢ଼େ ଏକ ବିରାଟ ସମାଜର, ସବୁରିପାଇଁ ଯହିଁ ବସ୍ତୁରେ
ହେଲେ ଘର, ସଭିଏଁ ଲଭିବାକୁ ମୁଠାଏ ଦୁଧଭାତ, ଯୋଗ୍ୟ ଯେତେ
ତହିଁ ବାଳକ ବାଳିକା ତ, ଦୁଇଟା ଲୁଗା ଜାମା ସବୁରିପାଇଁ ମିଳେ,
ପଢ଼ିବାପାଇଁ ବାଧାନାହିଁ କାହାର ତିଳେ, ବେକାର ରହିବାକୁ ନାହିଁଟି
ଅଧିକାର, ସବୁରିପାଇଁ କାମ ଯୋଗାଏ ସରକାର । କହିବାପାଇଁ ଯହିଁ
ସବୁରି ଦାବି ଅଛି, ମୁଁ ସେଇ ସମାଜର କବିତା ବସେରଚି ।''

ଏଠାରେ କବି ବ୍ୟକ୍ତିଟିଏ ହେଲେହେଁ ସେ ସମାଜର ପ୍ରତିନିଧି । ସମାଜ ଗଠନପାଇଁ ତା'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସକଳ ଜୀର୍ଣ୍ଣ ପୁରାତନକୁ ପୌଷର ପତ୍ର ସହିତ ତୁଳନା କରୁଥିବା ସବୁଜ କବିଗଣ ନୂତନର ଆବାହନପାଇଁ ପ୍ରୟାସୀ । ତେଣୁ ପ୍ରାଚୀନ ଫିମ୍ପିମରା ସମାଜ ସେମାନଙ୍କର କାମ୍ୟ ନୁହେଁ । ତେଣୁ ସମାଜର ଯେଉଁ ସ୍ୱପ୍ନ ସେମାନେ ଦେଖନ୍ତି ତହିଁରେ ଶୋଷଣ ପେଷଣ ନୁହେଁ ବରଂ ସହାବସ୍ଥାନର ସୂତ୍ର ହିଁ ନିହିତ ଥାଏ । ସେଠାରେ ଭକ୍ତ ଓ ଭଗବାନ୍ ଭିତରେ ତୃତୀୟ ପୁରୁଷଭାବରେ ପୁରୋହିତଙ୍କର ଉପସ୍ଥିତି ନଥାଏ । ଉତ୍ପାଦକ ଓ ଉତ୍ପାଦନ ମଧ୍ୟରେ ମାଲିକର ଉପସ୍ଥିତି ଅସହ୍ୟ ହୁଏ । ତେଣୁ କବି ସମାଜର ବିଧାୟକ ପାଲଟିଲାବେଳେ ବିପ୍ଳବୀରେ ରୂପାନ୍ତରିତ ହୋଇଯାଏ ଓ ପ୍ରତିଷ୍ଠିତ ସମାଜବ୍ୟବସ୍ଥାକୁ ବ୍ୟଙ୍ଗଜର୍ଜର କରେ । ମାନସିଂହ, ଗଡ଼ନାୟକ, ପଦ୍ମଚରଣ, ବୈକୁଣ୍ଠନାଥ, ଅନନ୍ତ ପଟ୍ଟନାୟକ ପ୍ରଭୃତିଙ୍କ କବିତାରେ ସମାଜ ସଚେତନତାର ମନ୍ଦ୍ରସ୍ୱର ଶୁଣାଯାଏ । ଏମାନେ ଯୁଗୀୟ

ଚେତନାରେ ଉଦ୍‌ବୁଦ୍ଧ ହୋଇ ମେହେନତି ମଣିଷର ଜୟଗାନ କରିଛନ୍ତି । ବୈକୁଣ୍ଠନାଥଙ୍କର 'ମୂକଭଗବାନ୍', ପଦ୍ମଚରଣଙ୍କ 'ଅଛବ', ଅନନ୍ଦ ପଟ୍ଟନାୟକଙ୍କର 'ସର୍ବହରା', 'ଝରରେ ରୁଧିର', 'ଫୁଟିବି ମୁଁ ଫୁଟିବି' ପ୍ରଭୃତି ଏହି ଶ୍ରେଣୀୟ କବିତା । ଏଥିରେ ବିପ୍ଳବର ସ୍ୱର ସହିତ ଜୀବନର ସମ୍ମୁଖୀନ ହେବାର ସ୍ପର୍ଦ୍ଧା ପରିଲକ୍ଷିତ ହୁଏ ।

ସାଧାରଣ ମଣିଷର ଅଶ୍ରୁ ଓ ଆବେଗକୁ ଆତ୍ମସ୍ଥ କରିବା ଭିତରେ କବି ନିଖିଳ ବିଶ୍ୱର ଅଶ୍ରୁରେ ଭିଜିଛନ୍ତି । ସୀମା ଭିତରେ ଅସୀମର ସ୍ୱର ଶୁଣି ଉଚ୍ଚକିତ ହୋଇଛନ୍ତି । ରବୀନ୍ଦ୍ରନାଥଙ୍କ କବିତାରେ ଆଧିଭୌତିକ ଚେତନା ତାଙ୍କ କାବ୍ୟପ୍ରୟାସରେ ପରିଦୃଷ୍ଟ ହୋଇଛି । ରୂପ ମଧ୍ୟରେ ଅରୂପର ସତ୍ତା ହୃଦୟଙ୍ଗମ କରିଥିବା କବି ସ୍ରଷ୍ଟାରୁ ଦ୍ରଷ୍ଟା ପାଲଟିଛି, 'ବିଶ୍ୱର ଆହ୍ୱାନ', 'ଅରୂପର ଆହ୍ୱାନ', 'ପ୍ରସାଧନ', 'ନିରବ ଆହ୍ୱାନ' ଆଦି ଏହି ଶ୍ରେଣୀର କବିତା । ଅରୂପର ଆହ୍ୱାନ କବିତାରେ ଏହି ଉପଲବ୍ଧିର ସ୍ୱର –

''ହେ ଅତନୁ ! ତନୁ ଛାଡ଼ି ମିଳିବାକୁ ତୁମରି ଗତିରେ
ଲୋଡୁଅଛି ପ୍ରାଣ ମମ ଆଜି ଏଇ ଚଇତି ରାତିରେ
ନିବିଡ଼ ପରଶ ମୋର ପଥେ ଘାଟେ ଯିବାକୁ ବିତରି
ବିଶ୍ୱର ଅବକାଶ ବ୍ୟଗ୍ର ମୋ ଭାବନାରେ ଭରି ।''

ସେହି ଅତନୁର ସ୍ପର୍ଶ ପାଇଲେହିଁ କବିଚିତ୍ତ ସମାହିତ ହୋଇଯିବ । ପୁଣି ମୃତ୍ୟୁ ଲଭିବା ପୂର୍ବରୁ ମୃତ୍ୟୁପାଇଁ ବିମର୍ଷ ନହୋଇ ଜୀବନର ସୁଧାରସ ଆକଣ୍ଠ ପାନ କରିବାକୁ ସେ ଚାହାନ୍ତି । କାରଣ ଜୀବନର ଅନ୍ତହେବା ପରେ ପୁନର୍ବାର ଆଉ ସେ ଜୀବନ ମିଳିବାରନାହିଁ । ଏହି ଧରଣର ସଂଶୟ ତାଙ୍କର ଈଶ୍ୱରବିଶ୍ୱାସକୁ କ୍ଷଣକ ପାଇଁ ଦୋହଲାଇଦେଇଛି । ଡଃ ନିତ୍ୟାନନ୍ଦ ଶତପଥୀଙ୍କ ଭାଷାରେ "x x ଏହି ଆସ୍ତିକ କାବ୍ୟମାନସ ଏକ ଚରମ ସଂଶୟାତ୍ମକ ନିରୀଶ୍ୱରବାଦିତାକୁ ଅବଲମ୍ବନ କରିବସିଛି । ତା'ର ସ୍ୱର୍ଗ, ପାରତ୍ରିକ ଜୀବନ, ଅମୃତତ୍ୱ ଆଦି ପ୍ରତି ବିଶ୍ୱାସ ଦୋହଲିଯାଇଛି । ସେ ମୃତ୍ୟୁ ପରେ ଅମରତ୍ୱ ଲୋଡ଼େନା; କାରଣ ତାହା ମନଭୁଲାଣିଆ କଥା ମାତ୍ର । ସ୍ୱର୍ଗ ଏକ ମନଗଢ଼ା କଳ୍ପନା । ତେଣୁ ଜୀବନକୁ ଆକଣ୍ଠ ଉପଭୋଗ କରିବାପାଇଁ କବିଙ୍କର ଆହ୍ୱାନରେ ଓମରଖାଏମୀୟ ଭାବନାର ପ୍ରତିଫଳନ ସ୍ପଷ୍ଟ ।''

(ସବୁଜରୁ ସାଂପ୍ରତିକ – ପୃ.୩୩)

ପ୍ରକୃତିପ୍ରୀତି କାଳିନ୍ଦୀ କାବ୍ୟଚେତନାର ଅନ୍ୟତମ ଦିଗ । ରୋମାଣ୍ଟିକ୍ ବିଷାଦବାଦର ଯେଉଁ ଅନୁରଣନ ତାଙ୍କ କାବ୍ୟକବିତାରେ ଉପଲବ୍ଧ ସେଥିରେ ପ୍ରକୃତି ମନୁଷ୍ୟର ଦୁଃଖରେ ସମ୍ବେଦନଶୀଳା । 'ରଜ' କବିତାରେ ଗ୍ରାମ୍ୟଜୀବନର ଚିତ୍ର ସହିତ ବିରହବେଦନାର ଧାରା ମିଶି ଏକାକାର ହୋଇଯାଇଛି । 'ପୌଷସଂଧ୍ୟା', 'ହତାଶାର

ଗାନ', 'ଲୋହିତ ବ୍ୟଥା', 'ଫଗୁଣବଂଶୀ', 'କୁହୁପ୍ରାସ' ପ୍ରଭୃତି କବିତାରେ ପ୍ରକୃତିର ଶୋଭା ସହିତ କବିଚିତ୍ତର ଆଲୋଡ଼ନ ଏକୀଭୂତ ହୋଇଯାଇଛି । ଏହି ଆଲୋଡ଼ନ ଯେଉଁ ହତାଶାସଂଜାତ ତାହାର ସ୍ପଷ୍ଟ ରୂପ ସମ୍ପର୍କରେ କବି ନୀରବ । ପୁଣି ଶିମୁଳିପାଳକୁ ସମ୍ବୋଧନ କରି କବି ଗାଇଉଠିଛନ୍ତି –

"କି ଗୀତ ତୋ ଆଗେ ଗାଇବି କହରେ ଶିମୁଳିପାଳ ?
ରକତ ମୋହର ବରଫ, ହାଡ଼ ଯେ ହୋଇଛି ପାଣି
କଣ୍ଠେ ଶୁଖିଛି ରସନା ବାସନା ନଆସେ କଥା
କ୍ଷୁଧିତ ମାନବ କାକୁତି କରଇ ପତାଇ ଥାଳ ।"
ପାସୋରି ଦେଲିରେ ଶିମୁଳିପାଳ ।"

ଏଠାରେ ପ୍ରାକୃତିକ ଶୋଭାଭରା ଶିମୁଳିପାଳକୁ ସମ୍ବୋଧନ କରି କବି କ୍ଷୁଧିତ ମାନବର ଦୁଃଖ ବେଦନାର ଗାନହିଁ ଗାଇଛନ୍ତି ।

ମାତ୍ର 'ମଧୁବିବାହ' କବିତାରେ କବି ପଲ୍ଲୀପ୍ରକୃତିର ବିପୁଳ ଶୋଭା ସହିତ ମିଳିତ ହେବାର କାମନା କରିଛନ୍ତି ।

"ବିବାହ ଶଙ୍ଖ ଉଠୁ ଗୋ ମନ୍ଦ୍ରେ ବାଜି
ପକ୍ୱ ଧାନର ବିପୁଳ ଗନ୍ଧେ
ସୋରିଷ ଫୁଲର ମାଦକ ଛନ୍ଦେ
ପୂରିଛି ଗଗନ ଭାସିଛି ଭୁବନ
ଥରିଛି ପବନ ଆଜି ।" (ମଧୁବିବାହ)

କେଉଁଠି ଗୋଠବାହୁଡ଼ା ଗାଈ, ପୋଖରୀର ହଂସ, ବନପକ୍ଷୀ, ଗ୍ରାମଶ୍ମଶାନ, ଆମ୍ବବଉଳ, ପୋଖରୀହୁଡ଼ା, ତୋଟା, ଗ୍ରାମର ସୀମନ୍ତିନୀ ପ୍ରଭୃତି ବାରମ୍ବାର କବିଚେତନାକୁ ପ୍ରଭାବିତ କରିଛନ୍ତି । 'ପୌଷମଳୟ' କବିତାରେ ପ୍ରକୃତିପ୍ରୀତିର ସ୍ୱର ସହିତ ଦାର୍ଶନିକସୁଲଭ ଚିନ୍ତା କିଭଳି ଏକୀଭୂତ ଦେଖିବା –

"ତୋଟା ତଳେ କୁଡ଼ିଆରୁ ଏଇ, କି ଶବଦ କାନେ ଆସେ ଡେଇଁ
କିଏ ଡାକେ କୁଆଁ କୁଆଁ କୁଆଁ, ପୁରାତନ ଫେରେ ହୋଇ ନୂଆ ।"

କାଳିନ୍ଦୀଚରଣଙ୍କ କବିତାର ଶୈଳୀ ବେଶ୍ ଆବୃତ୍ତିଧର୍ମୀ ଓ ମନୋମୁଗ୍ଧକର । ତହିଁରେ ରବୀନ୍ଦ୍ର କାବ୍ୟର ଛନ୍ଦପତନ ଦେଖିବାକୁ ମିଳେ । 'ଛନ୍ଦନାୟିକା' କବିତାରୁ ଉଦାହରଣଟିଏ –

"ତରୁ ପୁଣି କି ଧିଆନେ ରହିଲା ତବଧ
ଛାୟା ଅଙ୍ଗେ ଅଙ୍ଗ ଢାଳି ନଥିଲା ତ ଶବଦ

ଜୋଛନାର ସଙ୍ଗତେ ମୃଦୁ ମଧୁ ହିଲ୍ଲୋଳ
ଦୂର ନଦୀ ବାଲୁକାରେ କରୁଥିଲା ବିକଳ
ମନେ ମନେ ପୀରତିରେ ବସୁଥିଲା ରଜନୀ
ତୁମେ କିମ୍ପା ଧୀର ପଦେ ଉଭାହେଲ ସଜନୀ ।''

ଏଗୁଡ଼ିକ ଆବୃତ୍ତିଧର୍ମୀ ଓ ଏହାର ଆବେଦନ ଦୀର୍ଘସ୍ଥାୟୀ । କେବଳ ଶବ୍ଦ ଅର୍ଥ ମଧ୍ୟରେ ଏହାର ଭାବ ସୀମିତ ନୁହେଁ ବରଂ ଏହା ଅନ୍ତରକୁ ଆଲୋଡ଼ିତ କରିବାର କ୍ଷମତା ରଖେ ।

କାଳିନ୍ଦୀଚରଣ ସବୁଜ ଯୁଗରୁ ସାହିତ୍ୟ ସାଧନା ଆରମ୍ଭ କରିଥିଲେହେଁ ସମୟ ପରିବର୍ତ୍ତନର ଚିହ୍ନ ତାଙ୍କ ସୃଷ୍ଟିରେ ବାରିହୋଇପଡ଼େ । କେବେ ସେ କଳ୍ପନାବିଳାସୀ ଭାବପ୍ରବଣ କବି ତ କେବେ ବିଷାଦଜର୍ଜର ଦାର୍ଶନିକ । କେବେ ସେ ବିଶ୍ୱମାନବର ବ୍ୟଥା ବେଦନାରେ ବିଧୂର ତ କେବେ ମଣିଷର ଅମଣିଷପଣ ଦେଖି ଚକିତ । ନୂତନକୁ ସ୍ୱାଗତ କରିବା ଓ ଜୀବନକୁ ଭଲପାଇବାରେ ତାଙ୍କର ସ୍ୱାତନ୍ତ୍ର୍ୟ । ଏହି ପ୍ରତିଭାଧର ସ୍ରଷ୍ଟା ଗଦ୍ୟସାହିତ୍ୟରେ ମଧ୍ୟ ନିଜ କୃତିତ୍ୱର ପଦଚିହ୍ନ ଅଙ୍କନ କରିପାରିଛନ୍ତି ।

———

# ବୈକୁଣ୍ଠ କାବ୍ୟମାନସ ଓ ଅମ୍ବପାଳୀର ଉତ୍କଣ୍ଠା

କବି ବୈକୁଣ୍ଠନାଥ ସବୁଜଯୁଗର ବିଶିଷ୍ଟ ସାହିତ୍ୟ ସାଧକ । ସତ୍ୟବାଦୀର ଉଗ୍ରପ୍ରାଦେଶିକତାବାଦୀ ସାହିତ୍ୟ ସୃଷ୍ଟି ପରେ ସବୁଜର ଅୟମାରମ୍ଭ ଓଡ଼ିଆ ସାହିତ୍ୟ ପାଇଁ ଯଥେଷ୍ଟ ଉତ୍ସାହପ୍ରଦ ଥିଲା । ବିଶ୍ୱକବି ରବୀନ୍ଦ୍ରନାଥ 'ଗୀତାଞ୍ଜଳି' କବିତାଗ୍ରନ୍ଥ ପାଇଁ ନୋବେଲ୍ ପ୍ରାଇଜ୍ ପାଇବା ଥିଲା ସେ ସମୟରେ ସମଗ୍ର ବିଶ୍ୱପାଇଁ ଏକ ଉଲ୍ଲେଖଯୋଗ୍ୟ ଘଟଣା । ତେଣୁ ରବୀନ୍ଦ୍ରସାହିତ୍ୟର ମାନବପ୍ରୀତି ରହସ୍ୟଘନ ଚେତନା ତତ୍କାଳୀନ ଭାରତର ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟକୁ ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ପ୍ରଭାବିତ କରିଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ପରେ ବଂଗୀୟ ସାହିତ୍ୟ ଚେତନା ଆନ୍ତର୍ଜାତିକ ଭାବବଳୟ ସ୍ପର୍ଶ କରିବାକୁ ହାତ ବଢ଼ାଉଥିଲା । ତରୁଣ ବଙ୍ଗୀୟ କବିମାନେ 'କଲ୍ଲୋଳଯୁଗ'ର ସୂତ୍ରଧର ହୋଇଥିଲେ । ଜୀବନର ଉଦାତ୍ତ ସ୍ୱର ଶୁଣି ସେହି ସ୍ୱପ୍ନପ୍ରବଣ ସ୍ରଷ୍ଟାମାନସ ଏପରି ଏକ ବାସ୍ତବତା ପ୍ରତି ସଚେତନ ହୋଇଥିଲା; ଯେଉଁ ବାସ୍ତବତା ମଧ୍ୟରେ ଏକୀଭୂତ ହୋଇଯାଇଥିଲା ନିଖିଳ ଜନତା ଦୁଃଖ ଓ ଦୁର୍ବିପାକ ପ୍ରତି ଗଭୀର ମମତ୍ୱବୋଧ । ରବୀନ୍ଦ୍ରନାଥ ଶ୍ରଦ୍ଧା ଓ ଆତ୍ମୀୟତାରେ ସେମାନଙ୍କୁ 'ନବଯୁଗର ଆବାହକ' ବୋଲି ସମ୍ବୋଧନ ମଧ୍ୟ କରିଥିଲେ । ଯାହାର ପ୍ରଭାବରେ ଓଡ଼ିଆ ସାହିତ୍ୟରେ 'ସବୁଜଯୁଗ' ନାମକ ସାହିତ୍ୟିକ ଯୁଗ ସୃଷ୍ଟି ହୋଇପାରିଥିଲା ।

ସବୁଜ ସବୁ ସମୟରେ ନୂତନତ୍ୱର ବାହକ । ଜୀର୍ଣ୍ଣ ପୁରାତନର କବର ଉପରେ ସବୁଜ ଜୀବନର ଧ୍ୱଜା ଜୀବନର ପ୍ରବହମାନତାର ସୂଚକ । ନିଜକୁ ସବୁଜ ବୋଲି ଅଭିହିତ କରୁଥିବା ଏହି ସ୍ରଷ୍ଟା ପୁରୁଷମାନେ ହେଲେ ଅନ୍ନଦାଶଙ୍କର ରାୟ, କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ଶରତଚନ୍ଦ୍ର ମୁଖାର୍ଜୀ ଓ ହରିହର ମହାପାତ୍ର । ଏମାନଙ୍କ ବ୍ୟତୀତ ସବୁଜ କାବ୍ୟଚେତନାରେ ଉଦ୍‌ବୁଦ୍ଧ ହୋଇ କବିତା ରଚନା କରିଥିବା ସମକାଳୀନ କବିମାନେ ହେଲେ ଚନ୍ଦ୍ରଶେଖର ମିଶ୍ର, ଡଃ ମାୟାଧର ମାନସିଂ, କୁନ୍ତଳାକୁମାରୀ ସାବତ୍, ହରିଶ୍ଚନ୍ଦ୍ର ବଡ଼ାଳ ପ୍ରଭୃତି ।

ସବୁଜ ଯୁଗର ପାଞ୍ଚଜଣ ପ୍ରତିଭାଧର ସ୍ରଷ୍ଟା ରେଭେନ୍‌ସା କଲେଜର ଇଷ୍ଟ୍ ହଷ୍ଟେଲ୍‌ର ଅନ୍ତେବାସୀ ଥିଲେ । ଯୁବପ୍ରାଣର ଭାବପ୍ରବଣତା ଓ ନୂଆକିଛି କରିବାର ଆଗ୍ରହ ନେଇ ସେମାନେ ହାତଲେଖା ପତ୍ରିକା 'ଅବକାଶ' ଓ ପରେ ସବୁଜ ସାହିତ୍ୟ

ସମିତିର 'ଯୁଗବୀଣା' ପ୍ରକାଶ କରାଇଥିଲେ । ଏମାନେ ଭାଷାଶୈଳୀ ଓ ପ୍ରକାଶଭଙ୍ଗୀ ସବୁଥିରେ ରବୀନ୍ଦ୍ରନାଥଙ୍କର ଅନୁଗାମୀ ଥିଲେ ।

ଛାନ୍ଦସିକତା ଥିଲା ପ୍ରାଥମିକ ପର୍ଯ୍ୟାୟର ସବୁଜ କବିତାର ଅନ୍ୟତମ ବୈଶିଷ୍ଟ୍ୟ । ଛନ୍ଦ ଓ ଯତିପାତ ନିମିତ୍ତ ସେମାନେ ବଙ୍ଗୀୟ ଶବ୍ଦ ଯୋଜନା ପ୍ରତି ମଧ୍ୟ ଅନେକ ସମୟରେ ଦୁର୍ବଳତା ପ୍ରକାଶ କରିଥିବା ଜଣାଯାଏ । (ଏହାର ଏକାଧିକ ଉଦାହରଣ ସବୁଜ ଯୁଗର କବିତାରେ ସହଜଲଭ୍ୟ) ସ୍ୱପ୍ନପ୍ରବଣତା ସବୁଜଯୁଗର ଅନ୍ୟତମ ମୁଖ୍ୟ ପ୍ରବୃତ୍ତି । ଏହି ଯୁବସ୍ରଷ୍ଟାମାନଙ୍କ ମଧ୍ୟରେ ନୂତନ କିଛି ସୃଷ୍ଟି କରିବାର ଭାବପ୍ରବଣତା ରହିଥିଲା ମାତ୍ର ଜୀବନକୁ ସକଳ ଦୁଃସ୍ଥିତି ସହିତ ଆପଣେଇ ନବାର ମାନସିକତା ନଥିଲା । ତେଣୁ ବାସ୍ତବତା ପ୍ରତି ନିସ୍ପୃହତା ସୁଦୂର ପ୍ରୀତି ଥିଲା ସେମାନଙ୍କର କବିତାର ପ୍ରଥମ କଥା ।

ତେଣୁ 'କମଳ ବିଳାସୀର ବିଦାୟ' କବିତାରେ କବି ଅନ୍ନଦାଶଙ୍କର ଗାଇଥିଲେ—

''ଯିବା ପଳାଇ ଦୂରେ ସୁଦୂରେ
ସପନଲୋକେ ଗୋପନପୁରେ
ଗ୍ରହତାରକା ଏଡ଼ାଇ
ଯଉବନର ଝରଣା କୂଳେ
ମଳୟ ଯହିଁ ନିରତେ ବୁଲେ
କୁସୁମକେତୁ ଉଡ଼ାଇ ।''

ସେମାନଙ୍କର ଏହି ପଳାୟନର ଉଦ୍ଦେଶ୍ୟ ଥିଲା ଏକ ସ୍ୱପ୍ନର ଅମରାବତୀର ସନ୍ଧାନ । ସବୁଜକାଳୀନ ପ୍ରକୃତି ଚିତ୍ର ଭିତରେ ନୈରାଶ୍ୟ, ଭୟ ତଥା ବିଷାଦବୋଧ ଭରିରହିଥିଲା । ତେଣୁ ସକଳ ପ୍ରଣୟ ଆବେଦନ ନିମିତ୍ତ ପ୍ରକୃତିର ଗୁରୁତ୍ୱକୁ ସେମାନେ ସ୍ୱୀକାର କରିଥିଲେ ମଧ୍ୟ, ସେ ପ୍ରକୃତି ଥିଲା ଅଶ୍ରୁମୁଖୀ । ଏହି ବିଷାଦ ସକଳ ଆହ୍ଲାଦ ଭିତରେ କବି ଚିତ୍ତକୁ ବେଶ୍ ଦୀର୍ଘସମୟ ଘାରି ରଖିଥିଲା ।

ସବୁଜଯୁଗର ଅନ୍ୟତମ ବିଶିଷ୍ଟ ଭାବନା ଥିଲା ବିଭୁବୋଧ । ଏହି ବିଭୁ କୃଷ୍ଣ, ଆଲ୍ଲା, ଯିଶୁ ନୁହନ୍ତି, ଏ ଜୀବନ ଦେବତା, ଜୀବନ ପ୍ରିୟତମ ତଥା ଜୀବନର ଆଲୋକ; ଯାହାପାଇଁ କବିଚିତ୍ତ ସତତ ପ୍ରତୀକ୍ଷମାଣ । ଯାହା ଏକ ଅତୀନ୍ଦ୍ରିୟ ରହସ୍ୟଘନ ଚେତନାର କବିତା ହୋଇଥିଲେ ମଧ୍ୟ ପ୍ରତ୍ୟେକ ପାଠକର ଏକାନ୍ତ ଅନ୍ତରଙ୍ଗ, ଏ ଧରଣର ସବୁଜ କବିତା ଯେତିକି ରହସ୍ୟମୟ, ଯେତିକି ଭାବଗମ୍ଭୀର, ସେତିକି ପ୍ରାଣବନ୍ତ । ବୈକୁଣ୍ଠନାଥଙ୍କର 'ଯାତ୍ରାସଙ୍ଗୀତ' ସେହିଭଳି ଏକ ଅନନ୍ୟ କବିତା ଯାହାର ଆବେଦନ ନିତ୍ୟନୂତନ । ଏହିଭଳି ରୋମାଣ୍ଟିକ୍ ପ୍ରଣୟାଚ୍ଛନ୍ନ କବିଚିତ୍ତ ମଧ୍ୟକୁ ଧାର

ଧାର ଆଲୋକ ଭଳି ପଶିଆସିଥିଲା ଅତୀତ ପ୍ରୀତି, ଗ୍ରାମ୍ୟଜୀବନ ପ୍ରତି ଅନ୍ତରଙ୍ଗତା, ଦାରିଦ୍ର୍ୟ ପ୍ରତି ସମବେଦନା ତଥା ସୂକ୍ଷ୍ମତର ହୋଇ ବିପ୍ଳବର ଉଦାର ସ୍ୱରଟିଏ । ଏହି ସ୍ୱର କ୍ରମେ ସବୁଜ କାବ୍ୟଚେତନା ମଧ୍ୟକୁ ବାସ୍ତବତାର ଆବାହନ କରିଥିଲା । ଫଳରେ କବିତାରେ ମାନବବନ୍ଦନା ଆରମ୍ଭ ହୋଇଥିଲା ଓ ଦେବତାର ପାଷାଣ ବିଗ୍ରହଠାରୁ ତାକୁ ଗଢ଼ିଥିବା ଶିଳ୍ପୀକୁ ସମ୍ମାନ ଜଣାଇବାକୁ ସବୁଜକବି ଆଗଭର ହେଲା । ସେ ତଥାକଥିତ ଧର୍ମକୁ ଯାଦୁଘରର ଯୋଗ୍ୟ ବୋଲି ଘୋଷଣା କଲେ । କାଳିନ୍ଦୀଚରଣଙ୍କର 'ପୁରୀମନ୍ଦିର' ଓ 'ଯାଦୁଘର' ଭଳି କବିତା ଏହାର ପ୍ରମୁଖ ଉଦାହରଣ ।

ସବୁଜଯୁଗର ବିଶିଷ୍ଟ ସାହିତ୍ୟ ସାଧକ ବୈକୁଣ୍ଠନାଥ ତାଙ୍କର 'ଉତ୍ତରାୟଣ' କାବ୍ୟଗ୍ରନ୍ଥପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ସମ୍ମାନରେ ଭୂଷିତ । ତାଙ୍କର କବିତାରେ ଅତୀନ୍ଦ୍ରିୟ ଭାବଚେତନା ସହିତ ମାନବପ୍ରୀତି ଓ ସମର୍ପଣ ଭାବନା ଏକୀଭୂତ ହୋଇଯାଇଛି । 'ଯାତ୍ରାସଙ୍ଗୀତ' କବିତାର ପଦଟିଏ –

''ମାନସ ହଂସ ମୁଁ ମାନସେ ଯିବି ଉଡ଼ି
 ମୋ ଦୋଷେ ପଥହୁଡ଼ି ଭରମେ ଅବିରତ
ଅଳପ ତୃଷା କ୍ଷୁଧା ପାର ତୁମରି ସୁଧା
 ତୃପତ ହେଲା ଏବେ ଲୋଡ଼ଇ ଏ ମରତ ।''

ଅର୍ଥାତ୍ କବିଙ୍କପାଇଁ ପୈତୃକ ପୃଥିବୀ ଏକ ପ୍ରବୀଣ ପ୍ରକାଶ ମାତ୍ର । ନିଜ ଦୋଷରୁ ନିଜ ଅନ୍ଧକାରକୁ ବରଣ କରିଥିବା କବି ନିଜର ପରାଣ କୁଣ୍ଡରେ ସେହି ପରମ ପ୍ରିୟତମଙ୍କର ମୁରଲୀ ସ୍ୱନ ଶୁଣିପାରିଛନ୍ତି ।

ଏକାଧିକ ଗାଥା କବିତା ରଚନା ବୈକୁଣ୍ଠ କାବ୍ୟମାନସର ଅନ୍ୟ ଏକ ଉଜ୍ଜ୍ୱଳ ଦିଗନ୍ତ । 'ବୁଦ୍ଧ ବନ୍ଦନା' (୧୯୩୧), 'ମହାନିର୍ବାଣ' (୧୯୩୫), 'ନିର୍ବାଣ ଆନନ୍ଦ' (୧୯୩୫), 'ବୁଦ୍ଧ ଓ ରାହୁଲ' (୧୯୩୫), 'ପରିନିର୍ବାଣ' (୧୯୩୫), 'କିସ୍‌ସା ଗୌତମୀ' (୧୯୩୬) ଓ 'ଅମ୍ବପାଳୀର ଉତ୍କଣ୍ଠା' (୧୯୩୧) ଏ ସମସ୍ତ ବୌଦ୍ଧଯୁଗୀୟ କାହାଣୀ ଉପରେ ଆଧାରିତ । ଏହି ଅମ୍ବପାଳୀ ଥିଲେ ବୈଶାଳୀର ରାଜନର୍ତ୍ତକୀ । ବୌଦ୍ଧଯୁଗରେ ରାଜନର୍ତ୍ତକୀମାନେ 'ଜନପଦ କଲ୍ୟାଣୀ' ଭାବରେ ସମ୍ମାନର ଯୋଗ୍ୟା ଥିଲେ । ବୀର ପୁରୁଷମାନଙ୍କର ମନୋରଞ୍ଜନପାଇଁ ସେମାନେ 'ନଗରବଧୂ'ର ଜୀବନ ବିତାଉଥିଲେ । ରାଜ୍ୟର ଅନେକ ଗୋପନ ବିଷୟ ସେଠାରେ ଆଲୋଚିତ ହେଉଥିଲା ଓ ସେମାନଙ୍କର ବିଚାରକୁ ମଧ୍ୟ ସମ୍ମାନ ଦିଆଯାଉଥିଲା ।

ଆମ ପ୍ରାଚୀନ ପରମ୍ପରାରେ ଏଭଳି ତରୁଣୀମାନଙ୍କର ତ୍ୟାଗ ଓ ପ୍ରେମକଥା ବାରମ୍ବାର ବ୍ୟାଖ୍ୟା କରାଯାଇଛି । ଭାଗବତରେ ପିଙ୍ଗଳା, ରାମାୟଣରେ ଜରତା ପ୍ରଭୃତି

କେବଳ ଦେହଲୋଭୀ ନାରୀ ନଥିଲେ ସମଗ୍ର ଭାରତୀୟ ପରମ୍ପରା ସେମାନଙ୍କର ଭୋଗରୁ ଆରମ୍ଭ ହୋଇ ତ୍ୟାଗରେ ଶେଷ ହୋଇଥିବା ଜୀବନର ବିଶ୍ୱକଲ୍ୟାଣୀ ଭାବନାକୁ ସ୍ୱୀକାର କରିଛି । ରବିଠାକୁରଙ୍କର 'ଅଭିସାର' କବିତାର ରାଜନର୍ତ୍ତକୀ ବାସଦତ୍ତା ଓ 'ପତିତା' କବିତାର 'ଜରତା' ଏହିଭଳି ରୂପମୟୀ ତରୁଣୀ ଯାହାଙ୍କର ଦର୍ଶନ ପାଇବାକୁ ରାଜ୍ୟର ପ୍ରତ୍ୟେକ ସମର୍ଥ ବୀରପୁରୁଷ ନିଜର ଗୌରବ ବୋଲି ବିଚାର କରୁଥିଲେ । ସେହିଭଳି ଏକ ବିଶିଷ୍ଟ ନାରୀ ହେଉଛି ନର୍ତ୍ତକୀ ଅମ୍ବପାଳୀ ।

ଉତ୍ତର ଭାରତର ଏକ କ୍ଷୁଦ୍ରରାଜ୍ୟ ବୈଶାଳୀ ଥିଲା ସଂଘଶାସିତ । ଏହି ନଗରର ଉପକଣ୍ଠରେ ଥିବା ଆମ୍ର କାନନରୁ ଉପବନର ରକ୍ଷକ ଏକ ନବଜାତ ଶିଶୁକନ୍ୟାକୁ ପାଇଥିଲେ । ଗଣ ପରିଷଦର ଅନୁମତିକ୍ରମେ ନିଃସନ୍ତାନ ଉପବନର ରକ୍ଷକ ସେହି କନ୍ୟାକୁ ଲାଳନପାଳନ କରିଥିଲେ । ଆମ୍ରକୁଞ୍ଜରୁ ପାଇଥିବାରୁ କନ୍ୟାଟିର ନାମକରଣ କରାଯାଇଥିଲା ଅମ୍ରପାଳୀ ବା ଅମ୍ବପାଳୀ । ସେହି କନ୍ୟା ଯୌବନରେ ନୃତ୍ୟସଙ୍ଗୀତ ପଟ୍ଟିୟସୀ ହୋଇଥିଲା ଓ ନଗରୀର ବାର୍ଷିକ ନୃତ୍ୟ ଉତ୍ସବରେ ଅଂଶଗ୍ରହଣ କରି 'ରାଜନର୍ତ୍ତକୀ' ଭାବରେ ଗଣପରିଷଦଦ୍ୱାରା ସ୍ୱୀକୃତ ମଧ୍ୟ ହୋଇଥିଲା । ଅମ୍ବପାଳୀକୁ ଲାଭ କରିବାର ଆଶାରେ ନଗରର ପ୍ରତ୍ୟେକ ବୀରପୁରୁଷ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ କରିବାରୁ ଶାସକବର୍ଗ ତାକୁ 'ନଗରବଧୂ' ଭାବରେ ଘୋଷଣା କରିଥିଲେ । କଥିତଅଛି ଯେ, ଶତ୍ରୁରାଜ୍ୟ ମଗଧର ସମ୍ରାଟ୍ ବିମ୍ବିସାର ଅମ୍ବପାଳୀର ସୌନ୍ଦର୍ଯ୍ୟର ଚର୍ଚ୍ଚା ଶୁଣି ଛଦ୍ମବେଶରେ ତା'ର ଆତିଥ୍ୟ ଗ୍ରହଣ କରିଥିଲେ । ବୈଶାଳୀର ଗଣପରିଷଦ ବିମ୍ବିସାରଙ୍କୁ ବନ୍ଦୀ କରିବାର ଚେଷ୍ଟା କରୁଥିବାବେଳେ ଅମ୍ବପାଳୀ ତାଙ୍କୁ କୌଶଳରେ ବୈଶାଳୀର ସୀମା ପାର କରାଇବାରେ ସାହାଯ୍ୟ କରିଥିଲେ । ଶତ୍ରୁରାଜ୍ୟର ସମ୍ରାଟ୍‌ଙ୍କ ସହିତ ସମ୍ପର୍କ ରଖିଥିବା ଯୋଗୁଁ ଅମ୍ବପାଳୀ ଗଣପରିଷଦ ଦ୍ୱାରା ଅଭିଯୁକ୍ତ ହୋଇଥିଲେ । ଅମ୍ବପାଳୀକୁ ପାଇବାପାଇଁ ବିମ୍ବିସାର ବୈଶାଳୀ ଆକ୍ରମଣ କରି ଜୟଲାଭ କରିଥିଲେ ମାତ୍ର ଅମ୍ବପାଳୀ ବୈଶାଳୀ ତ୍ୟାଗକରି ବିମ୍ବିସାରଙ୍କ ସହିତ ମଗଧ ଯିବାକୁ ଚାହିଁଲେନାହିଁ ।

ସେ ଜୀବନର ସକଳ ଆଶାରୁ ମୁକ୍ତି ପାଇବାପାଇଁ ପରମକାରୁଣିକ ବୁଦ୍ଧଙ୍କର ଶରଣାପନ୍ନ ହେଲେ ଓ ଜୀବନର ଉତ୍ତର କାଳରେ ସନ୍ନ୍ୟାସିନୀର ଜୀବନଯାପନ କରିଥିଲେ । ଅମ୍ବପାଳୀ ଜୀବନର ଏହି ଆଶା, ଅଭୀପ୍ସା, ଅପ୍ରାପ୍ତି ଓ ଆତ୍ମସମର୍ପଣର ଭାବନାକୁ ନେଇ ବିଶିଷ୍ଟ ଗାଳ୍ପିକ ସୁରେନ୍ଦ୍ର ମହାନ୍ତି 'ଅମ୍ରପଲ୍ଲୀ' ଓ ମନୋଜ ଦାସ 'ଅମ୍ବାପାଲ୍ଲୀ' ଶୀର୍ଷକ ଗଳ୍ପ ରଚନା କରିଛନ୍ତି । ସୁରେନ୍ଦ୍ର ମହାନ୍ତିଙ୍କ 'ମହାନିର୍ବାଣ' ଗଳ୍ପରେ ବୌଦ୍ଧ ଧର୍ମର ଦୁର୍ବଳ ଦିଗ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । 'ତଟନିରଞ୍ଜନା' ନାଟକରେ ନାଟ୍ୟକାର ବିଜୟ ମିଶ୍ର ମଧ୍ୟ ବୌଦ୍ଧଧର୍ମର ଊର୍ଦ୍ଧ୍ୱରେ ଜୀବନ ଧର୍ମର

ଉଦ୍‌ଘୋଷଣା କରିଛନ୍ତି ଓ ମଣିଷର କାମନା ଯୁଗ ପରେ ଯୁଗ ବୁଦ୍ଧମାନଙ୍କୁ ଜନ୍ମଦେବ ବୋଲି ବ୍ୟକ୍ତ କରିଛନ୍ତି । ଡଃ ଅର୍ଚ୍ଚନା ନାୟକଙ୍କର ବହୁ ଅଭିନୀତ ନାଟକ 'ଅମ୍ବପାଲୀ'ରେ ରାଜନର୍ତ୍ତକୀ ଜୀବନର ଅବସାନ ଓ ତହିଁରୁ ଉତ୍ତରଣର ପ୍ରୟାସ ଭିତରେ ସେ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟହେବା କଥାହିଁ କୁହାଯାଇଛି ।

'ଅମ୍ବପାଳୀର ଉତ୍କଣ୍ଠା' କବିତାରେ ଅମ୍ବପାଳୀ ଏକ ତରୁଣୀ ମାତ୍ର ନୁହେଁ ପରମାତ୍ମାଙ୍କ ଅପେକ୍ଷାରେ ଉନ୍ମୁଖ ଏକ ନାରୀସତ୍ତା । ଏହି ପ୍ରତୀକ୍ଷା ଭିତରେ ରବି ଠାକୁରଙ୍କ ପ୍ରତୀକ୍ଷା ଓ ସମର୍ପଣର ଭାବନାର ସ୍ୱର-ସାମ୍ୟ ଅନୁସନ୍ଧାନ କରାଯାଇପାରେ, 'ଗୀତାଞ୍ଜଳି'ର ଏହି କବିତା –

''ଦୁଆର ଆମାର ଭେଙ୍ଗେ ଶେଷେ
ଦାଁଡାଲେ ଯେଇ ଆପନି ଏସେ
ନୟନ ଜଲେ ଭାସେ ହ୍ରିଦୟ
ଚରଣ ତଲେ ଲୁଟଲରେ –'' (୩୭ତମ କବିତା)

ଅନୁରୂପଭାବର ଏକାଧିକ କବିତା ମଧ୍ୟରୁ ଆଉ ଗୋଟିଏ କବିତାର ପଦଟିଏ–

''ଯେ ଲତାଟି ଆଛେ ଶୁକାୟେଛେ ମୂଲ
କୁଁଡ଼ି ଧରେ ଶୁଧୁ ନାହିଁ ଫୋଟେ ଫୁଲ
ଆମାର ଜୀବନେ ତବ ସେବା ତାଇ
ବେଦନାର ଉପହାରେ
ପୂଜା ଗୌରବ ପୁଣ୍ୟ ବିଭବ କିଛିନାଇଁ, ନାଇଁ ଲେଶ
ଏ ତବ ପୂଜାରୀ ପରୀୟା ଏସେଛେ ଲଜ୍ଜାର ଦୀନବେଶ ।''

ଜୀବନଦେବତା ସହିତ ମିଳିତ ହେବାର ଉତ୍କଣ୍ଠା ରବୀନ୍ଦ୍ର କାବ୍ୟ କବିତାର ଅନ୍ୟତମ ବିଶିଷ୍ଟ ବିଭବ; ଯାହାକୁ ସବୁଜକବି ଓ ପରବର୍ତ୍ତୀ କାଳର ଅନେକ କବି ଗ୍ରହଣ କରିଛନ୍ତି, ଅମ୍ବାପାଳୀର ପ୍ରତୀକ୍ଷା ଭିତରେ ଭାଗବତର 'କୁବୁଜା'ର ପ୍ରତୀକ୍ଷା ବା ରାମାୟଣରେ 'ଶବରୀ'ର ପ୍ରତୀକ୍ଷାର ଐକାନ୍ତିକତା ଲକ୍ଷ୍ୟ କରିହୁଏ । ବୁଦ୍ଧତ୍ୱ ପ୍ରାପ୍ତି ପରେ ପ୍ରଭୁ ତଥାଗତ ଶିଷ୍ୟ ପରିବେଷ୍ଟିତ ହୋଇ ବୈଶାଳୀ, କପିଳବାସ୍ତୁ ଭଳି ରାଜ୍ୟରେ ଭ୍ରମଣ କରୁଥିଲେ ଓ ଉପଦେଶ ପ୍ରଦାନ କରୁଥିଲେ । ସେ ସମୟରେ ଅନେକ ଦୁଃଖୀ, ଦୁର୍ବଳ, ନିମ୍ନବର୍ଗର ମନୁଷ୍ୟ ପ୍ରଭୁଙ୍କର କୃପା ପାଇବାକୁ କ୍ଷମ ହୋଇଥିଲେ । ସେହିଭଳି ଏକ ଅନନ୍ୟ ପ୍ରତୀକ୍ଷାର ମୁହୂର୍ତ୍ତରେ ଅମ୍ବପାଳୀ ନିଜର ସହଚରୀକୁ ସମ୍ବୋଧନ କରି ବାରମ୍ବାର କହେ –

"ଆସିବେ ବୁଦ୍ଧ, ଫୁଟିବ ପଦ୍ମ ମୋ କୁଟୀରେ ସହିରେ"

ଦୀର୍ଘ ଅନୁଭୂତିକୁ ପୁଞ୍ଜିକରି ଅମ୍ବପାଳୀର ବୁଝିବାରେ ବାକିନାହିଁ ଯେ ତା'ର ଯୌବନ କାଳ ନଷ୍ଟ ହୋଇଯାଇଛି । ପରିସ୍ଥିତିର ତାଡ଼ନାରେ ସେ ନଗରବଧୂ ଭୂମିକାରେ ନିର୍ବିକାରରେ ଅଭିନୟ କରିଛି ସତ୍ୟ ମାତ୍ର ତା'ର ହୃଦୟର ନିଭୃତରେ ଥିବା ଦେବତାପାଇଁ ନିର୍ଦ୍ଦିଷ୍ଟ ଆସନଟି ଖାଲିପଡ଼ିଛି । ତା'ର ସାନ୍ନିଧ ଟିକିଏ ପାଇବାପାଇଁ ଯୁଦ୍ଧବିଗ୍ରହ ବା ଛଳନାକୁ ଆଶ୍ରୟ କରିଥିବା ତଥାକଥିତ ବୀର ପୁରୁଷମାନଙ୍କୁ ସେ ସଙ୍ଗଦାନ କରି ଅନୁଗୃହୀତ କରିଛି ମାତ୍ର କାହାକୁ ହେଲେ ଜୀବନ ଦେବତାର ଆସନରେ ବସାଇପାରିନାହିଁ; କିନ୍ତୁ ତା'ର ଦୀର୍ଘ ପ୍ରତୀକ୍ଷାକୁ ଫଳବତୀ କରି ସେଦିନ ଭଗବାନ୍ ବୁଦ୍ଧ ତା'ର ଦ୍ୱାରଦେଶରେ ଉପଗତ ହେବେ । ସେହି ପରମ କାରୁଣିକଙ୍କୁ ସେ କିଭଳି ପରିଚର୍ଯ୍ୟା କରିବ ସେ ନେଇ ତା'ର ଆକୁଳତାର ଅନ୍ତ ନାହିଁ । କେବଳ ସେ ତାଙ୍କର ପାଦ ଧୋଇଦେଇପାରିବ ଓ ନିଜର ଘନ କେଶରାଶି ନେଇ ସେହି ପଦଯୁଗଳକୁ ପୋଛିଦେଇପାରିବ ।

ପ୍ରତୀକ୍ଷାର ସେହି ଅନୁପମ ମୁହୂର୍ତ୍ତରେ ଅମ୍ବପାଳୀ ଶରୀରରେ ବେପଥୁ ଓ ପୁଲକ ଜାତ ହେଉଛି । ବାମବାହୁ ଓ ବାମଚକ୍ଷୁ ସ୍ଫୁରିତ ହୋଇ ଶୁଭ ମୁହୂର୍ତ୍ତର ସୂଚନା ଦେଉଛି । (ବାମ ଅଙ୍ଗ, ଚକ୍ଷୁ, ବାହୁ ସ୍ଫୁରଣ ହେବା ନାରୀର ସୌଭାଗ୍ୟର ଲକ୍ଷଣ ବୋଲି ଶକୁନ ଶାସ୍ତ୍ର କହେ)

ବୁଦ୍ଧଦେବଙ୍କର ପଦପାତରେ ଲକ୍ଷ ଲକ୍ଷ ସ୍ଥଳପଦ୍ମ ଫୁଟିଉଠିବ ଓ ଉଷାର ଅରୁଣ ସହିତ ରାଜନର୍ତ୍ତକୀ ଅମ୍ବପାଳୀର ବାସଭବନ ହସିଉଠିବ । ବୁଦ୍ଧଙ୍କ ଆଗମନରେ ତା'ର ସକଳ ସଞ୍ଚିତ ବ୍ୟଥା ବେଦନାର ଉପଶମ ହେବ ଓ ଜୀବନ ଧନ୍ୟ ହୋଇଯିବ । ରାଜନର୍ତ୍ତକୀ ଅମ୍ବପାଳୀ ଦେହର ନଶ୍ୱରତା ସମ୍ପର୍କରେ ଜାଣେ । ଯୌବନ ଥରେ ଗଲେ ଆଉ ଫେରିବାରନାହିଁ ବୋଲି ଜାଣେ । ଦେହର ନଶ୍ୱରତାକୁ ନେଇ ସେ ଦୁଃଖିତ ସତ୍ୟ ମାତ୍ର ବିବ୍ରତନୁହେଁ । କାରଣ ଜଗତ ଆଲୋକଙ୍କର କରୁଣା କଣିକା ପାଇବାପାଇଁ ଶାରୀରିକ ସୌନ୍ଦର୍ଯ୍ୟର ଆବଶ୍ୟକତାନାହିଁ, ଅଛି ସମର୍ପଣଭାବର ନିବିଡ଼ତା, ବିଖ୍ୟାତ ଆଲୋଚକ Mathew Arnoldଙ୍କ ମତରେ –

The superior character of truth and seriousness in the matter and substance of the best poetry, is inseparable from the superiority of diction and movement marking its style and manner.

ଅର୍ଥାତ୍ ଭାବ ଓ ଭାଷାର ସୁସମନ୍ୱୟରେହିଁ ଉତ୍ତମ କବିତା ସୃଷ୍ଟି ସମ୍ଭବ ହୋଇପାରେ । ଉତ୍ତମ କବିତା ସତ୍ୟ ଓ ଗାମ୍ଭୀର୍ଯ୍ୟର ବୈଶିଷ୍ଟ୍ୟ ନେଇ ଭୂମିଷ୍ଠ

ହୋଇଥାଏ, ଯାହା ତା'ର ଛନ୍ଦ, ଭାଷା ତଥା ପ୍ରକାଶଭଙ୍ଗୀରେ ଅନନ୍ୟ ପାଲଟିଯାଏ । ସେହି ଦୃଷ୍ଟିରୁ 'ଅମ୍ବପାଳୀର ଉତ୍‌କଣ୍ଠା' ଏକ ଉତ୍କୃଷ୍ଟ କବିତା ।

ଅମ୍ବପାଳୀ ଏହା ମଧ୍ୟ ଜାଣେ ଯେ ମୃତ୍ୟୁ ସମସ୍ତ କାମନାର ଶେଷ । ମୃତ୍ୟୁ ହିଁ ଜୀବନର ଶେଷ ଆଶ୍ରୟସ୍ଥଳ ! ତା'ର ରକ୍ତିମ ଅଧର, କୁଟିଳ ଭ୍ରୂଭଙ୍ଗୀ, ଉତ୍ତାଳ ଯୌବନ ସବୁ ନଶ୍ୱର । ତା'ର ପୂଜାକୁସୁମ ମଧ୍ୟ ଦୀର୍ଘ ପ୍ରତୀକ୍ଷା ପରେ ନଷ୍ଟ ହୋଇଯାଇଛି । ତଥାପି ସେ ତା' ଜୀବନର ଏକମାତ୍ର ସମ୍ପତ୍ତି 'ପ୍ରତୀକ୍ଷା'କୁ ତଥାଗତଙ୍କ ଚରଣତଳେ ଅର୍ପଣ କରିବ ଏବଂ ସମର୍ପଣର ଦିବ୍ୟ ଆନନ୍ଦ ଅନୁଭବ କରିବ ।

ପୁଣି ସଖୀକୁ ସମ୍ବୋଧନ କରି ଅମ୍ବପାଳୀ କହେ ଯେ, କେଉଁ ପ୍ରିୟଜନର ବାର୍ତ୍ତା ନେଇ କୋକିଳର କୁହୁତାନ ମଳୟର କୁଞ୍ଜରେ ଭରିଯାଉଛି । ଭ୍ରମର ଗୁଞ୍ଜନରେ ମଧ୍ୟ ସେହି ପ୍ରିୟ ଆଗମନର ବାର୍ତ୍ତା ପ୍ରଚାରିତ ସେହି ତଥାଗତଙ୍କର ଆଗମନୀ ସଙ୍ଗୀତ ଗାଇ ମଳୟ ମଧ୍ୟ ପୁଲକିତ ହେଉଛି । ଏ ସମସ୍ତ ଉଦାହରଣ ଭିତରେ କବି ସାମଗ୍ରିକ ଭାବରେ ଏକ ପ୍ରାକୃତିକ ପରିବେଶର ଅବତାରଣା କରିଛନ୍ତି; ଯେଉଁ ପରିବେଶ ବୁଦ୍ଧଙ୍କର ପାଦଶବ୍ଦ ଶୁଣିବାକୁ ଉତ୍କୀର୍ଣ୍ଣ ହୋଇ ରହିଛି ।

ପରବର୍ତ୍ତୀ ପର୍ଯ୍ୟାୟରେ ଅମ୍ବପାଳୀ ନିଜର ତ୍ରୁଟି ବୁଝିପାରିଛି ଯେ ପରମ କାରୁଣିକ ବୁଦ୍ଧ ଚିର ଭିକ୍ଷୁକ । ତେଣୁ ତାଙ୍କର ଉପହାର ଲୋଡ଼ାନାହିଁ, କେବଳ ମାତ୍ର ଭିକ୍ଷା ଲୋଡ଼ା । ସତେ କ'ଣ ସେହି ପ୍ରଶାନ୍ତ ଭିକ୍ଷୁ ତାକୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରାଇବେ ? ଅମ୍ବପାଳୀ ମନରେ ଅଶେଷ ଉତ୍କଣ୍ଠା –

''ସେ ଚିର ମୁକ୍ତ ଚିର ପ୍ରଶାନ୍ତ
ଦେବେ କି ଭିକ୍ଷୁ-ଦୀକ୍ଷା ?
ଭିକ୍ଷୁର ଥାଳ ଶିରେ ବହି ନିତି
ବିଶ୍ୱେ ମାଗିବି ଭିକ୍ଷା ।''

ଚିର ମୁକ୍ତ ସେହି ମହିମାମୟ ପରମକାରୁଣିକ ବୁଦ୍ଧ ସତେ କ'ଣ ତାଙ୍କୁ ଭିକ୍ଷୁକର ଦୀକ୍ଷା ଦେବେ ? ଏ ଚିନ୍ତା ଅମ୍ବପାଳୀ ପାଖରେ ସୀମିତ ରହିନାହିଁ । ଏକା କବିଙ୍କ ଚିନ୍ତା ଭିତରକୁ ସଂକ୍ରମିତ ହୋଇଛି ଓ କବିର ବ୍ୟକ୍ତିଗତ ଜୀବନ ମଧ୍ୟ ସେହି କରୁଣାମୟଙ୍କ କରୁଣା ଲାଭପାଇଁ ଏକ ଅସରନ୍ତି ପ୍ରତୀକ୍ଷା ପାଲଟିଯାଇଛି । କବିଙ୍କର ଏକମାତ୍ର ଆପଣାର ହେଉଛି ଅବଶିଷ୍ଟ ଜୀବନ । ପୂର୍ବରୁ ନଷ୍ଟ କରିଦେଇଥିବା ଯୌବନ ପ୍ରତି ଅମ୍ବପାଳୀର ମନୋଭାବ ଯେକୌଣସି ଉତ୍ତରଣ ପ୍ରୟାସୀ ମନୁଷ୍ୟର ମନୋଭାବ ସହିତ ସାମଞ୍ଜସ୍ୟ ରକ୍ଷା କରିଥାଏ ।

ତେଣୁ ଅମ୍ବପାଳୀର କାମନାରେ ଜଗତବନ୍ଧ୍ୟ ବୁଦ୍ଧଙ୍କର ଆଗମନ ଫଳରେ ରୁକ୍ଷ ଧରଣୀରେ ଜୀବନର ବନ୍ୟା ଖେଳିଯିବ, ନିଜର ଜୀବନ ଯଦି ଅମ୍ବପାଳୀ ବୁଦ୍ଧଙ୍କୁ ଅର୍ପଣ କରିବେ, ସେ ତାହା ଗ୍ରହଣ କରିବେ ତ ? ଚିର ପ୍ରିୟତମ ବୁଦ୍ଧଙ୍କୁ ଦେବାପାଇଁ ଜୀବନ ବ୍ୟତୀତ ଅମ୍ବପାଳୀର ଅଧିକ ଅବା କ'ଣ ରହିଛି ?

ଏହି କବିତା ମଧ୍ୟରେ ମଧୁସୂଦନ ରାଓଙ୍କର 'ଜୀବନଚିନ୍ତା' ତଥା ଗଙ୍ଗାଧରଙ୍କର 'ଭକ୍ତି' କବିତାର ଭାବସାମ୍ୟ ଲକ୍ଷ୍ୟ କରିହୁଏ ।

''ଯୁବତୀର ରକ୍ତାଧର, ରମ୍ୟଜ୍ୟୋତି ନୟନର
ସ୍ୱର୍ଣ୍ଣ ଘନସମ ବକ୍ଷ ଚାରୁ ପଦ୍ମାନନ
ଇନ୍ଦ୍ରଧନୁ ଶୋଭାସମ ପଳାନ୍ତି ବହନ ।'' (ଜୀବଚିନ୍ତା)

ଅଥବା

କିଦେଇ ପୂଜିବି ଯାହା ମୁଁ ଦେଖୁଛି
ସବୁ ତୁମରି ପ୍ରସାଦ
ଯାହା ପରସାଦ ତାକୁ ଅରପିଲେ
ହେବ ସିନା ଅପରାଧ ''
''ମୁଁ'କାର ମାତର ମୋର ବୋଲି କେହି
କହିବାକୁ ନାହିଁ ବାଟ
ଦୂରୁ ଶ୍ରୀଚରଣେ ଅର୍ପଣ କରୁଛି
ଘେନ ତା ବିଶ୍ୱ ସମ୍ରାଟ ।'' (ଭକ୍ତି)

ଧନୀ ପୁତ୍ରର ପ୍ରତୀକ୍ଷାରେ ଉଜାଗର ରହିଥିବା ପିଙ୍ଗଳା ପ୍ରାତଃକାଳରେ ଚିନ୍ତାକରେ—

''ନିକଟେ ଅଛି ମୋର ଭର୍ତ୍ତା
ସର୍ବ ସମ୍ପଦ ସୁଖଦାତା
ଅନାଥନାଥ ଜନ ହିତା
ସୁଗତି ଗତିର ବିଧାତା ।''

x x x x

''ମୋ ପ୍ରାଣନାଥ ଅଛି ପାଶେ
ମୁହିଁ ନ ଦେଖେ ମୋହବଶେ ।''
(ଭାଗବତ ୧୧ଶ ସ୍କନ୍ଧ, ୯ମ ଅଧ୍ୟାୟ)

ଅନୁରୂପଭାବରେ ଜୀବନର ଆଲୋକକୁ ସମ୍ମୁଖରେ ଦେଖିବାର ତୀବ୍ର ଉତ୍କଣ୍ଠା ଅମ୍ବପାଳୀକୁ ଏକ ଦିବ୍ୟ ନାରୀସତ୍ତାରେ ପରିଣତ କରିଛି । ତା'ର ସକଳ ପାପତାପ ନଷ୍ଟହୋଇଛି ଓ ସେ ପରମପୁରୁଷର କରୁଣାଭିକ୍ଷାପାଇଁ ନିଜକୁ ପ୍ରସ୍ତୁତ କରିଛି ।

ସବୁଜଯୁଗର ନିରୂତା କବି ବୈକୁଣ୍ଠନାଥଙ୍କ ଭିତରେ ଏଭଳି ଏକ ଦରଦୀ କାବ୍ୟସତ୍ତା ବିଦ୍ୟମାନ ଯେ ପୃଥିବୀ ତା'ପାଇଁ ପ୍ରବାସ । ଅମୃତତ୍ୱ ଲାଭପାଇଁ ମନୁଷ୍ୟର ପ୍ରୟାସକୁ କାମନା ଓ ବାସନା ବିଡ଼ମ୍ବିତ କରିଦିଅନ୍ତି । କାମନାଜର୍ଜରିତା ଅମ୍ବପାଳୀ ସତେଯେପରି କବିଙ୍କର ବ୍ୟକ୍ତିସତ୍ତାର ବେଦନାବିଧୂର ପ୍ରତିରୂପ । ବୁଦ୍ଧ ଏଠାରେ କୌଣସି ନିର୍ଦ୍ଦିଷ୍ଟ ଧର୍ମପ୍ରଚାରକ ମହାପୁରୁଷ ନୁହନ୍ତି, 'ଯାତ୍ରା' ସଙ୍ଗୀତର ଜୀବନଦେବତା । ଜୀବନଆଲୋକ ତଥା ସମଗ୍ର ବିଶ୍ୱକୁ ଆଲୋକିତ କରୁଥିବାର କ୍ଷମତା ରଖୁଥିବା ମହିମାମୟ ଭଗବତ୍‌ସତ୍ତା ।

ଗାଥା କବିତା ଶୀର୍ଷକରେ ଆଲୋଚନା କରାଯାଉଥିବା ଏହି କବିତାକୁ ଏକ ରହସ୍ୟବାଦୀ ଚିନ୍ତାଶୀଳ କବିତା ଭାବରେ ଗ୍ରହଣକରାଯିବା ଅପ୍ରାସଙ୍ଗିକ ନୁହେଁ । (ଯିଶୁଖ୍ରୀଷ୍ଟ ମଧ୍ୟ ନିଜର ଧର୍ମ ପ୍ରଚାର କରୁଥିବା ସମୟରେ ଜଣେ ଧନୀ ବ୍ୟକ୍ତିଙ୍କ ଗୃହରେ ଅତିଥି ହୋଇଥିଲେ । ଧନୀ ବ୍ୟକ୍ତି ଖ୍ରୀଷ୍ଟଙ୍କୁ ନିମନ୍ତ୍ରଣ କରିଥିଲେହେଁ ତାଙ୍କର ଅନ୍ୟାନ୍ୟ ବନ୍ଧୁଚର୍ଚ୍ଚାରେ ଅଧିକ ଆଗ୍ରହ ଦେଖାଇଥିଲେ; କିନ୍ତୁ 'ମେରି ମ୍ୟାକ୍‌ଡେଲେନ୍' ନାମ୍ନୀ ଜଣେ ପତିତା ତରୁଣୀ ଯିଶୁଙ୍କ କ୍ଳାନ୍ତିରେ ଥକିପଡୁଥିବା ଧୂଳି ଧୂସର ଫଟା ପାଦକୁ ଧୋଇ ନିଜର କେଶରାଶିରେ ପୋଛିଦେଇଥିଲେ । ସେ ସମୟରେ ଅନ୍ୟମାନେ ଏହି କାର୍ଯ୍ୟକୁ ପରିହାସ କରିଥିଲେ । କିନ୍ତୁ ଯିଶୁଖ୍ରୀଷ୍ଟ ପୁନର୍ଜୀବନ ଲାଭ କରିଥିବା କାଳରେ ଯେଉଁ କେତେକ ମୁଷ୍ଟିମେୟ ଅନୁଗତ ତାଙ୍କର ଦର୍ଶନ କରିଥିଲେ, ତାଙ୍କ ଭିତରେ ସେହି ପତିତାନାରୀ ଅନ୍ୟତମ ଥିଲେ ବୋଲି ବାଇବେଲ୍ କହେ ।

---

# କବି ମାୟାଧର ମାନସିଂହଙ୍କ କବିତାରେ ପ୍ରକୃତି

କବି ମାୟାଧର ମାନସିଂହ ଓଡ଼ିଆ ସାହିତ୍ୟ ଜଗତରେ ଏକ ଅନନ୍ୟ ପ୍ରତିଭା । କବିତ୍ୱର କୋମଳତା ସହିତ ସମାଲୋଚକର ସୂକ୍ଷ୍ମଧୀମତ୍ତା ସମଭାବରେ ତାଙ୍କର ସ୍ରଷ୍ଟାମାନସକୁ ପ୍ରଭାବିତ କରିଛି । ତାଙ୍କର ସାହିତ୍ୟସାଧନାର ସମୟ ୧୯୨୫ରୁ ୧୯୭୩ ପର୍ଯ୍ୟନ୍ତ ବିସ୍ତୃତ । ଧୂପ, ହେମଶସ୍ୟ, ହେମପୁଷ୍ପ, କୋଣାର୍କ, ମାଟିବାଣୀ, ଜୀବନଚିତା, ବାପୁତର୍ପଣ, କ୍ରୁଶ, ସିନ୍ଧୁ ଓ ବିନ୍ଦୁ, ସ୍ୱରାଜ୍ୟାଶ୍ରମ, ଅକ୍ଷତ, ଗୀତରେଣୁ, ସେଦିନର କବିତା ପ୍ରଭୃତି ତାଙ୍କର ସୃଷ୍ଟି । ଏତଦ୍‌ବ୍ୟତୀତ ଉପେକ୍ଷିତା, ନିକ୍ୱଣ, ସାଧବଝିଅ, ଶୁଭଦୃଷ୍ଟି, ଜେମା ଓ କମଳାୟନ ତାଙ୍କ ରଚିତ କାବ୍ୟସମୂହ । ନଷ୍ଟନୀଡ଼, ବାରବାଟୀ ଓ ବୁଦ୍ଧ ନାମକ ତିନୋଟି ନାଟକ ଓ ରାଜକବି ଉପେନ୍ଦ୍ର, ପୁଷ୍ପିତା, ପୂଜାରିଣୀ, ବୁଦ୍ଧ, ଶାସନଚକ୍ର ଓ ଦୁର୍ଭିକ୍ଷ ହେଉଛି ତାଙ୍କ ରଚିତ କାବ୍ୟନାଟିକା । ତାଙ୍କର ଭ୍ରମଣକାହାଣୀ 'ପଶ୍ଚିମ ପଥିକ' ଓଡ଼ିଆ ଭ୍ରମଣ ସାହିତ୍ୟ କ୍ଷେତ୍ରରେ ସ୍ୱତନ୍ତ୍ର ଉଲ୍ଲେଖ ଦାବି କରେ, ମାଟିର ମହାକବି ସାରଳାଦାସ, ସରସ୍ୱତୀ ଫକୀରମୋହନ, ଓଡ଼ିଆ ସମାଜ ଓ ସାହିତ୍ୟ, ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ, ଶିକ୍ଷାବିତ୍‌ର ଗାଥା, ଜୀବନପଥ ଭଳି ଗଦ୍ୟସୃଷ୍ଟିରେ ଆମେ ଜଣେ ସ୍ଥିତଧୀ ଚିନ୍ତାଶୀଳ ସ୍ରଷ୍ଟାଙ୍କୁ ଭେଟି ମୁଗ୍ଧ ହେଉ । ଓଡ଼ିଆ ସାହିତ୍ୟର ଇତିହାସକୁ ଇଂରାଜୀଭାଷାରେ ରଚନା କରି ସେ ସର୍ବଭାରତୀୟ ସ୍ତରରେ ଓଡ଼ିଶାର ଅତୀତ ଗୌରବଗାଥା ଉପସ୍ଥାପନ କରିପାରିଛନ୍ତି । ସେକ୍ସପିୟର ଓ କାଳିଦାସଙ୍କ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ ତାଙ୍କର ସାହିତ୍ୟ ଅନ୍ୱେଷାର ପରିଚାୟକ ।

ପ୍ରକୃତି ସହିତ କବିର ସମ୍ପର୍କ କେଉଁ ଅନାଦି କାଳରୁ ସୃଷ୍ଟି ହୋଇଛି ତା'ର ଇତିହାସ ନାହିଁ, ମାତ୍ର ସ୍ରଷ୍ଟାଙ୍କର କାବ୍ୟ ହେଉଛି ସମଗ୍ର ପ୍ରକୃତି ଓ କବିର ଜଗତ ହେଉଛି ଅନ୍ୟ ଏକ ଭିନ୍ନ ଜଗତ । ଯେଉଁଠି କବି ଦ୍ୱିତୀୟ ଈଶ୍ୱରର ମର୍ଯ୍ୟାଦାରେ ଜାଜ୍ୱଲ୍ୟମାନ ।

''ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତି
ଯଥାଽସ୍ମୈ ରୋଚତେ ବିଶ୍ୱ ତଥୈବ ପରିବର୍ତ୍ତତେ ।''

ପ୍ରକୃତିର ଦୃଶ୍ୟମାନ ସୌନ୍ଦର୍ଯ୍ୟ ମଧ୍ୟରେ ସ୍ରଷ୍ଟାର ଚିତ୍ର ସମନ୍ୱିତ ହୋଇ ତାହାକୁ ଏକ ଅନିର୍ବଚନୀୟ କଳାସୃଷ୍ଟିରେ ରୂପାନ୍ତରିତ କରେ । ମନୁଷ୍ୟର ଅଶ୍ରୁ, ବିଷାଦ,

ନୈରାଶ୍ୟ, ପ୍ରେମ, ପ୍ରଣୟ, ଈର୍ଷା, ବିରହ, ଆଶା, ରୋମାଞ୍ଚ, ସହିଷ୍ଣୁତା, ପବିତ୍ରତା ଭଳି ସକଳ ମାନବୀୟ ଗୁଣ ପ୍ରକୃତିଦ୍ୱାରାହିଁ ପରିପୁଷ୍ଟ ହୁଏ ଓ ତାହା ମାଧ୍ୟମରେ ଉପଲବ୍ଧ ହୁଏ । ପ୍ରକୃତି ମଧ୍ୟରେ ଏହି ଗୁଣମାନଙ୍କର ଉପଲବ୍ଧି କରିବା ରୋମାଣ୍ଟିକ୍ ଯୁଗର ଅନ୍ୟତମ ପ୍ରେରଣା ସ୍ରୋତ ବୋଲି କହିବାହିଁ ଯୁକ୍ତିସଙ୍ଗତ ମନେହୁଏ ।

ଏହି ରୋମାଣ୍ଟିକ୍ ଯୁଗ ଇଂଲଣ୍ଡରେ ସେଲି, କୀଟ୍ସ, ବାଇରନ୍ ଓ ୱାର୍ଡସୱାର୍ଥଙ୍କ ସମୟରେ ଆରମ୍ଭ ହୋଇଥିଲା । ବ୍ୟକ୍ତିଗତ ପ୍ରେମ କବିତାକୁ କଳାତ୍ମକ ଭାବରେ ସାର୍ବଜନୀନ କରି ପ୍ରକାଶ କରିବା ତଥା ଅତୀତ ଗୌରବ ସ୍ମରଣରେ ବିଷାଦବୋଧର ଉଜ୍ଜୀବନ କରିବା ରୋମାଣ୍ଟିକ୍ ସାହିତ୍ୟର ପୁଣ୍ୟପ୍ରବୃତ୍ତି । ଏଥି ସହିତ ପ୍ରକୃତିପ୍ରୀତି, ଅତୀତପ୍ରୀତି, ପଲ୍ଲୀପ୍ରୀତି, ବିଷାଦବୋଧ, ସାଧାରଣ ଜନତା ପ୍ରତି ସହାନୁଭୂତି, ଦେଶପ୍ରୀତି, ବିଭୂପ୍ରୀତି ପ୍ରଭୃତି ରୋମାଣ୍ଟିକ୍ କବିତାର ମୁଖ୍ୟ ଉପାଦାନ । ଡଃ ପ୍ରତିଭା ଶତପଥୀଙ୍କ ଭାଷାରେ, ‘‘ଆଧୁନିକ କଳାକୃତିରେ ଉପସ୍ଥିତ ସୌନ୍ଦର୍ଯ୍ୟ ଦର୍ଶନରେ ସ୍ପନ୍ଦନ, ଆନ୍ତରିକତା, ଅସୀମ ପ୍ରତି ଆକୁଳତା ଆଦି ଭାବଗୁଡ଼ିକୁ ରୋମାଣ୍ଟିକ୍ ଭାବଚେତନା କୁହାଯାଇଛି । (କଳ୍ପନାର ଅଭିଷେକ—ପୃ. ୧୨-୧୩)

ତେଣୁ ରୋମାଣ୍ଟିକ୍ ଭାବଚେତନା ମଧ୍ୟରେ ପ୍ରକୃତିପ୍ରୀତି ଅନ୍ୟତମ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ମାନସିଂହଙ୍କ କବିତାରେ ପ୍ରକୃତି ଯେଉଁଭଳି ପ୍ରତିବିମ୍ବିତ ତହିଁରେ ରବୀନ୍ଦ୍ରନାଥଙ୍କ ଇନ୍ଦ୍ରିୟୋତ୍ତର ଚେତନା ସହିତ ରାଧାନାଥୀ ପ୍ରକୃତିର ଅତୀତ ଉଦ୍‌ବୋଧନ, ମଧୁସୂଦନଙ୍କ ପ୍ରକୃତିର ବିଭୁବୋଧ ଓ ନନ୍ଦକିଶୋରଙ୍କ ପ୍ରକୃତିର ସାରଲ୍ୟ ଏକୀଭୂତ ହୋଇଯାଇଛି । କେବେ ପ୍ରକୃତିର ବିରାଟ କାନ୍‌ଭାସ ଉପରେ ସେ ଭାବପ୍ରବଣତା ଚିତ୍ର ଆଙ୍କିଛନ୍ତି ତ କେବେ ପ୍ରକୃତିକୁ ଉପଲକ୍ଷ୍ୟ କରି ମାନବଜୀବନର ଦ୍ୱିଧା ସଂଶୟ ଓ ସଂକୋଚକୁ ରୂପାୟିତ କରିଛନ୍ତି ।

ରୋମାଣ୍ଟିକ୍ କବିମାନଙ୍କ ମଧ୍ୟରେ କଳ୍ପନାର ଯାଦୁକରୀ ଶକ୍ତି ରହିଛି । କବି ୱାର୍ଡସ୍‌ୱାର୍ଥ ପ୍ରକୃତିର ଆତ୍ମା ଅଛି ବୋଲି ଉପଲବ୍ଧି କରନ୍ତି । ବାଇରନ୍‌ଙ୍କ ମତରେ, ପ୍ରକୃତି ମଧ୍ୟରେ ଅତୀତ ପରମ୍ପରା ଉଜ୍ଜୀବିତ ହୋଇଉଠେ । କୋଲରିଜ୍ ଦୂରଚିନ୍ତାକୁ ଗୁରୁତ୍ୱ ଦିଅନ୍ତି ଓ ଅତୀନ୍ଦ୍ରିୟ ଚେତନା ପ୍ରତି ଉତ୍ସୁକତା ପ୍ରକାଶ କରନ୍ତି । ଓଡ଼ିଆ ସାହିତ୍ୟରେ ଏତାଦୃଶ ରଚନା ଯଥେଷ୍ଟ, ରାଧାନାଥ ରାୟଙ୍କ ‘ଚିଲିକା’ରେ ଅତୀତ ଓଡ଼ିଶାର ସ୍ମୃତିଚାରଣପାଇଁ ପରିବେଶ ନିର୍ମାଣ କରାଯାଇଛି । ଚିଲିକା କବିଙ୍କପାଇଁ ସଖୀତୁଲ୍ୟ ଆତ୍ମୀୟ ଓ ଅନେକ ଇତିହାସ ମୂକସାକ୍ଷୀ । ‘ମହାଯାତ୍ରା’ ଓ ‘ଦରବାର’ରେ ମଧ୍ୟ ଜାତୀୟ ଜୀବନର ଉଦ୍‌ବୋଧନ ଚମତ୍କାର । ମଧୁସୂଦନ ରାଓଙ୍କର ଋଷିପ୍ରାଣେ ଦେବାବତରଣ, ହିମାଚଳେ ଉଦୟ ଉତ୍ସବ, ଆଶା ପ୍ରଭୃତି କବିତାରେ ଅତୀନ୍ଦ୍ରିୟ ଭାବସତ୍ତା ଏଭଳି ରୂପାୟିତ ହୋଇଛି ଯେ ଯାହା ଆଜି ପର୍ଯ୍ୟନ୍ତ

ଅନତିକ୍ରମ୍ୟ ସୃଷ୍ଟିସଂପଦ ହୋଇ ରହିପାରିଛି । କୁନ୍ତଳାକୁମାରୀଙ୍କର ଶେଫାଳିପ୍ରତି ଭଳି କବିତାରେ ପ୍ରକୃତିକୁ ଅନ୍ତରଙ୍ଗତାରେ ବାନ୍ଧି ମାନବୀୟ ପ୍ରେମଚେତନା ସହିତ ଏକାକାର କରିଦିଆଯାଇଛି ।

ଉଚ୍ଚକୋଟୀର କଳ୍ପନା ଓ ବ୍ୟକ୍ତିଗତ ଆବେଗାନୁଭୂତିର ସାର୍ବଜନୀନ ପ୍ରକାଶ ରୋମାଣ୍ଟିସିଜମ୍‌ର ମୂଳକଥା । 'ପ୍ରକୃତି' ରୋମାଣ୍ଟିକ୍ କାବ୍ୟଚେତନାର ଅନ୍ୟତମ ବିଭାବ । ଏହି ପ୍ରକୃତି ପରିଦୃଶ୍ୟମାନ ନୁହେଁ ବରଂ ଅନୁଭବର ଆଲୋକରେ ଆଲୋକିତ ଏକ ସ୍ୱତନ୍ତ୍ର ସତ୍ତା ଯିଏ ମନୁଷ୍ୟର ବଞ୍ଚିବାକୁ ଅର୍ଥମୟ କରେ । ତେଣୁ ପ୍ରକୃତି ପାଲଟିଯାଏ ଜାଗ୍ରତ ସତ୍ତାଟିଏ । ସେ ମନୁଷ୍ୟ ଦୁଃଖରେ କାନ୍ଦେ । ସୁଖରେ ଆନନ୍ଦିତ ହୁଏ । ତା'ର ଦୁର୍ଦ୍ଦିନରେ ବନ୍ଧୁଭଳି ପାଖରେ ଠିଆ ହୁଏ । ଶିଶୁଭଳି ସେ ଅଝଟ ହୁଏ । ମାଆଭଳି ଆକଟ ମଧ୍ୟ କରେ । ପ୍ରକୃତିର ଶକ୍ତି ମନ୍ତ୍ରଶକ୍ତିଠାରୁ ଅଧିକ । ତେଣୁ ସେ ମନୁଷ୍ୟକୁ ଦୈନନ୍ଦିନ ଜୀବନଯାତ୍ରାର ମାଳିନ୍ୟ ମଧ୍ୟରୁ ଊର୍ଦ୍ଧ୍ୱକୁ ନେବାର ଶକ୍ତି ମଧ୍ୟ ରଖେ ।

କେଉଁଠି ପ୍ରକୃତି ଲାସ୍ୟମୟୀ ପ୍ରଣୟିନୀ ତ କେଉଁଠି ମନ୍ତ୍ରଦାତା ଗୁରୁ । ପ୍ରକୃତିର ଔଦାର୍ଯ୍ୟ ଦର୍ଶନରେ ମୁଗ୍ଧ କବି ପ୍ରକୃତିର ଗୁରୁତ୍ୱ ସ୍ୱୀକାର କରିଛନ୍ତି । ପୁଣି ପଲ୍ଲୀପ୍ରକୃତିକୁ ରୂପ ଦେବା ସମୟରେ ମାନବୀୟ ସମ୍ବେଦଶୀଳତା ନେଇ ପଲ୍ଲୀଜୀବନର ଦୁର୍ଦ୍ଦଶାକୁହିଁ ମୁଖ୍ୟ ସ୍ଥାନ ଦେଇଛନ୍ତି । ତେଣୁ ମାନସିଂହଙ୍କ କବିତାରେ ପ୍ରକୃତି ଶୀର୍ଷକ ଆଲୋଚନା ସମୟରେ ଆମେ ଏହି ଦିଗମାନଙ୍କ ପ୍ରତି କିଞ୍ଚିତ ଆଲୋକପାତ କରିବା ।

## କେମନ୍ତେ ବର୍ଣ୍ଣିବି ମୋର ମୁଗ୍ଧ ଅନୁଭବ :

ନିଜକୁ 'ଶିଳାଗୃହ ଅଂଧକାରବାସୀ' କହି ବିବ୍ରତ ହୋଇ ପଡୁଥିବା କବି ମହାନଦୀରେ ଜ୍ୟୋତ୍ସ୍ନାବିହାର କାଳରେ ଅତୀତକୁ ସ୍ମରଣ କରି ଆନନ୍ଦରେ ଆତ୍ମହରା ହେଉଛନ୍ତି । ତାଙ୍କ ମାନସଚକ୍ଷୁରେ ଭାସିଯାଉଛି ଅତୀତ ଉତ୍କଳର ଛିନ୍ନପୃଷ୍ଠା । କାଳର ପ୍ରତିଲୋମ ଗତିରେ ସେ ଦେଖୁଛନ୍ତି ବାରବାଟୀର ଉନ୍ନତ ଇତିହାସ । ରାଜମହିଷୀ ବିଜୟୀପୁତ୍ରକୁ ବନ୍ଦାପନା କରୁଥିବା ଦେଖି ସେ ମୁଗ୍ଧ ହୋଇଛନ୍ତି । ସୁକୁମାରୀ ରାଜକୁମାରୀର ଅଳକ୍ତରଂଜିତ ପଦ ମହାନଦୀର ଘାଟକୁ ପୁଲକିତ କରୁଥିବା କଳ୍ପନାର ଚକ୍ଷୁରେ ଦେଖି, ପାଠକବର୍ଗଙ୍କୁ ମଧ୍ୟ ସେହି ଅନୁଭବ ପ୍ରଦାନ କରିପାରିଛନ୍ତି । ସେହିପରି କୋଣାର୍କ, ବାରବାଟୀ, ସାଧବଝିଅ, ଉତ୍ତିଷ୍ଠଉତ୍କଳ, ବୋଇତ ବନ୍ଦାଣ, ମାଟିବାଣୀ ଭଳି କବିତାରେ ସେ ଅତୀତ ପ୍ରତି ଯେଉଁ ଦୃଷ୍ଟି ନିକ୍ଷେପ କରିଛନ୍ତି ତାହା ତାଙ୍କ କବିତାକୁ ଦେଶପ୍ରେମରେ ଉଚ୍ଛଳ କରିପାରିଛି ।

''ଯାଇଛି ବିଶାଳ ରାଜ୍ୟ, ମାନ ସ୍ୱାଧୀନତା, ରାଜନ୍ୟ ସମ୍ମାନ
ବୁଦ୍‌ବୁଦ ସମାନ
ସର୍ବଗ୍ରାସୀ ମହାକାଳ-ଲହରୀରେ ଭାସି, ତୁମରି ସ୍ମୃତିଟି ମାତ୍ର
ଏ ଜାତିର ଅନ୍ତରେ ଅନ୍ତରେ
ଏ ଦେଶର କୋଟିଏ କଣ୍ଠରେ
ରାହୁମୁକ୍ତ ଶଶିସମ କାଳଗର୍ଭୁ ଉଠଇ ପ୍ରକାଶି ।''
(ବାରବାଟୀ—ମାନସିଂହ ଗ୍ରନ୍ଥାବଳୀ—୧ମ ଖଣ୍ଡ—ପୃ.୨୩୭)

କୋଣାର୍କ ସମ୍ପର୍କୀୟ ଏକାଧିକ କବିତାରେ ସେ କୋଣାର୍କର ଅତୀତ ଓ ବର୍ତ୍ତମାନ ସହିତ କୋଣାର୍କର ପ୍ରକୃତି ସମ୍ପର୍କରେ ନିଜର ଭାବପ୍ରବଣତା ପ୍ରକାଶ କରିଛନ୍ତି ।

''ଭେଦିଣ ସହସା ନଦୀ-ନୀଳ-ବେଣୀ ସ୍ୱର୍ଣ୍ଣ ସଇକତ
କ୍ଷୀରୋଦ ପ୍ରଶାନ୍ତ ଗର୍ଭୁ ବିଶ୍ୱରାମା ବିଷ୍ଣୁ-ପତ୍ନୀବତ
x x x x x
ଦୂର ନଗମାଳା ହେଲେ ଭକ୍ତି-ଭୟେ ଚକିତ ପୁଲକ
ପଦଚୁମ୍ବୀ ମହାସିନ୍ଧୁ ଗାଏ ସ୍ତବ ଲହରୀ-ଅଳକ ।''
''ହେ ଗୁରୁ ଭୈରବକୀର୍ତ୍ତି ମନୁଷ୍ୟର, ମଣ୍ଡ ମୋ ପୁଳିନ
ଧନ୍ୟ ହୁଏ ତୋହରେ ସେବିଣ ।''
(କୋଣାର୍କ—ମାନସିଂହ ଗ୍ରନ୍ଥାବଳୀ—୧ମ ଖଣ୍ଡ—ପୃ.୧୬୭-୧୬୮)

ମଧୁସୂଦନଙ୍କ 'ଆକାଶପ୍ରତି' କବିତାରେ ଆକାଶ ଯେମିତି ପୃଥିବୀର ଜନ୍ମଠାରୁ ସଭ୍ୟତାର ବିକାଶ ପର୍ଯ୍ୟନ୍ତ ସମସ୍ତ ଅବଲୋକନ କରିଛି ସେହିପରି ନାଟକୀୟ ରୀତିରେ କୋଣାର୍କକୁ ଦେଖି ପର୍ବତ, ସାଗର, ଲହରୀମାଳା, ଚନ୍ଦ୍ରକିରଣ, ଅପ୍‌ସରାଗଣ ସମସ୍ତେ ମୁଗ୍ଧ ଚକିତ ହୋଇଛନ୍ତି । କୋଣାର୍କକୁ କେନ୍ଦ୍ରକରି ଦେଶର କଳା ଓ ବାଣିଜ୍ୟ ବିଭବଶାଳୀ ହୋଇଛି, ପୁଣି 'କୋଣାର୍କର ଲାସ୍ୟଲୀଳା' କବିତାରେ ଜ୍ୟୋସ୍ନା ଆସି କୋଣାର୍କ ନଟୀ ଦୁଆରେ ଡାକିବାର ପରିକଳ୍ପନା କରାଯାଇଛି । ଏତାଦୃଶ ମୁଗ୍ଧ ଅନୁଭବ ସତରେ ସାଧାରଣ କବି ପକ୍ଷରେ ସମ୍ଭବନୁହେଁ । 'ବାପୁ ତର୍ପଣ' କବିତା ସମୂହରେ ସେ ବାପୁଜୀଙ୍କୁ ଯେଉଁଭଳି ଚିତ୍ରଣ କରିଛନ୍ତି ତାହା ବାସ୍ତବିକ ଅନନ୍ୟ, 'ବିଳପୁଛ କାହିଁପାଇଁ ?'' କବିତା ଗାନ୍ଧିଜୀଙ୍କ ମହାପ୍ରୟାଣ ଉଦ୍ଦେଶ୍ୟରେ ରଚିତ, ମାତ୍ର ତହିଁରେ ପ୍ରକୃତିର ସ୍ଥାନ ଏହିଭଳି —

''ବକ୍ର ବିଦ୍ଧ ମେଘୁଁ ଜଳପଡ଼େ ଦହନେ ଫୁଟାଇ ସୁନା
ତାଜ କୋଣାର୍କ ଉଠିବେ କିପରି ପାହାଡ଼ ନୋହିଲେ ଚୂନା ?
ବୈଶାଖ ତାପେ ଲୁଚିଥାଏ ପରା ହେମନ୍ତ ସୁନାଶିଁଷା
ମରଣର ବିଷେ ରହିଥାଏ ପରା ଅମୃତ କଣା ମିଶା ?''
(ବିଳପୁଚ୍ଛ କାହିଁପାଇଁ ?-ଗ୍ରନ୍ଥାବଳୀ-୧ମ ଖଣ୍ଡ-ପୃ.୧୯୭)

ତେଣୁ ପ୍ରକୃତିକୁ ଆମୂଖ କରି ମାନବ ପ୍ରକୃତି ସଙ୍ଗରେ ସମନ୍ୱିତ କରିବାର, ଏହି ଯେଉଁ ପ୍ରୟାସ ତାହା ବାସ୍ତବରେ ଅନୁଭବ୍ୟ, ଯେତେ ଚେଷ୍ଟା କରି ମଧ କବିର ଅନୁଭବଠାରୁ ପାଠକର ଅନୁଭବ କିଞ୍ଚିତ ଭିନ୍ନ ହୋଇଯାଏ ।

**ସଂଚିବାକୁ ଚାହେଁ ସେହି ସ୍ୱତନ୍ତ୍ର ଶୂନ୍ୟତା :**

ଯେଉଁ ଶୂନ୍ୟତା କବିଙ୍କର ଚିର ଆକାଙ୍କ୍ଷିତ ତାହା ଦୃଶ୍ୟମାନ ନୁହେଁ ବରଂ ଅନୁଭବ୍ୟ ଏକ ସ୍ୱତନ୍ତ୍ର ଶୂନ୍ୟତା, ସକଳ ପୂର୍ଣ୍ଣତା ମଧ୍ୟରେ ସେହି ଅନୁଭୂତିଟି ବିଦ୍ୟମାନ, ଯାହା ଭକ୍ତକବି ମଧୁସୂଦନଙ୍କର 'ଜୀବାତ୍ମାରେ ପରମାତ୍ମା ଭୂମା ଆବିର୍ଭାବ'ର ଭାବନାକୁ ପ୍ରକାଶ କରିବାରେ ସକ୍ଷମ । ତେବେ ପୂର୍ବଜନ୍ମର ସୌରଭକୁ ସ୍ମରଣ କରି ଅନ୍ୟମନସ୍କ ହେଉଥିବା କବି ଉପଲବ୍ଧି କରନ୍ତି ଯେ ସୃଜନ ମଧ୍ୟରେ ଦୁଃଖର ଅନାହତ ଧ୍ୱନି ଅନୁରଣିତ ହୁଏ ଆଉ ଏ ସମଗ୍ର ପୃଥିବୀ ଏକ ବିରାଟ ପରୀକ୍ଷାଗାର, 'ବିକାଶର ଅଙ୍ଗ' କବିତାରେ –

''ଏ ବିରାଟ ସୃଷ୍ଟି ଏକ ପରୀକ୍ଷା-ଆଗାର
ବିରାଟ ସେ କେଉଁ କବି ଶିଳ୍ପୀ, ବିଜ୍ଞାନୀର
ଭାଂଗେ ଗଢ଼େ, କ୍ଷଣେ କ୍ଷଣେ ସଂସାର, ସଂସାର,
ଶୂନ୍ୟ-ପୂର୍ଣ୍ଣ, ସୃଷ୍ଟି-ଲୟ ତତ୍ତ୍ୱ ସୁଗଭୀର ।''
(ବିକାଶର ଅଙ୍ଗ – ମାନସିଂହ ଗ୍ରନ୍ଥାବଳୀ-୨ୟ ଖଣ୍ଡ-କ୍ରୁଶ-ପୃ.୧୦୦)

ତେଣୁ ଜୀବ ମଧ୍ୟଦେଇ ସୃଷ୍ଟି ବିକଶିତ ଓ ପୂର୍ଣ୍ଣାଙ୍ଗପ୍ରାପ୍ତ ହେଉଛି ବୋଲି ବୁଝିସାରିବା ପରେ କବି ସ୍ରଷ୍ଟାରୁ ଦ୍ରଷ୍ଟାରେ ରୂପାନ୍ତରିତ ହୋଇଯାଉଛନ୍ତି । ସକଳ ଭୂତରେ ସେ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରୁଛନ୍ତି ଓ ସୁଖ ଦୁଃଖକୁ ସମଜ୍ଞାନ କରି ଆଷାଢ଼ର ବାରିପାତକୁ ଗ୍ରହଣ କରିବାପାଇଁ ଗ୍ରୀଷ୍ମର ଫଟାଭୂଇଁ ନିତାନ୍ତ ଆବଶ୍ୟକ ବୋଲି ଏକ ସମାହିତ ଭାବନା ପ୍ରକାଶ କରିଛନ୍ତି । 'କ୍ରୁଶ'ର ପ୍ରାୟ ପ୍ରତ୍ୟେକ କବିତାରେ ଏହି ସନ୍ନ୍ୟାସୀ-ଦୃଷ୍ଟି ପ୍ରତିଫଳିତ । ଅନ୍ଧାର ଆଲୋକ ଭଳି ସୁଖ ଦୁଃଖର ଏକତ୍ର ଉପସ୍ଥିତିରେହିଁ ଜୀବନ ଅର୍ଥମୟ ହୋଇଥାଏ । ସରିତ ସାଗରପାଇଁ ବ୍ୟାକୁଳ ହୁଏ ।

ପୁଷ୍ପ ବାୟୁପାଇଁ ଅପେକ୍ଷା କରେ ଓ ସୂର୍ଯ୍ୟକିରଣପାଇଁ ବୃକ୍ଷ ଊର୍ଦ୍ଧ୍ୱଗାମୀ ହୁଏ । ସେହିପରି ଭୋଗ ସହିତ ତ୍ୟାଗ ଏକୀଭୂତ ହୋଇପାରିଲେହିଁ ଜୀବନ ଅର୍ଥପୂର୍ଣ୍ଣ ହୁଏ । ବୀଜ ଯେମିତି ନିଜ ଭିତରେ ଥିବା ସମ୍ଭାବନାକୁ ଉପଲବ୍ଧି କରିପାରେନାହିଁ, ସେମିତି ମଣିଷ ନିଜ ଭିତରେ ଥିବା ଐଶ୍ୱରୀୟ ସମ୍ଭାବନାର ଗୁରୁତ୍ୱ ଜାଣିପାରେନାହିଁ । ତେଣୁ ଦ୍ରଷ୍ଟା କବି ଏକ ସ୍ୱତନ୍ତ୍ର ଶୂନ୍ୟତା ସଂଚୟ କରିବାର କାମନା କରିଛନ୍ତି, ଯେଉଁ ଶୂନ୍ୟତା ଅଜସ୍ର ପୂର୍ଣ୍ଣତାରେ ତାଙ୍କର ଅନୁଭବକୁ ସିକ୍ତ କରିଦେଇପାରିବ ।

**ମେଘ ସଦା ଧରିତ୍ରୀର ଆଶ୍ଳେଷ ଆଶାୟୀ :**

ଦୃଶ୍ୟମାନ ତଥା ଅନୁଭବସ୍ନିଗ୍ଧ ପ୍ରକୃତି କବିଙ୍କୁ ଦ୍ରଷ୍ଟାପୁରୁଷରେ ରୂପାନ୍ତରିତ କରି ନୀରବ ହୋଇନାହିଁ । ରୋମାଣ୍ଟିକ୍ କବିର ପ୍ରଣୟଚେତନା ପ୍ରକୃତି ମାଧ୍ୟମରେ ରୂପପାଇଛି । ଅନ୍ୟଭାବରେ କହିଲେ ପ୍ରଣୟସାଧକ କବି ମାନସିଂହଙ୍କ ରୂପାନ୍ୱେଷୀ ଦୃଷ୍ଟିକୋଣହିଁ ତାଙ୍କର ସାହିତ୍ୟସାଧନାର ମୁଖ୍ୟ ବିଭାବ । ତେଣୁ ସେ ଧରିତ୍ରୀକୁ ନାରୀ ଭାବରେ କଳ୍ପନା କରି କବି ମେଘକୁ ତା'ର ଆଶାୟୀ ପ୍ରେମିକ ସଜାଇଛନ୍ତି । ଏ ବିଶ୍ୱରେ 'ଆକର୍ଷଣ'ର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଯେମିତି ବୃକ୍ଷଲତା, ସୂର୍ଯ୍ୟକିରଣ, ନଦନଦୀ ସିନ୍ଧୁ ଆଲିଙ୍ଗନ, ଶୁଷ୍କବୃକ୍ଷ ମଳୟର ସ୍ପର୍ଶ ଓ ଆଲୋକପାଇଁ ରାତ୍ରିର ଆକର୍ଷଣ ସର୍ବବାଦିସମ୍ମତ ସେହିପରି କବିଚିତ୍ତ ମଧ୍ୟ ଏକ ଅଜ୍ଞାତ ଶକ୍ତିର ଆକର୍ଷଣରେ ସର୍ବଦା ଉନ୍ମୁଖ ହୋଇରହିଛି । ଆଷାଢ଼ ଅଭିସାର, ଶ୍ରାବଣ ଅଭିସାର, ବସନ୍ତ ଅଭିସାର, ଜ୍ୟୋତ୍ସ୍ନାଭୋଗ ବିରହୀଘନ, ପ୍ରାବୃଟ ସମ୍ଭାଷଣ, ବସନ୍ତୋତ୍ସବ, ଜ୍ୟୋତ୍ସ୍ନାମୟୀ, ବଂଶୀ ଡାକ ସୋହାଗ ଭଳି କବିତାରେ ଏହି ଉନ୍ମୁଖତା ପ୍ରକଟିତ ହୋଇଛି । 'ଜ୍ୟୋତ୍ସ୍ନା-ଭୋଗ' କବିତାରେ ସେ ପ୍ରଣୟିନୀକୁ ପ୍ରାକୃତିକ ସୁଷମାର ସମନ୍ୱିତ ସତ୍ତାଭାବରେ ପରିକଳ୍ପନା କରିଛନ୍ତି । ଧରଣୀରେ ଜ୍ୟୋତ୍ସ୍ନାର ଆବେଶ, ଚନ୍ଦ୍ରିକାର ଚାରୁଚିତ୍ର ଓ ସ୍ୱର୍ଣ୍ଣଶସ୍ୟର ଭାରରେ ଆନତା ଧାନ୍ୟଲତା ସଦୃଶ କବିଙ୍କର ପ୍ରିୟତମାକୁ କବି ଏକ ଅତୀନ୍ଦ୍ରିୟ ଜଗତ ଉପଭୋଗପାଇଁ ଆହ୍ୱାନ କରିଛନ୍ତି ।

''ଚନ୍ଦ୍ରିକା ଚିତ୍ରଣେ ଯେଉଁ ବର ତୂଳୀଧର
ସ୍ୱପ୍ନପରୀ କରେ ରୁକ୍ଷ ଧରା କଳେବର
ତବ, ମୁକ୍ତ ଦେହଶିରୀ
ନୁହେଁ କି ସେ ଚିତ୍ରକର ନୀରାଜନା ପରି ?''

(ଜ୍ୟୋତ୍ସ୍ନାଭୋଗ – ମାନସିଂହ ଗ୍ରନ୍ଥାବଳୀ-୧ମ ଖଣ୍ଡ – ପୃ.୧୩୯)

'ଚିଲିକା'ର ଅପୂର୍ବଶୋଭା ଦର୍ଶନରେ ଅଭିଭୂତ କବି ଚିଲିକାକୁ 'ପ୍ରକୃତି-କୁମାରୀ' ବୋଲି ନାମ ଦେଇଛନ୍ତି । 'ପ୍ରିୟଭୂମି' କବିତାରେ ପ୍ରକୃତିର ବେଶବିନ୍ୟାସ

ମଧ୍ୟରେ ମହୋଦଧିର ସିକତା ପ୍ରାନ୍ତର, କିଆକୁଞ୍ଜ, ପୁନ୍ନାଗ କୁସୁମର ସୁଗନ୍ଧକୁ ସ୍ମରଣ କରିଛନ୍ତି । 'ବସନ୍ତ ଅଭିସାର' କବିତାରେ ମଳୟ ଆମ୍ରକୁଞ୍ଜରେ ମର୍ମର ରଚନା କରିଛି ଓ କୋକିଳ କଣ୍ଠରେ ବୀଣାବାଦନ କରୁଛି । ଏ ସବୁଭିତରେ ଚିରନ୍ତନ ପ୍ରେମର ସମ୍ପର୍କ ହିଁ ଉଜ୍ଜୀବିତ ହୋଇଛି ଓ ମିଳନ ମାଧୁରୀରେ ପ୍ରକୃତି ଓ ପ୍ରେମିକା ଏକୀଭୂତ ହୋଇଯାଇଛି ।

**ପ୍ରିୟା ଅଛି ଯହିଁ ବସନ୍ତ ଆସିଥିବ :**

କବି ମାନସିଂହଙ୍କର ପ୍ରିୟା ଅପରୂପା 'ଅସୀମଲାବଣ୍ୟମୟୀ', ତା'ର ପଦପାତରେ ବସନ୍ତ ଆସେ । ଗୋଲାପ, ବକୁଳ, କେତକୀ, କନକ ଚମ୍ପା, ଫାଲ୍‌ଗୁନ ଓ କୋକିଳ ମଧ୍ୟ ଆସନ୍ତି । ଜ୍ୟୋସ୍ନା ମତୁଆଲା ହୁଏ ଓ ପୃଥିବୀ ପାଲଟିଯାଏ ଅଳକାପୁରୀ, ଲକ୍ଷ ଲକ୍ଷ ଶତଦଳ ଫୁଟିଉଠନ୍ତି, ତା'ର ଅବର୍ତ୍ତମାନରେ ବର୍ଷା ଝରେ, ନିଃଶ୍ୱାସରେ ବ୍ୟଥାର ସ୍ୱର ଶୁଭେ । ଆଖିରୁ ଗଣ୍ଡ ଭିଜାଇ ବହେ ଅଶ୍ରୁଧାର । ବଧୂହୀନ ମଧୁମାସ ଗ୍ରୀଷ୍ମର ଉତ୍ତାପରେ ଝାଉଁଳିପଡ଼େ । 'ପାସୋର ପ୍ରଣୟ' କବିତାରେ କବି ଗାଆନ୍ତି –

''ପ୍ରଣୟ ହାଏ ସଖି ଚପଳ ଅତି
ବତାସି ପରି ଆସେ
ନିଖିଳ ପ୍ରାଣ ଗ୍ରାସେ ।''

(ପାସୋର ପ୍ରଣୟ–'ଧୂପ'-ମାନସିଂହ ଗ୍ରନ୍ଥାବଳୀ-୧ମ ଖଣ୍ଡ-ପୃ.୪୯)

ତେଣୁ କବି ମାନସିଂହ କାଳିଦାସଙ୍କ 'ମେଘଦୂତ'କୁ ସ୍ମରଣ କରିଛନ୍ତି ଓ କେଉଁ ଦୂତ ହାତରେ ପ୍ରିୟା ପାଖକୁ ସନ୍ଦେଶ ପ୍ରେରଣ କରିବେ ବୋଲି ନିଜର ଉତ୍ସୁକତା ପ୍ରକାଶ କରିଛନ୍ତି ।

''ବୃଷ୍ଟିଧାରା ପଡ଼ଇ ଅବିରତ
ଦୂର୍ବାଦଳ ପଡ଼ଇ ନଇଁ ଲାଜେ
ବର୍ଷା, ଘାସ ଆଲିଙ୍ଗନ ଦେଖି
ପରାଣେ ମମ ବ୍ୟଥାର ବୀଣା ବାଜେ ।''

(ବର୍ଷାବିରହ-ମାନସିଂହ ଗ୍ରନ୍ଥାବଳୀ-'ଧୂପ'-ପୃ.୩୯)

ତାଙ୍କ ଚିନ୍ତାରେ ପ୍ରେମ ଓ ପ୍ରକୃତି ଏକ ଓ ଅଭିନ୍ନ, ଋତୁଚକ୍ରର ଆବର୍ତ୍ତନରେ ମନୁଷ୍ୟ ଖରା, ବର୍ଷା, ଶୀତ, ବସନ୍ତ ଭୋଗ କରେ । ସେମିତି ଜୀବନରେ ପ୍ରେମ ମଧ୍ୟ କେବେ ଆସି ଶେଷ ହୁଏନାହିଁ, ବରଂ ବାରମ୍ବାର କାୟା ପରିବର୍ତ୍ତନ କରିଚାଲେ । ତଥାପି ଜୀବନରେ ପ୍ରେମହିଁ ସବୁଠାରୁ ବଳିଷ୍ଠ ବିଭାବ ଯାହା ପୁରୁଷକୁ କରେ ପୁରୁଷୋତ୍ତମ । ତେଣୁ 'ବିରହୀଘନ' କବିତାରେ –

''ବିଶ୍ୱେ ତୁମେ ବାରିବାହ ପ୍ରଣୟୀର ଚିର ଭାଲଟିକା
ତେଣୁ କୁଞ୍ଜେ ତବ ଆଶେ ଫୁଟିଉଠେ କିଶୋରୀଯୂଥିକା
ବନ୍ଧୁ ବୋଲି ନାଚିଉଠେ ତାଳେ ତାଳେ ବିରହୀ ବରହୀ
ଯୁବକ ଯୁବତୀଗଣେ ବିଚ୍ଛେଦର ଲୋତକ ଗଡ଼ାଇ
ବିଶ୍ୱର ସକଳ ହିୟା କାଟି ହୁଏ ପୁଷ୍ପଶର-ଧାରେ
ତବ ଅଭିସାରେ ।''
(ବିରହୀଘନ, ହେମପୁଷ୍ପ-ମାନସିଂହ ଗ୍ରନ୍ଥାବଳୀ-୧ମ ଖଣ୍ଡ-ପୃ.୬୭-୬୮)

## କାଟି ଶସ୍ୟ, ରହେ ଉପବାସ :

କବି ମାନସିଂହ ପ୍ରଣୟିନୀର ବାହୁବନ୍ଧନରେ ମୁଗ୍ଧ ହୋଇ ନିଜକୁ ପାସୋରିଦେବା ସମୟରେ ଅଗଣିତ ନାମହୀନ ମଣିଷର ବୁକୁର ସ୍ପନ୍ଦନ ତାଙ୍କୁ ବିବ୍ରତ କରିଛି । ସମଗ୍ର ବିଶ୍ୱରେ ଅଶାନ୍ତି, ଅସନ୍ତୋଷ ଓ ଅଭାବର କରାଳ ଛାୟା । ତେଣୁ ଜ୍ୟୋତ୍ସ୍ନା ମଧୁପ ବା ବାସନ୍ତୀ ସନ୍ଧ୍ୟା ଉପଭୋଗପାଇଁ ସମୟ ବା ମନର ଅଭାବ ହେଉଛି । ଯେ ସୃଷ୍ଟିକୁ ବଂଚାଇବାର ଶପଥ ନେଇ ଖରା-ବର୍ଷା-ଶୀତ ସହି ଫସଲ ଅମଳ କରେ, ସେ ଯଦି ନିଜେ ଉପବାସ ରହେ ତାହା ସ୍ରଷ୍ଟାର ନିୟମକୁ ଭଙ୍ଗ କରୁନାହିଁ କି ? ପୌଷର ବାୟୁରେ ଶରୀର ଥରିବା ଭଳି ଜୀବନ ତା'ର ବ୍ୟଥା ଓ ବେଦନାରେ ଥରିଉଠେ । ଶ୍ରାବଣର ଘନ ଭଳି ଆଖିରୁ ଝରିପଡ଼େ ବାରିଧାରା, ତଥାପି ତା'ର ଦୁଃଖ ପ୍ରଶମିତ ହୁଏନାହିଁ । ଦାରିଦ୍ର୍ୟ ପଲ୍ଲୀ ଲଳନାକୁ ବିକଶିତ ହେବା ପୂର୍ବରୁ କବଳିତ କରେ । ତେଣୁ କବି କହନ୍ତି –

''ଦେଖିଛି ବିକଟ ଦୈନ୍ୟ, ମନୁଷ୍ୟର ବୀଭତ୍ସ ଦୁର୍ଦ୍ଦଶା
ପ୍ରକୃତିର ଦେବତାର ଦୀନଜନେ ଘୋର ଅତ୍ୟାଚାର
ଅବଜ୍ଞା ଲାଞ୍ଛନା ଖାଲି ଘଟିବାର ଭାଗ୍ୟେ ସାଧୁତାର ।''
(ଅର୍ଦ୍ଧଶତାବ୍ଦୀ ସିନ୍ଧୁ ଓ ବିନ୍ଦୁ – ମାନସିଂହ ଗ୍ରନ୍ଥାବଳୀ-୨ୟ ଖଣ୍ଡ-ପୃ.୧୮୭)

ତେଣୁ ଦୀନଦୁର୍ବଳର ପ୍ରତିନିଧିଭାବରେ କବି ଏହି ଅବସାଦ ନିକଟରେ ଅଟକି ଯାଇନାହାନ୍ତି । ସଭ୍ୟତାର ଯୌବନକାଳରେ ପ୍ରତ୍ୟେକ ବ୍ୟକ୍ତି ନିଜର ଅଧିକାର ସଚେତନ । ତେଣୁ ସେ ନବମାନବକୁ ଆହ୍ୱାନ କରି ଦୃପ୍ତକଣ୍ଠରେ ଗାଆନ୍ତି –

''ପ୍ରକୃତି ଆଜି ପରିଜନ ତୋର, ବିଜ୍ଞାନ କ୍ରୀତଦାସୀ
ଆଜି ତୋ କୁଟିର ପ୍ରାନ୍ତେ ମିଳିତ ସ୍ୱପ୍ନର ସୁଖରାଶି ।''
(ନବମାନବ-ସିନ୍ଧୁ ଓ ବିନ୍ଦୁ – ମାନସିଂହ ଗ୍ରନ୍ଥାବଳୀ-୨ୟ ଖଣ୍ଡ-ପୃ.୧୮୯)

ସେହି ନୂଆ ଦୁନିଆର ମଣିଷ ଆଉ ଦୀର୍ଘଶ୍ୱାସ ପକାଇବନାହିଁ । ନିଜ ଭଳି ନିଜେ ବଂଚିବ । ଶସ୍ୟ କାଟୁଥିବା ମେହେନତି ମଣିଷ ଉପବାସ ରହିଲେ ସତ୍ୟତାର ବିକାଶ ପଥ ରୁଦ୍ଧ ହୋଇଯିବ, ମାନବିକତାର ଏହି ମହାନ୍ ଧାରଣା ରୋମାଣ୍ଟିକ୍ ଭାବଉଚ୍ଛ୍ୱାସକୁ ଉଦ୍‌ବୋଧନଧର୍ମୀ କରି ପ୍ରଗତିଚିନ୍ତାର ସମକକ୍ଷ କରିପାରିଛି ।

## ଫୁଲ ପରି ଦେବୁରେ ବାସ :

କବି କିଶୋର ଉପଯୋଗୀ ଅନେକ କବିତା ଲେଖିଛନ୍ତି । କିଶୋରମାନଙ୍କପାଇଁ ଲେଖାଯାଉଥିବା ସାହିତ୍ୟରେ ଉପଦେଶଧର୍ମିତା ସାଧାରଣତଃ ଦେଖିବାକୁ ମିଳିଥାଏ । କିନ୍ତୁ ଏହି କବିତାଗୁଡ଼ିକରେ କିଶୋର ମନର ଅଜସ୍ର ପ୍ରଶ୍ନର ସମ୍ଭାବ୍ୟ ଉତ୍ତର ପ୍ରଦାନ କରାଯାଇଛି ଓ ତା'ର ଆଗ୍ରହ ଦୀପକୁ ତେଜିବାର ପ୍ରଚେଷ୍ଟା କରାଯାଇଛି । ମାଆ କହନ୍ତି—

''ଫୁଲ ପରି ଉଠିଲୁ ଫୁଟି ମୋ ଦେହେ ତୁ ପରାଣଧନ
ଜଗତରେ ବହୁତ ଫୁଲ, କିଏ ଧନ ତୋହରି ସମ ?''

(ଶିଶୁର ପ୍ରଥମ ପ୍ରଶ୍ନ—କିଶୋର କବିତା—ମାନସିଂହ ଗ୍ରନ୍ଥାବଳୀ-୨ୟ ଖଣ୍ଡ-ପୃ.୨୭୪)

କୈଶୋରରେ ଚିନ୍ତା ଚେତନା ବିକଶିତ ହୁଏ । ପରିସର ବ୍ୟତୀତ ପ୍ରତିବେଶୀ ଓ ବିଦ୍ୟାଳୟ ପ୍ରତି ଆଗ୍ରହ ବଢ଼େ । 'ବଣଭୋଜି' କବିତାର ସହଜ ଅଥଚ ଆବେଗଦୀପ୍ତ ଚିନ୍ତା ଏହିପରି ନରି ମା' ଧାନକୁଟିଲା ସାହୁଆଣୀ ଡାଲି ଦେଲା, ସାରୁ ବାଇଗଣ ହାଡୁସ୍ୱାଇଁ ଦେଲା । ତୋଟାମାଳରୁ କାଠ ଗୋଟାଇ ଜାଳ ହେଲା ଗୁରୁ ଚୁଲି ଖୋଳିଦେଲେ । ସାଙ୍ଗମାନେ ନଈରୁ ମାଛ ଧରିଲେ, ଘାସରେ ଶୋଇଲେ, ପଦ୍ମପତ୍ର ତୋଳି, ଭାତ ଡାଲି ରାନ୍ଧି ଖାଇ, ଆନନ୍ଦରେ ଘରକୁ ଫେରିଲେ । ପ୍ରକୃତିର ଏହି ସହଜବର୍ଣ୍ଣନା ଭିତରେ ଗ୍ରାମ୍ୟଜୀବନର ସ୍ୱାଭାବିକ ଆନନ୍ଦ ପ୍ରତିଫଳିତ । ଧାନକଟା, ପଲ୍ଲୀସନ୍ଧ୍ୟା, ମେଘୁଆ ଦିନ ଭଳି କବିତାରେ ପ୍ରକୃତିର ଗତାନୁଗତିକ ଚିତ୍ର ନୂତନ ଭାବରେ ରୂପାୟିତ ହୋଇଛି । ପୋଖରୀତୁଠ, ଶଙ୍ଖଚିଲ, ଖରାଦିନର ସଂଜ, ଜହ୍ନ ଆଲୁଅ, ଲୁଚକାଳି ଖେଳ, କଇଁଫୁଲ ଓ ରଂଗକନିଅର ତୋଳା ପ୍ରଭୃତି କବିଙ୍କ ସ୍ମୃତିରେ ଜୀବନ୍ତ । ତେଣୁ ଶୈଶବର ସ୍ମୃତି ସଜଳ ମୁହୂର୍ତ୍ତମାନଙ୍କୁ ସେ ପରପିଢ଼ିର କିଶୋରମାନଙ୍କ ଉଦ୍ଦେଶ୍ୟରେ ଏହି କବିତାଗୁଡ଼ିକରେ ସଜାଇ ରଖିଛନ୍ତି । ଶିଶୁର ପ୍ରଥମ ପ୍ରଶ୍ନ, ଗେଲ, ଶିଶୁର ପ୍ରଥମ ଦୁଃଖ, ଆମ ଗାଁ ବୁଢ଼ୀ, ଉଡ଼ିଗଲେ ଗେଣ୍ଡାଳିଆ ପଡ଼ିଗଲା ପର ଭଳି କବିତାରେ ମନସ୍ତତ୍ତ୍ୱର ଗୂଢ଼ରହସ୍ୟ ସରଳଭାବରେ ବର୍ଣ୍ଣିତ । 'ରାତିକସ୍ୱପ୍ନ' ଭଳି କବିତାରେ କବି କଳ୍ପନା ଶିଖର ସ୍ପର୍ଶ କରିଛି । ତେଣୁ ଜନନୀ କଣ୍ଠରେ କବି ଶୁଣାଇଛନ୍ତି ଯେ ଆଜିର ଶିଶୁ କାଲି ସକାଳେ ଫୁଲଭଳି

ଫୁଟି ସୁବାସ ବିତରଣ କରିବ ଓ ସମଗ୍ରଜଗତକୁ ତା'ର ସୁବାସରେ ଆମୋଦିତ କରିବ ।

ପ୍ରକୃତିର ଅପୂର୍ବ ଶୋଭା ଗ୍ରାମ୍ୟ ଜୀବନର ଅଭାବ ଭୁଲାଇଦେବାର ସାମର୍ଥ୍ୟ ରଖେ । ବିଶିଷ୍ଟ ଆଲୋଚକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ଭାଷାରେ, ''ସେଇ ଶୋଷଣପିଷ୍ଟ ଜୀବନରେ କେତେ ଶ୍ୟାମଳ ଧାନକ୍ଷେତ ଓ ପକ୍ୱଶସ୍ୟର ମୋହ ପଲ୍ଲୀ ମଣିଷର ସମସ୍ତ ଦୁଃଖ କଷ୍ଟକୁ ମୁହୂର୍ତ୍ତକପାଇଁ ଭୁଲାଇଦିଏ ମଧ୍ୟ ।''

(ସବୁଜରୁ ସାଂପ୍ରତିକ – ଡଃ ନିତ୍ୟାନନ୍ଦ ଶତପଥୀ – ପୃ.୧୨୭)

'କମଳାୟନ' କାବ୍ୟରେ ନାୟକ କମଳ ତା'ର ବାନ୍ଧବୀ କରୁଣାକୁ ଗ୍ରାମ୍ୟପ୍ରକୃତିର ଅପୂର୍ବ ସୁଷମା ସଂଦର୍ଶନ କରାଇଛି । ଉତ୍କଳର ପଲ୍ଲୀ ପ୍ରକୃତି ଚିତ୍ରଣ କରିବାପାଇଁ କବି ଏହି କାବ୍ୟରେ ସତେଯେପରି ସୁଯୋଗ ସୃଷ୍ଟି କରିଛନ୍ତି । 'ଜେମା' କାବ୍ୟରେ ଗ୍ରାମ୍ୟ ତରୁଣୀ ଜେମା ଜୀବନର କାରୁଣ୍ୟହିଁ ରୂପାୟିତ ହୋଇଛି ।

ସୃଷ୍ଟିଶୀଳତା ସହିତ ରୋମାଣ୍ଟିକ୍ ଚିତ୍ତବୃତ୍ତିର ସମ୍ପର୍କ ଚିରନ୍ତନ । କବି ମାନସିଂହଙ୍କ କବିତାରେ 'ପ୍ରକୃତି' ସେହି ରୋମାଣ୍ଟିକ୍ ଚେତନାର ଉତ୍ସ । କେଉଁଠି ସେ ଚକିତ ମୁଗ୍‌ଧ କରେ ତ କେଉଁଠି ସ୍ତବ୍ଧ କରେ । କେଉଁଠି ସେ କ୍ଳାନ୍ତ ମଣିଷର ମଥା ଆଉଁଷିଦିଏ ଏକାନ୍ତ ଆପଣାର ମଣିଷ ପରି । ପ୍ରକୃତିର ପିଠିକାରେ ମାନବର ମାନସିକତା ବ୍ୟବଚ୍ଛେଦ କରିବାପାଇଁ କବି ବାରମ୍ବାର ପ୍ରୟାସ କରିଛନ୍ତି । ତେଣୁ ତାଙ୍କ ପ୍ରେମିକା ପାଲଟିଛି ନିଦାଘ ରଜନୀର ଜ୍ୟୋସ୍ନା ସଦୃଶ । ଏ ସମ୍ପର୍କରେ ଆଲୋଚକ ଡଃ ଦାଶରଥି ଦାସ କହନ୍ତି, ''ପ୍ରାକୃତିକ ସୁଷମା ସହ ଦୁର୍ଲଭ ମିଳନ ଘଟିଛି ଏକ ତରୁଣ, ସରସ, ରୂପବୁଭୁକ୍ଷୁ ସୂକ୍ଷ୍ମଦୃଷ୍ଟିବନ୍ତ ପ୍ରତିଭାର – ଯେପରି କି ଶହେବର୍ଷ ତଳେ ଘଟିଥିଲା ଚିଲିକା ଓ ରାଧାନାଥଙ୍କ ଭିତରେ ।''

(ମାନସିଂହ ସୃଷ୍ଟି ସମୀକ୍ଷା – ଦାଶରଥି ଦାସ – ପୃ.୩୯)

ବ୍ୟକ୍ତିଗତ ନୈରାଶ୍ୟ ସତ୍ତ୍ୱେ ଗଭୀର ଆଶାବାଦ ତଥା ମାନବବାଦ ପ୍ରତି ଉନ୍ମୁଖତା ତାଙ୍କ କବିତାକୁ ନିତ୍ୟନୂତନ କରିରଖିଛି । ପ୍ରକୃତିର ଉତ୍ସଙ୍ଗରୁ ଦୂରେଇଯିବାର ବିଷାଦରେ 'ମହାନଦୀରେ ଜ୍ୟୋସ୍ନା ବିହାର' କରୁଥିବା କବି ବିବ୍ରତ ହୋଇ କହନ୍ତି, ''ଫେରିବା କହୁଛ ବଂଧୁ ପୁଣି ଅଂଧକାରେ'' । ସେହିପରି କବିଙ୍କର ଅପରୂପ ରୂପମୟୀ ପ୍ରକୃତି ସମ୍ପର୍କରେ ଯେତେ ଆଲୋଚନା କଲେ ମଧ୍ୟ ତାହା ପୂର୍ଣ୍ଣାଙ୍ଗ ହେବାର ନୁହେଁ । ତେବେ କବିଙ୍କର ପ୍ରକୃତିପ୍ରତି ଦୃଷ୍ଟିଭଙ୍ଗୀ ଯେ କେତେ ବୈଚିତ୍ର୍ୟମୟ ତାହା ଆମେ ଏ କ୍ଷୁଦ୍ର ପ୍ରବଂଧରେ କିଞ୍ଚିତ ଆଲୋକପାତ କଲେ ମାତ୍ର ।

---

# ସାହିତ୍ୟସାଧକ ମାନସିଂହ

ସାହିତ୍ୟସାଧକ ମାନସିଂହ ସମଗ୍ର ଓଡ଼ିଆ ସାହିତ୍ୟରେ ନିଜପାଇଁ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିପାରିଛନ୍ତି । କବି, ନାଟ୍ୟକାର, ପ୍ରାବନ୍ଧିକ ଓ ଔପନ୍ୟାସିକଭାବରେ ତାଙ୍କର ସାମର୍ଥ୍ୟ ଓଡ଼ିଆ ସାହିତ୍ୟକୁ ବହୁଭାବରେ ସମୃଦ୍ଧ କରିଛି । ସବୁଜର ସମକାଳୀନ ହୋଇଥିଲେହେଁ ତାଙ୍କ ରଚନାସମୂହରେ ଅଶେଷ ମୌଳିକତା ତାଙ୍କୁ ଅନନ୍ୟ କାବ୍ୟସିଦ୍ଧି ପ୍ରଦାନ କରିଛି । ରୂପ ଭିତରେ ଅରୂପର ଅନ୍ୱେଷଣ ତାଙ୍କ କବିତାରାଶିକୁ ଏକ ପରିଚ୍ଛନ୍ନତା ତଥା ଗଭୀରତା ପ୍ରଦାନ କରିଛି । ଦେଶପ୍ରୀତିର ତୀର୍ଯ୍ୟକ୍ ପ୍ରପାତ ତାଙ୍କ ରଚନାସମୂହକୁ ସିକ୍ତ କରିବାରେ କ୍ଷମ ହୋଇଛି । ସେହିପରି ଅତୀତପ୍ରୀତି, ପଲ୍ଲୀପ୍ରୀତି, ଦାରିଦ୍ର୍ୟ ପ୍ରତି ସମବେଦନା, ପ୍ରତିଭାପୂଜା ପ୍ରଭୃତି ମାନସିଂହଙ୍କୁ ରୋମାଣ୍ଟିକ୍ କବିଭାବରେ ପ୍ରତିଷ୍ଠା ପ୍ରଦାନ କରିଛି । ଜାତିର ଦୁର୍ଦ୍ଦିନରେ କବିଙ୍କର କାରୁଣ୍ୟ ମଧ୍ୟରୁ କବିଙ୍କର ସମୟକୁ ଦେଖିବାର ଭଙ୍ଗୀ ବାରିହୋଇପଡ଼େ ।

ତାଙ୍କର ପ୍ରଥମ କବିତା ବାରବାଟୀ ୧୯୨୬ରେ ପ୍ରକାଶିତ ହୁଏ । ପରେ କୋଣାର୍କ (୨୬), ଉପେକ୍ଷିତା (୨୮), ସାଧବ ଝିଅ (୨୯), ଧୂପ (୩୧), ହେମଶସ୍ୟ (୩୩), ହେମପୁଷ୍ପ (୩୫), ଉତ୍କଳ ବନ୍ଦନା (୩୭), ପ୍ରେମ ପୁଷ୍ପ (୩୫), ପ୍ରେମ ଶସ୍ୟ (୪୫), ମାଟିବାଣୀ (୪୭), ଜୀବନଚିତା (୪୭), ବାପୁ ତର୍ପଣ (୪୭), ଜେମା ଓ କମଳାୟନ (୪୭), କ୍ରୁଶ (୫୬), ସ୍ୱରାଜ୍ୟାଶ୍ରମ (୫୨-୫୬), ସିନ୍ଧୁ ଓ ବିନ୍ଦୁ (୬୨), ନିକ୍ୱଣ, ଶୁଭଦୃଷ୍ଟି, ଅକ୍ଷତ, କିଶୋର, ଗୀତରେଣୁ ପ୍ରଭୃତି ତାଙ୍କର କାବ୍ୟ-କବିତା ସମୂହ । ନଷ୍ଟନୀଡ଼, ବାରବାଟୀ ଓ ବୁଦ୍ଧ ତାଙ୍କର ତିନୋଟି ନାଟକ । ରାଜକବି ଉପେନ୍ଦ୍ର, ପୁଷ୍ପିତା, ପୂଜାରିଣୀ, ବୁଦ୍ଧଦୂତୀ, ଶାସନଚକ୍ର, ପୁଷ୍ପାଭିନୟ ତାଙ୍କ ରଚିତ ନାଟିକା । 'ପଶ୍ଚିମ ପଥିକ' ଶୀର୍ଷକ ଭ୍ରମଣ କାହାଣୀ ପୁସ୍ତକରେ ମାନସିଂହ ନିଜର ବିଦେଶ ଭ୍ରମଣ ସମ୍ପର୍କୀୟ ତଥ୍ୟ ପରିବେଷଣ କରିଛନ୍ତି । 'ଅନ୍ୱେଷଣ' ତାଙ୍କର ଏକମାତ୍ର ଉପନ୍ୟାସ । ସମାଲୋଚକଭାବରେ ମାନସିଂହଙ୍କର ଅସାଧାରଣ ପ୍ରତିଷ୍ଠା ରହିଛି କବି ଓ କବିତା, ଜୀବନପଥ, ମାଟିର ମହାକବି ସାରଳାଦାସ, ଓଡ଼ିଆ ସମାଜ ଓ ସାହିତ୍ୟ, ସରସ୍ୱତୀ ଫକୀରମୋହନ, ଶିକ୍ଷାବିତ୍‌ର ଗାଥା ଭଳି ପୁସ୍ତକରେ ସେ ସଚେତନଭାବରେ ସମାଲୋଚନାର ନୂତନ ଧାରା ସୃଷ୍ଟି କରିଛନ୍ତ ବୋଲି କୁହାଯାଇପାରେ ।

ଏତଦ୍‌ବ୍ୟତୀତ ସେ ଇଂରାଜୀ ଭାଷାରେ ଓଡ଼ିଆ ସାହିତ୍ୟର ଇତିହାସ ରଚନା କରି ଓଡ଼ିଆ ଭଳି ପ୍ରାନ୍ତୀୟ ଭାଷାକୁ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠା ପ୍ରଦାନ କରିଛନ୍ତି । କାଳିଦାସ ଓ ସେକ୍‌ସପିୟରଙ୍କ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ କରି ସେ ଡକ୍ଟରେଟ୍ ଉପାଧି ଲାଭ କରିଛନ୍ତି । "The Saga of the Land of Jagannath' ଶୀର୍ଷକ ଇଂରାଜୀ ପୁସ୍ତକରେ ମାନସିଂହ ଜଗନ୍ନାଥଙ୍କ ସମ୍ପର୍କୀୟ ଇତିହାସ ଓ କିମ୍ବଦନ୍ତୀର ଆଲୋଚନା କରିଛନ୍ତି । ଟେନିସନ୍, ଡନ୍, ଶେଲି, ବାଇରନ ଓ ସ୍କଟ୍ ପ୍ରଭୃତିଙ୍କ ରଚନାର ପ୍ରଭାବରେ କବି ପ୍ରେମ, ପ୍ରକୃତି, ବିଷାଦବାଦ ଓ ଜାତୀୟତାର ଜୟଗାନ କରିଛନ୍ତି । ଇଂରାଜୀ ସାହିତ୍ୟ ସହିତ ସମ୍ୟକ୍ ପରିଚିତିହିଁ ତାଙ୍କର ସ୍ରଷ୍ଟାମାନସକୁ ପରିପୁଷ୍ଟ କରିଛି, ଏକଥା ସେ ସ୍ୱୀକାର ମଧ୍ୟ କରିଛନ୍ତି ।

## ପ୍ରେମ ଓ ପ୍ରଣୟର କବି ମାନସିଂହ :

ପ୍ରେମ ଓ ପ୍ରଣୟକୁ ନେଇ କବି ଚିତ୍ତରେ ଯୁଗେ ଯୁଗେ ଭାବତରଙ୍ଗ ଉଠିଛି । ସେ କେତେବେଳେ ରାଧାକୃଷ୍ଣଙ୍କ ପ୍ରେମକୁ ଜୀବପରମର ପ୍ରେମ ମଧ୍ୟରେ ଅବଲୋକନ କରିଛି ତ କେତେବେଳେ ମାନବ ପ୍ରେମ ଭିତରେ ବିଧାତାର ଇଚ୍ଛାକୁ ପ୍ରତ୍ୟକ୍ଷ କରିଛି । ମାନସିଂହଙ୍କ ଚେତନାରେ ପ୍ରେମ ରୂପତୃଷ୍ଣାରୁ ଉଦ୍ଭୂତ ମାତ୍ର ବିରହରେ ତାହା ମହିମାମୟ ହୋଇଉଠିଛି, ତାହା ବ୍ୟକ୍ତିତ୍ୱକୁ ମାର୍ଜିତ କରିଛି, ଊର୍ଦ୍ଧ୍ୱମୁଖୀ କରିଛି । ପାପପୁଣ୍ୟ ଦେଣାପାଉଣାରେ ପ୍ରେମକୁ ମାପିହୁଏନାହିଁ । ଗୋପନ କଥା, ପାପ ଓ ପ୍ରେମ, ପ୍ରଣୟଗାଥା, ବନ୍ଦିନୀପ୍ରିୟା, ଆଷାଢ଼ର ଅଭିସାର, ପ୍ରେମ ଓ ମୃତ୍ୟୁ, ନିତ୍ୟ ସ୍ୱୟଂବର, ଆତ୍ମାର ସୌନ୍ଦର୍ଯ୍ୟ, ଇରାନୀ କିଶୋରୀ ଭଳି କବିତାରେ ପ୍ରେମର ଅପରୂପ ପ୍ରକାଶ ଲକ୍ଷ୍ୟ କରାଯାଏ । 'ଧୂପ' ପ୍ରେମ କବିତା ସଂକଳନଭାବରେ ଓଡ଼ିଆ ସାହିତ୍ୟରେ ଅନତିକ୍ରମ୍ୟ ହୋଇ ରହିଛି । ପ୍ରେୟସୀକୁ ନେଇ ଧରାରେ ସ୍ୱର୍ଗର କଳ୍ପନା କରିପାରନ୍ତି କବି, ସେ ଏକାଧାରରେ ନିଜର ଦାୟିତ୍ୱ ସଚେତନ ଓ ପ୍ରେମ ପ୍ରତି ବଶମ୍ବଦ । 'ମୁଁ କାହିଁକି ଲେଖେ' ଶୀର୍ଷକରେ ମାନସିଂହ ସ୍ୱୀକାର କରିଛନ୍ତି ଯେ ''ପ୍ରେମର ଭିତ୍ତି ହୋଇପାରେ ଦେହ, ମାତ୍ର ଏହାର ପରିସୀମା ଦେହାତୀତ । ଏହାର ପ୍ରତି ସ୍ଥୂଳ, ମାତ୍ର ପ୍ରତିକ୍ରିୟା ସୂକ୍ଷ୍ମ । ଏହାର ଅନୁଭୂତି ବ୍ୟକ୍ତିଗତ ମାତ୍ର ଅଭିବ୍ୟକ୍ତି ନିରପେକ୍ଷ ।''

'ଧୂପ' ସଂକଳନରେ 'ତରୁଣ କବିର ଆଶା'ରେ କବିଙ୍କର ଭାବନା –

''ଭାବିଥିଲି ଅବା ବକୁଳତଳେ ସୁରଭି କୁସୁମ
ଶୟନ ପରେ
ନାପିବି ଜୀବନ ପ୍ରେୟସୀ ଧରି, ସ୍ୱପନ ପରି ।''

'ସାଧବ ଝିଅ'ରେ ବିଦେଶୀ ଅପରିଚିତ ଯୁବକକୁ ହୃଦୟ ସମର୍ପଣ କରିଥିବା ତରୁଣୀର ମାନସିକ ବେଦନା ରୂପ ପାଇଛି । ପ୍ରେମିକର ସ୍ୱୀକାରପାଇଁ ଅପେକ୍ଷା ନକରି ସେ ନିଜର ହୃଦୟ ବିକିଦେଇଛି । ସେ ଜରା ଓ ମୃତ୍ୟୁଠାରୁ ନିର୍ଦ୍ଦିଷ୍ଟ ଦୂରତ୍ୱରେ ରହି ପ୍ରେମକୁ ଅନୁଭବ କରିବାକୁ ଚାହାନ୍ତି । ତେଣୁ ଧବଳକେଶା ପ୍ରଣୟିନୀକୁ ସାକ୍ଷାତ୍ କରିବାକୁ ସେ ଚାହାନ୍ତିନାହିଁ । ତାଙ୍କ ଅନ୍ତରରେ ସେହି ସୁନ୍ଦରୀ ରୂପସୀର କାଞ୍ଚନିକ ରୂପ ହିଁ ଚିରନ୍ତନ ହେଉ ବୋଲି ସେ କାମନା କରିଛନ୍ତି । 'ହେମଶସ୍ୟ'ର 'ଧରାବତରଣ' କବିତାରେ ସେହି ପ୍ରେମର ଭବ୍ୟପ୍ରକାଶ ଉପଲବ୍ଧି କରିହୁଏ । କିଶୋରୀ ବଧୂର ଆତ୍ମସମର୍ପଣର ସେହି ଅନନ୍ୟ ମୁହୂର୍ତ୍ତପାଇଁ ସେ ବାରମ୍ବାର ଧରାବତରଣର କଷ୍ଟ ବରଣ କରିବାପାଇଁ ଆଗ୍ରହୀ । ତେଣୁ ମାନମୟୀ ନବବଧୂଙ୍କୁ ସେ କହନ୍ତି—

"ଲଭିବାକୁ ସେ ଦୁଇ ଆଖିର ପରିପୂର୍ଣ୍ଣ ଆତ୍ମସମର୍ପଣ
ହେ ସଖୀ କରୁଛି ମୁଁ କି ଜନ୍ମେ ଜନ୍ମେ ଧରାବତରଣ ।"

କେବେ ଦକ୍ଷିଣାପବନ, କେବେ ବର୍ଷାଧୂଆ ଶ୍ରାବଣ ତାଙ୍କପାଇଁ ପ୍ରଣୟର ବାର୍ତ୍ତା ଆଣିଛନ୍ତି । ତଥାପି ପ୍ରେମ ଭିତରେ ବିଦେହର ସତ୍ତା ଅନୁଭବ କରି କବି ଦେହର ସୌନ୍ଦର୍ଯ୍ୟ ନିକଟରେ ସୀମିତ ରହିନାହାନ୍ତି । 'ପ୍ରଣୟ ବ୍ୟଥା' କବିତାରେ ସେ ସ୍ପଷ୍ଟ ଭାବରେ ଜଣାଇଛନ୍ତି ଯେ ପ୍ରଣୟରେ ସମର୍ପଣହିଁ ଶେଷକଥା । ପ୍ରେମିକପାଇଁ ଅଶ୍ରୁର ସ୍ୱତନ୍ତ୍ର ଆବେଦନ ରହିଛି । ତେଣୁ ସେ କହନ୍ତି –

"ମନେହୁଏ ଧୂପ ସମ ଦଗ୍ଧ ହୋଇ ବାଷ୍ପ ଯିବି ହୋଇ
ପ୍ରଣୟର ଅଗ୍ନି ଶେଷେ ପ୍ରଣୟର ଭସ୍ମ ଯିବି ଥୋଇ ।"

(ପ୍ରଣୟ ବ୍ୟଥା)

ପ୍ରେମ ଜୀବନପାଇଁ ଏକ ଆବଶ୍ୟକତା । ଏହା ଆତ୍ମାକୁ ଉଦାର କରେ ଓ ବିଶ୍ୱର କଷଣ ବୁଝିବାର କ୍ଷମତା ଦିଏ । କିନ୍ତୁ ସର୍ବଥା ଯେ ପ୍ରେମ ସମାଜ ଅନୁମୋଦିତ ହେବ ଏଭଳି କଥା ନାହିଁ । ତେଣୁ 'ପାପ ଓ ପ୍ରେମ' କବିତାରେ କବି କହନ୍ତି –

"ନୟନୁ ଯାହାର ଲୋତକ ମୋ ପାଇଁ ବୋହିଲା
ମୋ ନୟନେ ସେ ତ ପରମପୂଜ୍ୟା ମହିଳା ।"

ପ୍ରେମକୁ ପାପ ବୋଲି ମନେକରିବା ଭ୍ରମାତ୍ମକ, କାରଣ ପ୍ରେମ ବ୍ୟକ୍ତିତ୍ୱକୁ ରସାଣିତ କରିଥାଏ । ଦିନେ 'ବିଦଗ୍ଧ ଚନ୍ତାମଣି'ର ନାୟିକା ରାଧା ପ୍ରେମପାଗଳିନୀ ହୋଇ କହିଥିଲେ –

"ଜୀବନ ଗଲେ ଏତିକି କରିବ, ଶ୍ୟାମ ନାମ ମୋର ହୃଦେ ଲିହିବ
ଶ୍ୟାମ ରୂପ ମୂର୍ତ୍ତି ଅଂଗେ ବେଢ଼ାଇ, ଶ୍ୟାମ ବସନ ଅଂଗରେ ଜଡ଼ାଇ
ଶ୍ୟାମ ଚଳାପଥେ ମୋ ଶବ ପୋତିବ ଆପଣା ହାତେ ।"

ପୁଣି ଏହି ଆତ୍ମନିବେଦନରେ ଅନ୍ୟ ଏକ ସ୍ୱର ଶୁଭିଥିଲା 'ତପସ୍ୱିନୀ'ରେ ଦେବୀ ସୀତାଙ୍କ କଣ୍ଠରେ –

''ମୋ ତନୁ ଦଗ୍‌ଧ ହେଲେ ହେବ ତ ଖାର
ତାହାକୁ କରାଇବ ପାଦପେ ସାର
ତା ତହୁଁ କାଷ୍ଠ ନେଇ ବର୍ଦ୍ଧକୀ ହସ୍ତେ
କରାଇ ଦେବ ପ୍ରଭୁ ପାଦୁକା ମୋତେ ।''

ଏହି ସମର୍ପଣର ଅନ୍ୟତମ ଅଙ୍ଗୀକାର 'ପ୍ରେମ ଓ ମୃତ୍ୟୁ' କବିତାରେ ଦେଖିବାକୁ ମିଳେ ।

''ଶୁଣିବ ଯେବେ ପ୍ରିୟା ଗୋ ମୋର ପ୍ରଣୟୀ ତବ ଜଗତେ ନାହିଁ
ଆସିବ ମୋର ଭସ୍ମ ପାଶେ ଦେବ ହେ ତାରେ ଦେହର ଛାଇ
ପାରିବ ଯଦି ଭସ୍ମ ପରେ ପଦ୍ମପାଦ ଚାଳିବ ଧୀରେ
ଜୀବନ ପୁଣି ଲଭିବି ସଖୀ ନିଶ୍ଚୟ ମୁଁ ମରଣ ତୀରେ ।''

ପାରସ୍ୟର କବି, ସୁରା ଓ ସାକୀରେ ଜୀବନକୁ ଖୋଜୁଥିବା ଓମାରଖୈୟାମଙ୍କ 'ରୁବାୟତ୍'ରେ ଏତାଦୃଶ କାମନା ନିହିତ । ପାନପାତ୍ର ସହିତ ଆୟୁଷ ସରିଯାଉଥିବାର ଏକତ୍ର କାମନା ଭିତରେ ଓମାରଖୈୟାମ ଜୀବନ ଦର୍ଶନର ଯେଉଁ ଅନୁପମ ଆଲେଖ୍ୟ ଆଙ୍କିଛନ୍ତି ତାହା ଏହିପରି –

''ଦୀପ୍ତଚରଣ ଚଳାଇ ସଧୀରେ ତୁମେ ଯେବେ ଯିବ
ଏଇ ପଥଧାରେ ସହୀରେ
ତାରା ବିଚ୍ଛୁରିତ ଅତିଥି ଗହଣେ ସ୍ନିଗ୍‌ଧ-ସବୁଜ-ଦୂର୍ବା
ଶୋଭିତ ମହୀରେ
ଅନ୍ତରେ ଭରି ପ୍ରୀତି ସମାଚାର ଉପନୀତ ହେବ ସେହି
ମୋର ପୀଠ ପରେ ଗୋ
ଯିବନି ପାସୋରି ଦେବାକୁ ଅଜାଡ଼ି ରିକ୍ତ ପିଆଲା
ସହାସ ଲପନେ ବାରେ ଗୋ ।''

ଏତାଦୃଶ ସମର୍ପଣର ଭାବନା ମାନସିଂହ ସାହିତ୍ୟ ସୃଷ୍ଟିରେ ଅନ୍ୟତମ ଉଜ୍ଜ୍ୱଳ ଦିଗ । ଏଠାରେ ସମାଜର ତାଡ଼ନାଠାରୁ ଜୀବନର କାମନା ଅଧିକ । ପ୍ରାପ୍ତି ଇଚ୍ଛାଠାରୁ ଅର୍ପଣର କାମନା ଗୁରୁତ୍ୱପୂର୍ଣ୍ଣ । ତେଣୁ ପ୍ରେମିକ କବି ସମାଜ ଅସ୍ୱୀକୃତ ପ୍ରେମ ସମ୍ପର୍କ କଥା ବର୍ଣ୍ଣନା କରିବା ସମୟରେ ପ୍ରଗଲ୍‌ଭ ହୋଇଉଠିଛନ୍ତି ଓ ଏତାଦୃଶ ପ୍ରେମକୁ ସାହିତ୍ୟିକ ମର୍ଯ୍ୟାଦା ଦେବା ସହିତ ପ୍ରେମିକ-ପ୍ରେମିକାଙ୍କ ଆତ୍ମବିଶ୍ୱାସ ବୃଦ୍ଧିରେ ମଧ୍ୟ ସହାୟକ ହୋଇଛନ୍ତି ।

## ସମ୍ବେଦନଶୀଳ କବି ମାନସିଂହ :

କବିମାତ୍ରେ ସମ୍ବେଦନଶୀଳ । ପୁଣି ପ୍ରେମ ପ୍ରଣୟର ସାଧନା ଭିତରୁ ବିଶ୍ୱମାନବ ପାଇଁ ଶ୍ରଦ୍ଧା ଓ ସହାନୁଭୂତିର ବାର୍ତ୍ତା ପଠାଉଥିବା କବି ଅତିମାତ୍ରାରେ ପରଦୁଃଖରେ ଦୁଃଖୀ । ସ୍ରଷ୍ଟା ପ୍ରାଣର ସମ୍ବେଦନଶୀଳତା କେବଳ ନରନାରୀ ନୁହଁନ୍ତି, ପଶୁପକ୍ଷୀଙ୍କ ଉଦ୍ଦେଶ୍ୟରେ ମଧ୍ୟ ପ୍ରକଟିତ । କଣ୍ଟ, କାଚ, ରେଙ୍ଗୁନ ଚିଠି, ବୋଇତ ବନ୍ଦାଣ, ବିଲଲକ୍ଷ୍ମୀ, ତଅପୋଇର ବିଳାପ, ଘରପଶା, ନଷ୍ଟପଲ୍ଲୀଭଳି କବିତାରେ ପଲ୍ଲୀର ଦୁର୍ଦ୍ଦଶା ପ୍ରତି କବିଙ୍କର ସହାନୁଭୂତି ପ୍ରକାଶିତ ହୋଇଛି । 'ଜେମା' କବିଙ୍କ ସମ୍ବେଦଶୀଳ ଦୃଷ୍ଟିରେ ଜୀବନ ପ୍ରୀତିର ଏକ ନିଦର୍ଶନ । ବାଲ୍ୟବିବାହ ଓ ବୈବାହିକ ଜୀବନର ବିଚିତ୍ର ସର୍ତ୍ତ ମଧ୍ୟରେ କିଶୋରୀ ଜେମାର ସହଜ ଜୀବନର ଭାବପ୍ରବଣତା ହଜିଯାଏ । ଅଗଣିତ ଗ୍ରାମ୍ୟ ତରୁଣୀଙ୍କର ପ୍ରତିନିଧି ହେବାପାଇଁ କବିଙ୍କର ସହାନୁଭୂତି ସହସ୍ରଧାରାରେ ଝରିଯାଇଛି । 'ଉପେକ୍ଷିତା' କାବ୍ୟରେ ସୂର୍ପଣଖା, ଦେବଯାନୀ ଭଳି ଉପେକ୍ଷିତା ନାରୀ ଚରିତ୍ରମାନେ ରୂପାୟିତ । ରବୀନ୍ଦ୍ର ପ୍ରଭାବରେ ରଚିତ ଏହି କବିତାଗୁଡ଼ିକ ଅନେକ ସ୍ଥାନରେ ପ୍ରେମରେ ବିଫଳତାର ଇସ୍ତାହାର ବାଢ଼ିଥାଆନ୍ତି । 'ଶୁଭଦୃଷ୍ଟି'ରେ ନାଗଜେମା ଉଲୁପୀ ଓ ଅର୍ଜୁନଙ୍କର ପ୍ରେମ କାହାଣୀ, 'ନିକ୍ୱଣ'ରେ ରାଜକନ୍ୟା ଓ ଦରିଦ୍ର କବିଙ୍କର ପ୍ରଣୟ କାହାଣୀ ରୂପାୟିତ ହୋଇଛି । ଜନ୍ମ ଓ ଆଭିଜାତ୍ୟକୁ ନେଇ ପ୍ରେମ ତିଷ୍ଠିପାରେନାହିଁ । ଏହା 'ନିକ୍ୱଣ'ର ବକ୍ତବ୍ୟ । 'ପୂଜାରିଣୀ'ରେ ବ୍ରାହ୍ମଣ କନ୍ୟା ଲକ୍ଷ୍ମୀପ୍ରତି ସମବେଦନା ସହସ୍ରଧାରାରେ ଝରିଯାଇଛି । ସାକ୍ଷୀଗୋପୀନାଥଙ୍କ ମନୋହାରିଣୀ କିଶୋରୀ ଲକ୍ଷ୍ମୀ କେବଳ ସମାଜର ପରିହାସ ହିଁ ଶୁଣିଛି । ତା'ର ଚିନ୍ତାଧାରାରେ ପ୍ରୌଢ଼ର ବିଚାର ପ୍ରଦାନ କରିବା ସମୟରେ କବି ଗୋପୀନାଥଙ୍କୁ କର୍ତ୍ତବ୍ୟ ଅଚେତନ କିଶୋରଭାବରେ ପରିକଳ୍ପନା କରିଛନ୍ତି । 'କୋଣାର୍କ' ସମ୍ପର୍କରେ ଏକାଧିକ କବିତାରେ କେଉଁଠି କିଛି କୋଣାର୍କ ପ୍ରତି ସହାନୁଭୂତିଶୀଳ ତ କେଉଁଠି କୋଣାର୍କକୁ ଦାରିଦ୍ର୍ୟ ପ୍ରତି ପରିହାସ ବୋଲି କହିଛନ୍ତି । ପ୍ରଗତି ଯୁଗପାଇଁ ନୂତନ ଦିଗ୍‌ବଳୟ ଉନ୍ମୋଚନ କରି କବି ଗାଇଛନ୍ତି –

> "କ୍ରୁଦ୍ଧ ହେଲା କୀର୍ତ୍ତିକୀଟ କାଳ
> କ୍ରମେ ହେଲା ପ୍ରକୃତି କରାଳ
> ଗଉରବ ଅସହିଷ୍ଣୁ ବୁଲାଇଲେ ନୟନରକ୍ତିମ
> ବିଶ୍ୱ ଦେଖେ ଆଜି ମାତ୍ର ସେ ଶୋଭାର ଖଣ୍ଡିତ କଂକାଳ
> ଲାବଣ୍ୟର ନଷ୍ଟ ଅସ୍ଥିମାଳ ।"

ଲାସ୍ୟମୟୀ କୋଣାର୍କ ଅଂଗରେ କେବେ ପ୍ରଣୟର ଆବେଦନ ତ କେବେ ଅତୀତ ଗୌରବର ସ୍ମୃତିଚିହ୍ନ ଦେଖିଛନ୍ତି କବି। ପ୍ରସିଦ୍ଧ ସାହିତ୍ୟିକ ତଥା ସମାଜସେବୀମାନଙ୍କ ସମ୍ପର୍କରେ ଲେଖିଥିବା କବିତାଗୁଡ଼ିକରେ ଦେଶପ୍ରତି ତାଙ୍କର ସମ୍ବେଦନଶୀଳତା ଦେଖିବାକୁ ମିଳେ। ମନୁଷ୍ୟ ପ୍ରତି ସମ୍ବେଦନଶୀଳ କବିଚିତ୍ତ ଦେଶପାଇଁ ଭାବବିହ୍ୱଳ ହୋଇଛି । ଏହି ବିଚାର ମଧ୍ୟରୁ ଏକ ସଚେତନ କବିମାନସର ପରିଚୟ ମିଳିଥାଏ ।

**ବିଷାଦବାଦୀ କବି ମାନସିଂହ :**

ବିଷାଦବାଦୀ ରୋମାଣ୍ଟିକ୍ ଦୃଷ୍ଟିଭଙ୍ଗୀର ଅନ୍ୟତମ ଉପାଦାନ। ବିଷାଦରେ କବିର ଚିନ୍ତା ସଂଚରଣକ୍ଷମ ହୋଇପାରେ। ବିଷାଦବୋଧ କବିକୁ ବିଶ୍ୱମାନବର ପ୍ରତିନିଧି ସଜାଇପାରେ । ମାନସିଂହଙ୍କ ବିଷାଦବାଦ କେବେ ପ୍ରକୃତି, କେବେ ମନୁଷ୍ୟ ବା ପରିବେଶ କେବେ ପୁଣି ଆଧ୍ୟାତ୍ମିକତାକୁ କେନ୍ଦ୍ର କରି ରୂପ ପାଇଛି। ପ୍ରକୃତିର ଉତ୍ସଙ୍ଗରୁ ଜୀବନସଂଗ୍ରାମକୁ ଫେରିଯିବାର କାମନାରେ କବିଚିତ୍ତ ବିଷାଦିତ ହୋଇଛି । ତେଣୁ 'ମହାନଦୀରେ ଜ୍ୟୋତ୍ସ୍ନାବିହାର' କବିତାର ପ୍ରାନ୍ତଭାଗରେ କବି କହନ୍ତି –

''ଫେରିବା କହୁଛ ବଂଧୁ। ପୁଣି ଅନ୍ଧକାରେ ?
ଫେରିବାକୁ ହେବ ସତେ ହାୟ ଏ ଜୀବନ ?
ଅବସର ନାହିଁ ମିଳେ କ୍ଷଣେ ଭୁଲିବାର
ଜୀବନର ହାହାକାର ପ୍ରାଣର ଦହନ ।''

– ଏହି ଚିନ୍ତାଧାରା ଚିଲିକାରେ କବି ରାଧାନାଥଙ୍କର ''ଚିରଦିନ ଦୁଃଖ ପ୍ରହାରେ ଜର୍ଜର, ପଇଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର'' ଚିନ୍ତାଧାରା ସହିତ ଭାବସାମ୍ୟ ରକ୍ଷା କରିଥାଏ। ଜୀବନ ସଂଗ୍ରାମରେ କ୍ଷତବିକ୍ଷତ ମଣିଷ ବାରମ୍ବାର ବିଷାଦିତ ହୁଏ। 'ଜେମା'ର ପଦଟିଏ –

''ଯାଉ କୂପେ ନୀର ଆଣି ମେଘେ ନାହିଁ ପରିମାଣି
ପଥେ ପାର ବଜ୍ରାକୁଳ ବୃଷ୍ଟି ସହସା
ନୀରଭାର ଧରି କାଖେ ମୁଖପୋତି ବାଡ଼ପାଖେ
ତରୁଣୀ ଥମକି ଯିବା ସହି ବରଷା-
ପରି ଜେମା ଏ ବିପଦରେ
କାଠ ହୋଇ ଚଳେ ମୁଖ ରଖି ପଦରେ ।''

ବର୍ଷା ଆସୁଛି ବୋଲି ନଜାଣି ପାଣି ଆଣିବାକୁ ଯାଉଥିବା ତରୁଣୀ ଯେମିତି ହଠାତ୍ ବଜ୍ରବିଜୁଳି ସହିତ ବର୍ଷା ହେବା ନେଇ ଥମକିଯାଇ ବାଟରେ କିଂକର୍ତ୍ତବ୍ୟବିମୂଢ଼

ହୋଇ ଠିଆ ହୋଇଯାଏ, ଜେମା ସେଇମିତି ନିଜ ଦୁଃଖରେ ନଇଁଯାଇ ପାଦକୁ ଚାହିଁ ଚାହିଁ ଚାଲେ । ଏତାଦୃଶ ବିଷାଦର ବର୍ଣ୍ଣନା ଶୁଭଦୃଷ୍ଟି, ଉପେକ୍ଷିତା ଓ ନିକ୍ୱଣରେ ଯଥେଷ୍ଟ । ଉତ୍ସୁକ ଅର୍ଜୁନଙ୍କ ପ୍ରେମ ସମ୍ଭାଷଣ ଭୁଲିପାରେନାହିଁ । 'କିସ୍‌ସା ଗୌତମୀ' ନିଜର ଦୁଃଖ ଭିତରୁ ବିଶ୍ୱମାନବର ଦୁଃଖର ସନ୍ଧାନ ପାଏ ।

'କ୍ରୁଶ' ସଂକଳନର ଅନେକ କବିତାରେ ବିଷାଦବାଦରୁ ଉତ୍ତୀର୍ଣ୍ଣ ଏକ ଅବବୋଧର କଥା କୁହାଯାଇଛି । ସେ ବିଷାଦ ଆତ୍ମାର ବିଷାଦ । ସକଳ ସାଂସାରିକ ସୀମା ସରହଦରୁ ଭିନ୍ନ ଏ ବିଷାଦ ମଧ୍ୟରେ ଉତ୍ତରଣର ଦିବ୍ୟ ଭାବନାର ସ୍ପର୍ଶ 'ତୁମରି ଅହଂକାର' କବିତାରେ –

''ହେ ପରମପ୍ରିୟ ମମ, ତୁମରି ପ୍ରଣୟ
ଏକାନ୍ତ ଭରସା ଆଜି ଏକାନ୍ତ ସଂପଦ
ସର୍ବରିକ୍ତ ମୁହିଁ ଆଜି ସେ ଲାଗି ନିର୍ଭୟ
ନ ନିଅ ସେ ଗରବର ପବିତ୍ର ଆନନ୍ଦ ।''

ସନେଟ ଶୈଳୀରେ ରଚିତ ଏହି କବିତାଗୁଡ଼ିକରେ କବିଙ୍କ ବ୍ୟକ୍ତିଗତ ବ୍ୟଥା ଓ ବେଦନା ବିଶ୍ୱର ବ୍ୟଥା ବେଦନା ସହିତ ଏକାକାର ହୋଇଯାଇଛି । ମୋ ଧନରେ, ଯାଇଛି ସେ, ଶିଶୁର ଦାନ, ରୂପାନ୍ତର, ଆକାଂକ୍ଷିତ ଶୂନ୍ୟତା, ଏକାନ୍ତ ଏକାକୀ, ଉଦ୍‌ଗମନ ପ୍ରଭୃତି ଏହି ଶ୍ରେଣୀର କବିତା । ଜୀବନ ସଂଗ୍ରାମର ସଂକଟରୁ ଜାତ ବିଷାଦର ଅବତାରଣାରେ କବିଙ୍କର ଲେଖନୀ ଯଥେଷ୍ଟ କୃତିତ୍ୱ ହାସଲ କରିପାରିଛି ।

**ଗାଥା କବିତାର କବି ମାନସିଂହ :**

ଗାଥା କବିତା (Ballad)ର ଆବେଦନ ସର୍ବଦା ସ୍ୱତନ୍ତ୍ର । ଲୋକକଥା, ଇତିହାସ, ଐତିହାସିକ ଚରିତ୍ର, କିମ୍ବଦନ୍ତୀ ପ୍ରଭୃତିକୁ ଆଧାର କରି ରଚିତ ଏହି କବିତାଗୁଡ଼ିକରେ ଗଳ୍ପକଥନ ମାଧ୍ୟମରେ ପାଠକକୁ ସହାନୁଭୂତିର ଉପଲବ୍ଧିପାଇଁ ଆଗ୍ରହୀ କରାଯାଇଥାଏ । ପୂର୍ଣ୍ଣାଙ୍ଗ କାହାଣୀ ସହିତ ଛନ୍ଦୋବଦ୍ଧ ସାବଲୀଳ ଭାଷା ମାନସିଂହଙ୍କ ଗାଥାକବିତାର ସ୍ୱାତନ୍ତ୍ର୍ୟ । ତଅପୋଇ, କିସ୍‌ସା ଗୌତମୀ, ଶୁକଦେଇ, ସୀତାରାମ, ଯଦୁ ସ୍ୱାଇଁର ଗାଥା ପ୍ରଭୃତି ତାଙ୍କର ଉଲ୍ଲେଖଯୋଗ୍ୟ ଗାଥାକବିତା । ଏତଦ୍‌ବ୍ୟତୀତ ସାଧବଝିଅ, ଜେମା, ନିକ୍ୱଣ ବା ଉପେକ୍ଷିତାକୁ ମଧ୍ୟ ଗାଥା କବିତାର ପର୍ଯ୍ୟାୟବାଚୀ କୁହାଯାଇପାରେ । ଏହାର ଶବ୍ଦଯୋଜନା, ଛନ୍ଦପତନ ତଥା ଗଠନ କୌଶଳରେ ମାନସିଂହଙ୍କର କବିପ୍ରତିଭାର ସ୍ୱାକ୍ଷର ଅଂକିତ ।

## ନାଟ୍ୟକାର ମାନସିଂହ :

ପ୍ରଣୟର କବିଭାବରେ ମାନସିଂହଙ୍କର କୃତିତ୍ୱ ଅନତିକ୍ରମ୍ୟ । ତାଙ୍କର ଏକାଧିକ କାବ୍ୟନାଟିକାରେ ତାଙ୍କର କବିତ୍ୱ ବିଳସିତ । ସେଗୁଡ଼ିକ ନଷ୍ଟନୀଡ଼ (୩୭), ବାରବାଟୀ (୫୧), ରାଜକବି ଉପେନ୍ଦ୍ର (୨୮), ପୁଷ୍ପିତା (୩୦), ପୂଜାରିଣୀ (୩୨), ବୁଦ୍ଧ (୫୧), ଶାସନଚକ୍ର (୫୧), ଦୁର୍ଭିକ୍ଷ (୫୫) ବୁଦ୍ଧଦୂତୀ (୫୫), ପୁଷ୍ପାଭିନୟ (୫୫), କୁହାଯାଏ ଯେ ''A dramatist who is not a poet is only half a dramatist.'' ତାଙ୍କର ଗାଥାକବିତାରେ ଯେପରି ନାଟକୀୟତା ନିହିତ, ତାଙ୍କର କାବ୍ୟନାଟିକାରେ କବିତ୍ୱ ମଧ୍ୟ ଅନୁରୂପଭାବରେ ପରିଦୃଷ୍ଟ ହୁଏ । ପୁଷ୍ପାଭିନୟ ରୂପକ ଶ୍ରେଣୀର ରଚନା ଯେଉଁଥିରେ କଳିକା, ସୂର୍ଯ୍ୟକିରଣ, ସୂତ୍ରଧର, ବାୟୁ, ପ୍ରଜାପତି ଭ୍ରମର ଓ ପୁଷ୍ପ ଚରିତ୍ରାୟିତ ହୋଇଛନ୍ତି । ପୂଜାରିଣୀ ଦ୍ୱିଜକନ୍ୟା ଲକ୍ଷ୍ମୀ ଓ ସାକ୍ଷିଗୋପାଳଙ୍କ ପ୍ରଣୟ କାହାଣୀ ଉପରେ ଆଧାରିତ । 'ରାଜକବି ଉପେନ୍ଦ୍ର' ମଧ୍ୟ କିମ୍ବଦନ୍ତୀ ଉପରେ ଆଧାରିତ । 'ଶାସନଚକ୍ର'ରେ ପ୍ରତିଭାଶାଳୀ କବି ଓ କଳାକାରଙ୍କର ଦୁର୍ଦ୍ଦଶା ପ୍ରକାଶିତ । କବି ଜୀବନବନ୍ଧୁ ପୁଲିସ୍ ଉତ୍ସବପାଇଁ ଆବାହନୀ ସଂଗୀତ ଲେଖିବାପାଇଁ ମନାକରିଦିଅନ୍ତି । ଅଭାବରେ ତାଙ୍କର ମୃତ୍ୟୁ ହୁଏ ଓ ମୃତ୍ୟୁ ପରେ ତାଙ୍କୁ ସରକାରୀ ସାହାଯ୍ୟ ମିଳେ । ଭଡ଼ାରେ ଆସିଥିବା ମଣଷମାନେ ମନ୍ତ୍ରୀଙ୍କ ପୂଜା କରନ୍ତି ମାତ୍ର ଜାତିର ଅନ୍ତରରେ କବିର ପୂଜା ହୁଏ ବୋଲି ଏ କାବ୍ୟ ନାଟିକାରେ ପ୍ରତିପାଦିତ ହୋଇଛି । ସରକାରୀ ଚାକିରି କରି ମଧ୍ୟ ମାନସିଂହ ନିଜର କଲମ ସହିତ ସାଲିସ୍ କରିନଥିଲେ । ସେଥିପାଇଁ ସେ ଅନେକତ୍ର କଷ୍ଟ ସ୍ୱୀକାର ମଧ୍ୟ କରିଛନ୍ତି । ମାତ୍ର କାବ୍ୟ ମଧ୍ୟରେ ନାଟକ ଓ ନାଟକ ମଧ୍ୟରେ କାବ୍ୟର ଆତ୍ମପ୍ରବେଶ କରାଇ ମାନସିଂହ ଯେଉଁ ଗୀତି-ନାଟକଗୁଡ଼ିକ ରଚନା କରିଛନ୍ତି ତାହାର ଆବେଦନ ସର୍ବକାଳୀନ ତଥା ସ୍ୱତନ୍ତ୍ର । ଏହି ନାଟକଗୁଡ଼ିକରେ କାବ୍ୟର ଛାନ୍ଦସିକତା ସହିତ ଗଦ୍ୟର କଠୋରତା ଏକତ୍ର ନିହିତ । ସବୁଜର ସମକାଳରେ ନାଟକ ଏତେ ସମୃଦ୍ଧ ହୋଇପାରିନଥିଲା । 'ବାବାଜୀ'ର ଲେଖକ ନୂଆଭାବରେ ନାଟକ ରଚନା କରୁଛନ୍ତି ବୋଲି ଉତ୍କଳସାହିତ୍ୟରେ ସୂଚନା ଦିଆଯାଇଥିଲା ।

## ସ୍ୱଦେଶ ପ୍ରେମର କବି ମାନସିଂହ :

ସ୍ୱଦେଶ ପ୍ରେମର ବର୍ଣ୍ଣବିଭାରେ ମାନସିଂହ ସୃଷ୍ଟିସଂପଦ ମହିମାନ୍ୱିତ । ତାଙ୍କର ବିଷାଦବାଦର ଚିନ୍ତା ଭିତରେ ଦେଶପ୍ରେମର ଝଲକ ଦିଶେ । ପ୍ରଣୟୀ ପ୍ରତି ଆବେଗ ପ୍ରବଣତା ଭିତରେ ଦେଶପାଇଁ ଅଂଗୀକାର ପ୍ରକାଶିତ ହୋଇଯାଏ । ତାଙ୍କର ବାରବାଟୀ, ନବ ଅଭିଯାନ, ଭାରତଗୀତି, ଭବିଷ୍ୟତ ଭାରତବର୍ଷ, ଅଗ୍ରଣୀ ଭାରତ,

ଯିଏ କଲା ଗୁମର ପ୍ରଚାର, ସ୍ୱରାଜ୍ୟାଶ୍ରମ ଭଳି କବିତାରେ ଦେଶପ୍ରୀତିର ସ୍ୱରହିଁ ମୁଖ୍ୟ । ଅତୀତର ଗୌରବମୟ ଇତିହାସକୁ ସ୍ମରଣ କରି ବର୍ତ୍ତମାନର ଦୁଃସ୍ଥିତିକୁ ରୂପ ଦେବାବେଳେ ତାଙ୍କର ଦେଶପ୍ରୀତିର ଭାବନା ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଛି । 'ମହାନଦୀରେ ଜ୍ୟୋସ୍ନାବିହାର' କବିତାରେ –

"ହାୟରେ ଉତ୍କଳଭୂମି ! ପ୍ରକୃତି ସୁନ୍ଦର
ମନ୍ଦାକିନୀ ସମ ନଦୀ ଶିବ ସମ ଗିରି
କାନନେ କେଦାରେ ଲକ୍ଷ ଶୋଭାର ବିହାର
ଥାଉଁ ତୋର କହ କିମ୍ପା ଏଡ଼େ ହତଶିରୀ ।"

'ବାରବାଟୀ'ର କବି ବାଇରନ୍ ଓ ସ୍କଟ୍‌ଙ୍କ ଭଳି ଅତୀତ ଉନ୍ମୁଖୀ । ଜାତିର ଦୁର୍ଦ୍ଦିନରେ କବିଙ୍କର କାରୁଣ୍ୟ ଏହି କବିତାକୁ ସମୟର ପ୍ରତିନିଧିରେ ପରିଣତ କରିଛି । ମା ଓଡ଼ିଶା, ଉତ୍ତିଷ୍ଠ ଉତ୍କଳ, ବନ୍ଦେ ଉତ୍କଳ ଜନନୀ, ବୋଇତ ବନ୍ଦାଣ, ତଅପୋଇର ବିଳାପ, ବିଜୟଲକ୍ଷ୍ମୀ ପ୍ରଭୃତି କବିତାରେ ଉତ୍କଳ ପ୍ରତି ତାଙ୍କର ମମତ୍ୱବୋଧ ପ୍ରକାଶିତ । ଓଡ଼ିଆ ପୁଅର ଗୌରବମୟ ପରଂପରା ଭିତରେ ଥିବା କାରୁଣ୍ୟର ତୀବ୍ରସ୍ୱରକୁ ସେ ଅନୁଭବ କରିଥିଲେ । ତେଣୁ ଓଡ଼ିଶାର ଗୌରବ କଥା ବର୍ଣ୍ଣନା କଲାବେଳେ ସେ ଓଡ଼ିଆ ସାଧବପୁଅର ଅଶ୍ରୁ ଓ କାରୁଣ୍ୟ ବର୍ଣ୍ଣନା କରିବାକୁ ଭୁଲିନାହାନ୍ତି । 'କମଳାୟନ' କାବ୍ୟରେ ଏହି ସ୍ୱଦେଶପ୍ରୀତିର ଝଲକ –

"ସର୍ବେ ମତ୍ତ କ୍ଷଣିକର ଆଶୁ ମୁଖସ୍ୱାଦେ
ଜାତିର ମରମେ ବ୍ୟଥା କା'ରେ ନାହିଁ ବାଧେ
ଆଶା ଖାଲି ତୁମପରି ତରୁଣ କୁଳରୁ
କିଏ ଯଦି ହୋଇପାରେ ଜାତି କଳ୍ପତରୁ
ନିଜର ସମସ୍ତ ଦେଇ ମାନବ ସେବାରେ
ଇଚ୍ଛା ଥିଲେ ନରପୁତ୍ର ସବୁ କରିପାରେ ।"

ଦେଶରୁ ଦେଶକୁ ପକ୍ଷୀପରି ଉଡ଼ିଯାଇ ଜ୍ଞାନ ଓ ପ୍ରେମର ପ୍ରଚାର କରିବାକୁ ସେ କାମନା କରିଛନ୍ତି । କରୁଣା ଓ କମଳ 'କମଳାୟନ'ର ମୁଖ୍ୟ ଚରିତ୍ର । ତାଙ୍କ ଭିତରେ ପାରସ୍ପରିକ ବୁଝାମଣା ଅଛି ମାତ୍ର ସେମାନଙ୍କର ଜୀବନର ଲକ୍ଷ୍ୟ ହେଉଛି–

"ଦେଶ ଜାତି ଧର୍ମ ଡେଇଁ ମାନବ ହୃଦୟ,
ଉଚିତ ନୁହେଁ କି ହେବା ତାହାରେ ସଦୟ ?
ଦେଶରୁ ମାନବ ବଡ଼, ମାନବର ଦୁଃଖ, ଡାକୁଛି
ଆଶ୍ରୟପାଇଁ ହୋଇ ଲକ୍ଷମୁଖ ।"

ଉତ୍ତିଷ୍ଠ ଉତ୍କଳ, ଉଠରେ ସୁପ୍ତଜାତି ଭଳି କବିତାରେ ସେ ଯେଉଁ ସ୍ୱଦେଶ ପ୍ରେମର କଥା ଉଲ୍ଲେଖ କରିଛନ୍ତି ତାହା ପ୍ରାଚୀନ ମହାଭାରତୀୟ ଭାବଧାରାର ଆଧୁନିକ ପରିପ୍ରକାଶ ମାତ୍ର । ଉତ୍ତିଷ୍ଠ ଉତ୍କଳରେ –

''ଉଠରେ ସୁପ୍ତ ଜାତି
ନିଦ୍ରା ବିଭୋର ଦେଖି ତୋ ପଡ଼ୋଶୀ
ନେବେ ତୋ ଅଂଗକାଟି ।''

ଏହିଭଳି ପଦମାନଙ୍କରୁ ଆମେ ପ୍ରଣୟୀକବିଙ୍କୁ ନୁହେଁ ସ୍ୱଦେଶପ୍ରେମୀ କବିଙ୍କୁ ଦେଖିଥାଉ ।

## ଗଦ୍ୟଶିଳ୍ପୀ ମାନସିଂହ :

କବିଙ୍କର ଏକମାତ୍ର ଉପନ୍ୟାସ 'ଅନ୍ୱେଷଣ' ୧୯୫୭ରେ ରଚିତ । ସେ ସମୟରେ ବାପୁଜୀଙ୍କ ବାଣୀ 'ଗାଆଁକୁ ଫେରିଚାଲ' କବିଙ୍କୁ ଉତ୍ସାହିତ କରିଛି । ଯୁବସମାଜ ସହରର ମୋହ ଛାଡ଼ି ଗାଆଁକୁ ଫେରିଛନ୍ତି ଓ ସେଠାରେ ଭାରତର ଆତ୍ମାକୁ ଚିହ୍ନିବାର ପ୍ରୟାସ କରିଛନ୍ତି । ଆବର୍ଜନାପୂର୍ଣ୍ଣ କଟକନଗରୀକୁ ପ୍ରଭୁପାଦ ଭଳି ଯୁବକ ଉଚ୍ଚଶିକ୍ଷାପାଇଁ ଆସିଛନ୍ତି । ଯୁବ କଳାକାର ଶ୍ରୀକଣ୍ଠ ଅତୀତର ଗୌରବମୟ ପରଂପରାର କରୁଣ ବର୍ତ୍ତମାନ । ଶ୍ମଶାନରେ ବନ୍ଧୁଙ୍କର ଶବଦାହ ଦେଖି କଳାକାର ଶ୍ରୀକଣ୍ଠ ଜୀବନର ନଶ୍ୱରତା ସମ୍ପର୍କରେ ସଚେତନ ହୋଇଛି । ବନ୍ଧୁଙ୍କ ଭଗିନୀ ମଲ୍ଲିକା ସହିତ ନିକଟତର ହେବାର ଚେଷ୍ଟା କରି ସେ ହାରିଯାଇଛି ଓ ଗ୍ରାମକୁ ଫେରି ନିଜର କଳାପ୍ରାଣତାକୁ ଉଜ୍ଜୀବିତ କରିପାରିଛି । ଗ୍ରାମ୍ୟ ତରୁଣୀ ସାବିତ୍ରୀର ପ୍ରେରଣା ତା' ଭିତରର ସୁପ୍ତ କଳାକାରକୁ ବିକଶିତ ହେବାର ସୁଯୋଗ ଦେଇଛି । କବିଙ୍କ ମତରେ, ଗ୍ରାମ ହେଉଛି ସ୍ୱପ୍ନ, ସୌନ୍ଦର୍ଯ୍ୟ ଓ ପ୍ରେମର ଗନ୍ତାଘର । 'କବି ଓ କବିତା' ପୁସ୍ତକରେ ଆମେ ଗଦ୍ୟସ୍ରଷ୍ଟା ମାନସିଂହଙ୍କର କବିତ୍ୱ ଦେଖିପାରିବା । ସେ କହନ୍ତି, ''ଅନ୍ତର୍ଲୋକ, ଯେଉଁଠି ପ୍ରତିଭାର ହୋମାଗ୍ନି ଜଳୁଛି, ସେଇ ପବିତ୍ର ହବନ ଭୂମିରେ ତୁମେ, ତୁମର ସ୍ୱପ୍ନ, ଚିନ୍ତା ଓ ଅଭିଜ୍ଞତା ଛଡ଼ା ଆଉ କାହାର ଆଦେଶ ବା ଅନୁରୋଧକୁ ପଶିବାକୁ ଦିଅନି । ତୁମ ମନର ଯେ ଗମ୍ଭିରୀ ଦେଉଳ, ସେଠି କୌଣସି ଅପବିତ୍ର ସ୍ଥୂଳବୁଦ୍ଧି, ସ୍ଥୂଳଦୃଷ୍ଟି, ପଦଗର୍ବିତ, ଧନଗର୍ବିତ, ଅନାକାଙ୍‌କ୍ଷିତ ଲୋକକୁ ଯିବାକୁ ଦିଅନାହିଁ । ସେଇଠାରେ ତୁମେ ରହ ତପୋମଗ୍ନ, ଧ୍ୟାନସ୍ଥ, ଆତ୍ମସ୍ଥ । ସେଇ ଧ୍ୟାନ, ସେଇ ତପସ୍ୟାରୁ ଜାତ ହେବ ତୁମର କମନୀୟ ସୃଷ୍ଟି, ଯାହା ତୁମକୁ ଦେବ ଅମରତ୍ୱ ।''

ସେହିପରି ଶ୍ରୀକୌଶଳ, ନିଜ ଦାୟିତ୍ୱ, ଓଡ଼ିଶାର ସାମାଜିକ ଜୀବନ, ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ, ଆମ ଗଣତନ୍ତ୍ରର ଭବିଷ୍ୟତ, ଓଡ଼ିଆମାନେ ପଛୁଆ ଓ ଦରିଦ୍ର

କାହିଁକି ? ଭଳି ପ୍ରବନ୍ଧରେ ସେ ନିଜର ସାମାଜିକ ପ୍ରତିବଦ୍ଧତାର ପରିଚୟ ପ୍ରଦାନ କରିଛନ୍ତି । ମନୁଷ୍ୟ ଦେହର ଜୀବଶକ୍ତି ଆତ୍ମବିଶ୍ୱାସ ଓ ଉଚ୍ଚାଭିଳାଷ ଭାବରେ ପ୍ରକାଶିତ ହୁଏ ବୋଲି 'ଜୀବଧର୍ମ' ପ୍ରବନ୍ଧରେ ସେ ସୂଚନା ଦେଉଛନ୍ତି । ତାଙ୍କର ପ୍ରବନ୍ଧଗୁଡ଼ିକ ବୁଦ୍ଧିଦୀପ୍ତ ତଥା ବିଶ୍ଳେଷଣଧର୍ମୀ । ନୂତନ ତଥ୍ୟ ଦେବାରେ ଏଗୁଡ଼ିକ ସମର୍ଥ । ପ୍ରସାରିତ କବିଦୃଷ୍ଟିକୁ ସେ 'କବି ଓ କବିତା' ପୁସ୍ତକରେ କବିର ତୃତୀୟ ନେତ୍ର ବୋଲି କହିଛନ୍ତି । ତେଣୁ ଏକଥାର ସୂଚନା ଦିଆଯିବା ଦରକାର ଯେ ପଦ୍ୟ ଭଳି ଗଦ୍ୟରେ କବିଙ୍କର ଯଥେଷ୍ଟ ଅନୁପ୍ରବେଶ ରହିଥିଲା । ଏହି ପ୍ରାବନ୍ଧିକଙ୍କର ମୌଳିକ ଚିନ୍ତା, ଭାଷା ପ୍ରୟୋଗରେ ସ୍ୱାତନ୍ତ୍ର୍ୟ ତଥା ଜୀବନାନୁଭବର ପ୍ରତିଲିପି । କାବ୍ୟିକ ଶୈଳୀରେ କ୍ଲିଷ୍ଟ ଅଥଚ ସମ୍ଭ୍ରାନ୍ତ ଶବ୍ଦ ପ୍ରୟୋଗରେ ମାନସିଂହ ଯଥେଷ୍ଟ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତେଣୁ ତାଙ୍କର ଗଦ୍ୟରଚନାଗୁଡ଼ିକ ସୁଖପାଠ୍ୟ ଓ ଅନୁଭବ ସଂପ୍ରସାରିତ କରିବାର ସହାୟକ ହୋଇପାରିଛି । ପଦ୍ୟସାହିତ୍ୟ ଓ ଗଦ୍ୟସାହିତ୍ୟ ଉଭୟ ଦିଗରେ ସେ ଲେଖନୀ ଚାଳନା କରି ଓଡ଼ିଶାର ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିପାରିଛନ୍ତି ।

## ରବୀନ୍ଦ୍ର ପ୍ରଭାବିତ ମାନସିଂହ :

କବି ମାନସିଂହ ରବୀନ୍ଦ୍ର କାବ୍ୟଦୃଷ୍ଟିଦ୍ୱାରା ବହୁଭାବରେ ପ୍ରଭାବିତ । ତାଙ୍କର ରୋମାଣ୍ଟିକ୍ ଶବ୍ଦ ଚୟନ, ଛନ୍ଦ ସଂଯୋଜନା ତଥା ବଳିଷ୍ଠ ସାମାଜିକ ଦାୟିତ୍ୱବୋଧକୁ କବି ଗ୍ରହଣ କରିଛନ୍ତି । ରବୀନ୍ଦ୍ର ସାହିତ୍ୟର ଅତୀନ୍ଦ୍ରିୟ ଉପରେ ଆସ୍ଥା କବିଙ୍କୁ ପ୍ରଭାବିତ କରିଛି । ରୋମାଣ୍ଟିକ୍ ପ୍ରଣୟ ଓ ବିରହର ବର୍ଣ୍ଣନାରେ ରବୀନ୍ଦ୍ର ସାହିତ୍ୟର ନୂତନ ଦିଗ ଉନ୍ମୋଚିତ ହୋଇଛି । ମନୁଷ୍ୟର ଅନ୍ତର ବିକାଶପାଇଁ ରବୀନ୍ଦ୍ର ଚାହୁଁଥିଲେ ବନ୍ଧନରୁ ମୁକ୍ତି । ମନୁଷ୍ୟର ଆତ୍ମାକୁ ମୁକ୍ତ ନକରିପାରିଲେ ନୂତନ ଭାରତ ଗଢ଼ିବା ସମ୍ଭବ ହେବନାହିଁ ବୋଲି ମାନସିଂହ ବିଚାରିଥିଲେ । 'ନୂତନ ପ୍ରଣୟ'ରେ ରବୀନ୍ଦ୍ର କାବ୍ୟଚେତନାର ସ୍ୱରୂପ –

''ଆଜି ଦେହ ଖୋଜେ ଏକ ଦୁର୍ଲଭ ବିଦେହୀ
ଚିତ୍ତ ଖୋଜେ ଏକ ତେଜି ବିରାଟ ନିଖିଳେ
ଖୋଜେ ଅରୂପରେ ରୂପ କ୍ଳାନ୍ତ ନେତ୍ର ଦୁଇ
ସ୍ନାତ ହୋଇଉଠେ ଗଣ୍ଡ ଅନାସକ୍ତନୀରେ ।''

ଅରୂପ ଓ ବିରାଟ ଆକର୍ଷଣରେ ସେ ଧରଣୀବାସ, ବିଶ୍ୱ ଆକର୍ଷଣ, ଜୀବନ ଦେବତା, ତୁମରି ଅହଂକାର ପାନ୍ଥଗାଥା ଭଳି କବିତା ରଚନା କରିଛନ୍ତି । କ୍ରୁଶ, ହେମଶସ୍ୟ ଓ ଅକ୍ଷତର ଅଧିକାଂଶ କବିତାରେ ରବୀନ୍ଦ୍ର ପ୍ରଭାବ ଅନୁଭୂତ ହୁଏ । କବି ବଞ୍ଚୁଥିବା ପୃଥିବୀ ସ୍ୱପ୍ନହୀନ, ପାଂଶୁଳ; କିନ୍ତୁ ତାଙ୍କର ମନୋମତ ପୃଥିବୀ କେଉଁଠି

ହେଲେ ଅଛି; ଯେଉଁଠିକୁ ଯିବାପାଇଁ ମନୁଷ୍ୟ ଚିରଦିନ ଇଚ୍ଛା କରେ, 'ତୁମରି ଅହଂକାର' କବିତାରେ କବି ସେହି ରହସ୍ୟମୟ 'ତୁମେ' ନିକଟରେ ଆତ୍ମସମର୍ପଣ କରି ଗାଇଛନ୍ତି –

''ହେ ପରମପ୍ରିୟ ମମ, ତୁମରି ପ୍ରଣୟ
ଏକାନ୍ତ ଭରସା ଆଜି, ଏକଇ ସଂପଦ
ସର୍ବ ରିକ୍ତମୁହିଁ ଆଜି ସେଲାଗି ନିର୍ଭୟ
ନ ନିଅ ସେ ଗରବର ପବିତ୍ର ଆନନ୍ଦ ।''

ଦେହରୁ ବିଦେହ ଆଡ଼କୁ ତାଙ୍କ ପ୍ରଣୟର ଜୟଯାତ୍ରା । ସେଠି ଜନ୍ମାନ୍ତରପାଇଁ ପ୍ରତୀକ୍ଷା ଅଛି । ପ୍ରିୟଠାରୁ ଅପମାନିତ ହେଲେହେଁ ଦ୍ରୌପଦୀ, ସୁଭଦ୍ରା, ସତୀ ଭଳି ନାରୀମାନଙ୍କର ପ୍ରଣୟର ସାଧନା କଥା ସେ ଉଲ୍ଲେଖ କରିଛନ୍ତି । କେବେ ତାଙ୍କର କବିଚିତ୍ତ ରବୀନ୍ଦ୍ରନାଥଙ୍କ ଭଳି ଛାୟାଚ୍ଛନ୍ନକୁ ଅତୀନ୍ଦ୍ରିୟ ଜଗତର ଅଭିଳାଷୀ କେବେ ନିଖିଳ ବିଶ୍ୱର ଅଶ୍ରୁ ଓ ଆବେଗକୁ ଆତ୍ମସ୍ଥ କରିବାପାଇଁ ବ୍ୟାକୁଳ । ବିରହ ତାଙ୍କର ପ୍ରେମକୁ ଅପୂର୍ବ ଦୀପ୍ତି ପ୍ରଦାନ କରିଛି । ରବୀନ୍ଦ୍ରନାଥଙ୍କ ପ୍ରଭାବରେ କବି ମାନସିଂହ ଅନେକ ପ୍ରଣୟକବିତା ରଚନା କରିଛନ୍ତି ଯାହାର ବ୍ୟାପ୍ତି ଭିତରେ ଦରିଦ୍ର କବିର ପ୍ରଣୟ ସହିତ ଧନିକ ରାଜପୁତ୍ରର ପ୍ରଣୟ ଦୃଷ୍ଟିଗୋଚର ହୁଏ ଓ ଯାହାର ଗଭୀରତା ବିଶ୍ୱ ଆତ୍ମା ସହିତ ପରମାତ୍ମାଙ୍କର ସମ୍ପର୍କକୁ ରସାଣିତ କରିପାରେ ।

**ତାରୁଣ୍ୟର ରୂପକାର ମାନସିଂହ :**

ପ୍ରଣୟୀ କବି ତାରୁଣ୍ୟର ପୂଜାରୀ । ପ୍ରେମିକପାଇଁ ସେ ଜନ୍ମାନ୍ତର ଯାଏ ଅପେକ୍ଷା କରିପାରିବେ ମାତ୍ର ପ୍ରେମିକାର ସଫେଦ କେଶ ଦା ଶିରାଳ ମୁହଁ ଦେଖିପାରିବେ ନାହିଁ । ଯୌବନ ଚିରସ୍ଥାୟୀ ହେଉ ବୋଲି ସେ କାମନା କରନ୍ତି । ନୂତନ ସୃଷ୍ଟିପାଇଁ ପୁରାତନକୁ ବାଟ ଛାଡ଼ିବାକୁ ପଡ଼ିବ, ଏକଥାରେ ସେ ବିଶ୍ୱାସ କରନ୍ତି । ତେଣୁ 'ଆଷାଢ଼ ଅଭିସାର'ରେ ସେ ଗାଇଉଠିଛନ୍ତି –

''ପ୍ରଳୟରେ ପୁଣି ସୃଷ୍ଟିର ହୁଏ ପ୍ରକାଶ
ବିଦ୍ରୋହେ ହୁଏ ତରୁଣ ଜୀବନ ବିକାଶ ।''

ସେହିଭଳି 'ତରୁଣ କବିର ଆଶା'ରେ ତାରୁଣ୍ୟର ଜୟଗାନ ସହିତ ତା'ର ସୀମିତ ସମୟସୀମା ସମ୍ପର୍କୀୟ ସଚେତନତା ଦେଖାଯାଏ ।

**ପ୍ରତିଭା ପୂଜାରୀ ମାନସିଂହ :**

କବି ମାନସିଂହ ତାଙ୍କର ସମକାଳୀନ ସାହିତ୍ୟ ସ୍ରଷ୍ଟାମାନଙ୍କ ସଂପର୍କରେ କବିତାମାନ ରଚନା କରିଛନ୍ତି । ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ତାଙ୍କ ସମୟର ପ୍ରତ୍ୟେକ ଭାରତୀୟ

ସ୍ରଷ୍ଟା ପୁରୁଷଙ୍କୁ ପ୍ରଭାବିତ କରିଛି । ତେଣୁ ଗାନ୍ଧିଙ୍କ ବ୍ୟକ୍ତିତ୍ୱ ଓ ତା'ର ଅଖଣ୍ଡ ପ୍ରଭାବ ସମ୍ପର୍କରେ ସେ ଏକାଧିକ କବିତା ଲେଖିଛନ୍ତି । ବାପୁତର୍ପଣ, ନାହାନ୍ତି ଗାନ୍ଧିଜୀ, ନାପିତୁଣୀର ଗାନ୍ଧିପୂଜା, ମହାଯାତ୍ରା, 'ଯେବେ ହେ ଆସିବ ଫେରି', 'ଆସିବ ଫେରି ହେ ଶୀଘ୍ର', 'ଭାରତପୁତ୍ର', 'ଦିଅ ଛାଡ଼ି ଦିଅତାରେ', 'ଦୀପ ନିର୍ବାପିତ', 'ବିଳପୁଛ କାହିଁପାଇଁ' ଭଳି କବିତାରେ ଗାନ୍ଧିଜୀଙ୍କ ପ୍ରତି କବିଙ୍କର ଶ୍ରଦ୍ଧା ଓ ସମ୍ମାନ ପ୍ରକାଶିତ । ଏକାଧିକ କବିତାରେ ଗାନ୍ଧିଜୀଙ୍କ ମୃତ୍ୟୁପରର ଶୋକ ଉଚ୍ଛ୍ୱାସ ରୂପପାଇଛି 'ବାପୁତର୍ପଣ' କବିତାରେ –

''ବ୍ରାହ୍ମଣ ତୁମେ ଉପବୀତ ତବ ଅୟୁତପ୍ରାଣର ଗହନ ବ୍ୟଥା
ପୁରୁଷୋତ୍ତମ ଜୀବନ ତୁମର ବିରାଟ ଜାତିର ମରମ କଥା
ଜୀବନ ପୋଡ଼ିଲ ଦୀପପରି ରଷି ନେବାକୁ ଆମର ଅଂଧକାର
କଠୋର ତପସେ ଜୀବନ କ୍ଷୟିଛ ଦେବାକୁ ଧରାରେ ଗଂଗାଧାର
ଆଜି ଭଗୀରଥ ତପସ୍ୟା ତବ ଏତେଦିନ ପରେ ଧରିଛି ଫଳ
ପୂତଉର୍ବର ଦେଉଅଛି ମାଟି ଯହିଁ ଛୁଏଁ ତବ ଜୀବନ ଜଳ ।''

ଏହି କବିତାରେ ସେ ଗାନ୍ଧିଜୀଙ୍କୁ ବ୍ରାହ୍ମଣ ଋଷି, ସଗର ବଂଶଜ ଭଗୀରଥ ତଥା ପୁରୁଷୋତ୍ତମଭାବରେ ସମ୍ମାନ ଜଣାଇଛନ୍ତି । ସେହିଭଳି ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ସେ ଏକାଧିକ କବିତା ରଚନା କରିଛନ୍ତି । ଗୋପପ୍ରୟାଣ ଓ ଗୋପତର୍ପଣ ଏହାର ନିଦର୍ଶନ । ଜାତୀୟତାଭାବର ଅନ୍ୟ କେତେକ ଉଲ୍ଲେଖଯୋଗ୍ୟ କବିତା ହେଉଛି ସ୍ୱଭାବକବି ଗୋପାଳକୃଷ୍ଣ, କବିବର ରାଧାନାଥ ଓ ଭଗବତୀଚରଣ ପାଣିଗ୍ରାହୀଙ୍କ ଉଦ୍ଦେଶ୍ୟରେ ରଚିତ କବିତା । ଜାତୀୟ ଗୌରବ ଏହି ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ପର୍କରେ ପାଠକମାନଙ୍କୁ ଅବହିତ କରାଇବା ଏହାର ଉଦ୍ଦେଶ୍ୟ ।

**ସମନ୍ୱୟର କବି ମାନସିଂହ :**

ମାନସିଂହଙ୍କ ପ୍ରତିଭାର କାଉଁରୀ ସ୍ପର୍ଶରେ କେବେ ପ୍ରେମିକ ପାଲଟିଛି ସାଧକ ତ କେଉଁଠି ସାଧକର ଗୈରିକ ଚିନ୍ତା ବିଶ୍ୱମାନବର କାରୁଣ୍ୟରେ ଦ୍ରବୀଭୂତ ହୋଇ ଅପୂର୍ବଶ୍ରୀ ଧାରଣ କରିଛି । ତାଙ୍କର ପ୍ରଣୟ ସାଧନାରେ ପ୍ରଣୟିନୀହିଁ ବିଶ୍ୱର ଶ୍ରେଷ୍ଠ ସୁନ୍ଦରୀ । ସେ ପ୍ରଣୟରେ ତ୍ୟାଗ ତଥା ସମର୍ପଣ ଭାବନାହିଁ ଏକମାତ୍ର ପଥ । କିନ୍ତୁ କବି ମାନସିଂହଙ୍କର ତପସ୍ୱୀ ଦୃଷ୍ଟି 'ଅକ୍ଷତ'ରେ ଗାଢ଼ ହୋଇଛି । ସେ ନିଜର ଜୀବନ ଓ ସହଯାତ୍ରୀ ମାନବର ଜୀବନ କଥା ଭାବୁ ଭାବୁ ଗୌତମବୁଦ୍ଧ ବା ରାମକୃଷ୍ଣ ପରମହଂସଙ୍କ ଜୀବନଦୃଷ୍ଟି ଦେଖି ମୁଗ୍ଧ ହୋଇଛନ୍ତି । ତେଣୁ ଇଚ୍ଛା ପାଲଟିଛି 'ଅଭୀପ୍ସା', 'ଖୋଜିବା' ପାଲଟିଛି 'ଚିରନ୍ତନ ଅନ୍ୱେଷା' । କସ୍ତୁରୀମୃଗ ଭଳି ଯେଉଁ

ଗନ୍ଧ ଲୋଭରେ ସେ ଘୂରି ଘୂରି କ୍ଳାନ୍ତ ହୋଇଥିଲେ, ସେହି ସୁଗନ୍ଧର ଉତ୍ସ ତାଙ୍କରି ଅନ୍ତଃକାଳରେ ବିଦ୍ୟମାନ ବୋଲି ବୁଝିବା ପରେ ସେ ପାଲଟିଛନ୍ତି ଦ୍ରଷ୍ଟା । ତାଙ୍କର 'କୁଶ' ସଂକଳନର 'କସ୍ତୂରୀମୃଗ' କବିତାରେ –

''ଭ୍ରମି ଭ୍ରମି କ୍ଳାନ୍ତ ମୁହିଁ ଆନନ୍ଦ ସନ୍ଧାନେ
ଆଜି ଦେଖେ ହତଭାଗ୍ୟ ଉତ୍ସ ଆନନ୍ଦର
ଆପଣା ଅନ୍ତରେ ସ୍ଥିତ, ଆବୃତ ଅଜ୍ଞାନେ
ସର୍ବ-ଅନୁଭୂତି-ମୂଳ, ପରମ ସୁନ୍ଦର ।''

ସେହି ମାନନୀୟ ସ୍ରଷ୍ଟା, ଯେଉଁ ରଚନାରେ ହାତ ଦେଇଛନ୍ତି, ତାହା ଶୁଦ୍ଧ ସୁବର୍ଣ୍ଣର ଦ୍ୟୁତିରେ ଝଲକି ଉଠିଛି । ଛନ୍ଦର ଅପୂର୍ବ ସୁଷମା ସହିତ କବିଙ୍କର ପ୍ରାଣର ପ୍ରତିଧ୍ୱନି ମିଶି ଏକାକାର ହୋଇଯାଇଛି । ଓଡ଼ିଆ ସାହିତ୍ୟର ଇତିହାସରେ ମାୟାଧର ମାନସିଂହଙ୍କୁ ଆମେ ଶବ୍ଦର ଯାଦୁକର କହିବା ଯଥେଷ୍ଟ ନୁହେଁ, ସେ ଅସାଧାରଣ ଭାବସଂପଦର ଅଧିକାରୀ । ମଣିଷ ପ୍ରାସ ଦୂରକରି ଧରଣୀ-ବାସକୁ ମଧୁର କରିବା ତାଙ୍କ କବିତାର ପ୍ରାଣଧର୍ମ ।

—

# ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ପଦଧ୍ୱନି : ଓ କବି ବାଞ୍ଛାନିଧି

କବି ବାଞ୍ଛାନିଧି ପ୍ରତ୍ୟେକ ଓଡ଼ିଆର ଦୃପ୍ତ ଐତିହ୍ୟ ଚେତନା ଓ ଜାତୀୟତା-ବୋଧର ପ୍ରତୀକ । ସେ ଗଣକବି, ଚାରଣକବି ତଥା ସମାଜସଚେତକ ସ୍ରଷ୍ଟାପୁରୁଷ । ଜାତୀୟ ଜାଗରଣ ଉଦ୍ଦେଶ୍ୟରେ ନିନାଦିତ ତାଙ୍କର ସଂଗୀତସମୂହ ଗ୍ରାମବହୁଳ ଓଡ଼ିଶାର କୋଣ-ଅନୁକୋଣରେ ଜାତୀୟତାର ତରଙ୍ଗ ସୃଷ୍ଟି କରିବାରେ କ୍ଷମ ହୋଇପାରିଥିଲା । ଅସହଯୋଗ ଆନ୍ଦୋଳନଠାରୁ ସ୍ୱାଧୀନତା ପର୍ଯ୍ୟନ୍ତ ଯେଉଁ ପତନ ଅଭ୍ୟୁଦୟର ବନ୍ଧୁର ପଥ ଅତିକ୍ରମ କରି ଭାରତୀୟ ଜନତା ସ୍ୱାଧୀନତାର ମଧୁ ଚାଖିବାକୁ ପ୍ରୟାସ କରିଥିଲା, ସେହି ମଧୁର ଝରଣା ଥିଲା ବାଞ୍ଛାନିଧିଙ୍କ ସଂଗୀତରାଜି, ସେଥିରେ କେବଳ ବିପ୍ଳବ ନଥିଲା ବରଂ ବିପ୍ଳବର ପରବର୍ତ୍ତୀ କାଳର ଗଠନମୂଳକ ଭାବନା ସନ୍ନିବିଷ୍ଟ ହୋଇଥିଲା । ଥିଲା ଦୀର୍ଘ ବିଦେଶୀ ଶାସନରେ ଅଭ୍ୟସ୍ତ ପରାଧୀନ ଭାରତର ଆତ୍ମସମୀକ୍ଷାର ଭାବନା । ତା' ସହିତ ଥିଲା ସମାଜ-ସଂସ୍କାରର ଅଦମ୍ୟ ଆଗ୍ରହ । ତେଣୁ ଓଡ଼ିଶାରେ ଭାରତର ସ୍ୱାଧୀନତା ଆନ୍ଦୋଳନର ଝଲକ ବିଷୟରେ ଆଲୋଚନା କରାଯିବା ସମୟରେ ବାଞ୍ଛାନିଧିଙ୍କ କବିତାର ଆଲୋଚନା ନକରାଗଲେ ତାହା ଅଧା ରହିଯିବ । ଏହି ନିରଳସ ସାଧକଙ୍କର ସିଦ୍ଧି ସମ୍ମାନିତ ନକରାଗଲେ ଜାତୀୟ ଭାବନାର ପ୍ରକୃତ ସ୍ୱରୂପ ଉଦ୍‌ଘାଟିତ ହୋଇପାରିବନାହିଁ ବା ଏଥିପାଇଁ ଆମର ପରପିଢ଼ି ଆମକୁ କ୍ଷମା ମଧ୍ୟ ଦେବନାହିଁ ।

କବି ଥିଲେ ସତ୍ୟବାଦୀର ସମସାମୟିକ ସ୍ରଷ୍ଟାପୁରୁଷ । ତାଙ୍କର ରଚନା ସମୂହର ଏକମାତ୍ର ଉଦ୍ଦେଶ୍ୟ ଥିଲା ଓଡ଼ିଶାର କୋଣ-ଅନୁକୋଣରେ ଜାତୀୟ ଜାଗୃତିର ସ୍ୱର ଅନୁରଣିତ କରାଇବା । ତେଣୁ ସ୍ୱରଯୁକ୍ତ ସଂଗୀତ ରଚନା କରି, ସେଗୁଡ଼ିକ ସମାଜ ସମ୍ମୁଖରେ ପରିବେଷଣ କରାଇବା ଥିଲା ତାଙ୍କର ଜାତୀୟ ଦାୟିତ୍ୱ । ଏସବୁ ପାଇଁ ସେ ବାରମ୍ବାର ଅପମାନିତ ହୋଇଛନ୍ତି । ଜେଲରେ ଦିନ କଟାଇଛନ୍ତି । ତଥାପି ବାଞ୍ଛାନିଧି ବୁଝିଥିଲେ ଯେ ସଂଗୀତର ପ୍ରଭାବ ଦୀର୍ଘସ୍ଥାୟୀ । ସହଜ ସୁନ୍ଦର ସ୍ୱର ସଂଯୋଜନା ମାଧ୍ୟମରେ ଜନତାଙ୍କ ଅନ୍ତର ସ୍ପର୍ଶ କରିବା ସମ୍ଭବ । ତେଣୁ ତାଙ୍କ ରଚିତ ସଂଗୀତସମୂହ ଜୀବନ୍ମୃତ ଓଡ଼ିଆମାନଙ୍କପାଇଁ ସଂଜୀବନୀ ସଦୃଶ ଥିଲା । ମୁହଁରୁ ମୁହଁକୁ ଏହା ବ୍ୟାପିଯାଇଥିଲା ଅବଲୀଳାକ୍ରମେ ।

## ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ମହାପ୍ରବାହ :

୧୯୨୧ରେ ଅସହଯୋଗ ଆନ୍ଦୋଳନ ସମଗ୍ର ଭାରତୀୟ ଜନମାନସକୁ ଏକ ଦୁରନ୍ତ ଶକ୍ତି ପ୍ରଦାନ କରିଥିଲା । ଅସହଯୋଗ ମାଧ୍ୟମରେ ଆତ୍ମବିଶ୍ୱାସ ଜାଗ୍ରତ କରିପାରିଲେ ବୈଦେଶିକ ଶକ୍ତିକୁ ପରାଜିତ କରିହେବ, ଏଭଳି ଧାରଣା କ୍ରମେ ବଳବତ୍ତର ହେଉଥିଲା । ୧୯୩୦ରେ ଲବଣ ସତ୍ୟାଗ୍ରହ ଏହି ଧାରଣାକୁ ଦୃଢ଼ କରିଥିଲା । ଫଳରେ ୧୯୪୨ର ଭାରତଛାଡ଼ ଆନ୍ଦୋଳନ ସମୟକୁ ସାଧାରଣ ଜନତା ମଧ୍ୟ ବୁଝିସାରିଥିଲା ଯେ ବୈଦେଶିକମାନଙ୍କୁ ଅବିଳମ୍ବେ ଦେଶ ଛାଡ଼ିବାକୁ ପଡ଼ିବ । ଏହି ଚେତନା ଓଡ଼ିଶାରେ ମଧ୍ୟ ବେଶ୍ ପରିଚ୍ଛନ୍ନଭାବରେ ଅନୁଭୂତ ହେଉଥିଲା । ଗୋପବନ୍ଧୁଙ୍କ କବିତାରେ ଅତୀତ ଗୌରବ ପ୍ରତି ସମ୍ମାନ ସହିତ ତତ୍କାଳୀନ ଓଡ଼ିଶାର ଦୁର୍ଦ୍ଦଶାପାଇଁ ଅଶ୍ରୁ ଓ ଆବେଗ ବିଷାଦର ରାଗିଣୀ ତୋଳୁଥିଲା । କୁନ୍ତଳାକୁମାରୀଙ୍କ ସ୍ଫୁଲିଙ୍ଗ ମଧ୍ୟ ଥିଲା ଏହି ଜାତୀୟବାଦୀ କବିତାର ଅନ୍ୟତମ ଦୃପ୍ତସ୍ୱର । ଆଉ ଟିକିଏ ପୂର୍ବକୁ ଆଖିପକାଇଲେ ଆମେ ମହାଯାତ୍ରାର କବି ରାଧାନାଥଙ୍କୁ ଭେଟୁ, ଯେଉଁଠି ଜାତୀୟତାର ମହାପ୍ରବାହ ପାଠକଙ୍କୁ ଅଭିଭୂତ କରେ । ଭକ୍ତକବି ମଧୁସୂଦନଙ୍କର 'ତୁହିମା ଜନମଭୂମି ପବିତ୍ର ଭାରତଭୂମି ବା ଉଦାର ଉତ୍କଳଭୂମି ସଂଗୀତ ମଧ୍ୟରେ ଆମେ ସତେଯେପରି ଭାରତ ଜନନୀ ଓ ଉତ୍କଳ ଜନତାଙ୍କୁ ପ୍ରତ୍ୟକ୍ଷ କରୁ ଓ ଉଭୟଙ୍କ ସେବାପାଇଁ ମନ-ପ୍ରାଣ ଦେବାର ଶପଥ କରିବା ଭିତରେ ମହାଭାରତୀୟ ଭାବନାରେ ଆବିଷ୍ଟ ହୋଇଯାଉ । ସେଠି ପ୍ରଦେଶ ବା ରାଜ୍ୟର ସଂକୀର୍ଣ୍ଣତା ରହେନାହିଁ ବରଂ ଏକ ଭାବଗତ ଉଦାରତାହିଁ ଅନୁଭୂତ ହୁଏ । ୧୯୨୮ରେ ଗୋପବନ୍ଧୁଙ୍କର ତିରୋଧାନ ଓ ୧୯୩୪ରେ ମଧୁବାବୁଙ୍କ ତିରୋଧାନ ଓଡ଼ିଆ ଭାଷା, ସାହିତ୍ୟ ତଥା ଓଡ଼ିଶାର ଜନସାଧାରଣଙ୍କପାଇଁ ଥିଲା ଦାରୁଣ ଦୁଃସମ୍ବାଦ । ଏହା ସହିତ ୧୯୩୬ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସେମାନଙ୍କୁ କିଂଚିତ ଆଶ୍ୱାସନା ମଧ୍ୟ ପ୍ରଦାନ କରିଥିଲା । ଉତ୍କଳ ସାହିତ୍ୟ, ମୁକୁର, ସମ୍ବଲପୁର ହିତୈଷିଣୀ ଭଳି ପତ୍ରିକାରେ ଦେଶାତ୍ମବୋଧର ଭାବପ୍ରଚାରପାଇଁ ଉଦ୍ୟମ ଜାରି ରହିଥିଲା । ପ୍ରତ୍ୟେକ ସ୍ରଷ୍ଟା ପୁରୁଷ ନିଜ ନିଜ ରଚନା ମାଧ୍ୟମରେ ଅସହଯୋଗ, ସ୍ୱାଧୀନତାର ବାସନା ତଥା ସମାଜର ପୁନର୍ବିନ୍ୟାସପାଇଁ ପ୍ରୟାସ କରୁଥିଲେ । ବାଞ୍ଛାନିଧି ଥିଲେ ଏମାନଙ୍କ ମଧ୍ୟରୁ ଅନ୍ୟତମ । ତାଙ୍କର ସ୍ୱାତନ୍ତ୍ର୍ୟ ଥିଲା ଏତିକି ଯେ ସେ କବିତା ରଚନା ଓ ଗାନ କରିବାକୁ ଏକମାତ୍ର ଜାତୀୟ କର୍ତ୍ତବ୍ୟରୂପେ ଗ୍ରହଣ କରିଥିଲେ । ଯଶ ଲାଳସାର ଉର୍ଦ୍ଧ୍ୱରେ ରହି ସେ ବ୍ୟାପିଯାଇଥିଲେ ସମଗ୍ର ଓଡ଼ିଶାର ପୁରପଲ୍ଲୀରେ । ଓଁ ବନ୍ଦେ ମାତରମ୍ । ଉତ୍କଳବୀଣା ପ୍ରଥମ ଓ ଦ୍ୱିତୀୟ ଝଂକାର ଭଳି କବିତା ସଂକଳନର ସ୍ରଷ୍ଟା ବାଞ୍ଛାନିଧି ଜନମାନସରେ

ଏଭଳି ପରିବ୍ୟାପ୍ତ ହୋଇଥିଲେ ଯେ ତାହାର ପ୍ରଭାବ ଆଜି ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଛି । ଆଜି ମଧ୍ୟ ଗ୍ରାମ୍ୟ ଓଡ଼ିଶାର ବୟୋଜ୍ୟେଷ୍ଠ ବ୍ୟକ୍ତିଟି ଗୁଣୁଗୁଣୁ ଗାଉଛି– ''ଯେବେ ମୋର ନପୁରେ ପେଟ, କିହେବ ସେ ସ୍ୱରାଜ୍ୟ ଘେନି, କହ କହ କେଉଁ ଜାତି ପାଇଛି ମୁକତି କରି ହୁରି ହାରିଗୁହାରି ବା ପଢୁନାହିଁ କି ତିଳେ ମନେ ସୋଦରହେ ''ଭଳି ସଂଗୀତ । ଆଜି ମଧ ଅଗଷ୍ଟ ପନ୍ଦର ବା ଜାନୁୟାରୀ ଛବିଶ ତାରିଖରେ ଦେଶାତ୍ମବୋଧକ ସଂଗୀତ ଗାନ ମଧ୍ୟରେ ଏହି ସବୁ ସଂଗୀତ ଆମକୁ ଘଡ଼ିଏ ମନ୍ତ୍ରମୁଗ୍ଧ କରିଦେଉଛି । ସ୍ୱର ତାଳ ଲୟଯୁକ୍ତ ଏହି ସଂଗୀତ ମାଧ୍ୟମରେ ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କରି ବାଞ୍ଛାନିଧି ଯେଉଁ ଜାତୀୟ କର୍ତ୍ତବ୍ୟ ପାଳନ କରିଛନ୍ତି ତା'ର ମୂଲ୍ୟାୟନ କରାଯିବା ସର୍ବାଦୌ ଆବଶ୍ୟକ । ସାହିତ୍ୟ ଏକାଡେମୀକର୍ତ୍ତୃକ ପ୍ରକାଶିତ ବାଞ୍ଛାନିଧି ପଦ୍ୟାବଳୀକୁ ମୁଖ୍ୟ ଆଧାରରୂପେ ଗ୍ରହଣ କରି ଏ ପ୍ରବଂଧରେ କବିଙ୍କର ଦୃଷ୍ଟିଭଙ୍ଗୀର ଆଲୋଚନା କରାଯାଇଛି ।

### ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧା ଓ ସମ୍ମାନ :

ଲଂଗଳା ଫକୀର ବେଶରେ ଯୁଗପୁରୁଷ ମହାତ୍ମାଗାନ୍ଧି ସମଗ୍ର ଭାରତବର୍ଷକୁ ମୁକ୍ତିର ମନ୍ତ୍ର ଦୀକ୍ଷା ଦେଇଥିଲେ । ତାଙ୍କର ଜୀବନହିଁ ଥିଲା ତାଙ୍କର ବାଣୀ । ସେହିପରି ତାଙ୍କର ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧା ଓ ସମ୍ମାନ ନିବେଦନ କରିବା ଥିଲା ସମକାଳୀନ ସାହିତ୍ୟ ସୃଷ୍ଟିର ଗୋଟାଏ ମୁଖ୍ୟସ୍ୱର । ତେଣୁ ଅହିଂସା ଆଚରଣ ପ୍ରତି ଆନ୍ତରିକତା ପ୍ରକାଶ କରି କବି ବାଞ୍ଛାନିଧି ଗାନ୍ଧିଜୀଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ପ୍ରତି ନିଜର ସମ୍ମାନ ପ୍ରଦର୍ଶନ କରିଛନ୍ତି । ଗାନ୍ଧିଜୀଙ୍କର ଆଶ୍ରମ ସଂପର୍କରେ ତାଙ୍କର ଉକ୍ତି–

''ଭାବୁନାହୁଁ ଭାର ମହାତ୍ମା କାପାଇଁ, କିବା ଏତେ ଦୁଃଖ ସହୁଛିରେ
ସହି ସହି ସେ ତ ପଥର ହେଲାଣି, ତିଳେ ତୋ ଚେତନା ନୋହୁଛିରେ ।
କିପାଇଁ ତେଜିଣ ଏ ସୁନା ସଂସାର, ତୁଚ୍ଛକଲେ ଯେତେ ଆୟ ଅଳଙ୍କାର
ସଂଗେ ଦାରା ପୁତ୍ର ପରିବାର, ସନ୍ନ୍ୟାସେ ଆଶ୍ରମେ ରହୁଛିରେ ।''

ଅର୍ଥାତ୍ ଗାନ୍ଧିଜୀ ଦେଶର ସ୍ୱାଧୀନତାପାଇଁ ନିଜର ସମସ୍ତ ସାଂସାରିକ ସୁଖଭୋଗ ତ୍ୟାଗ କରିଛନ୍ତି । ପ୍ରତାପୀ ଶାସକବର୍ଗଙ୍କ ସହିତ ଅହିଂସା ସମରରେ ବ୍ୟାପୃତ ହୋଇ ବାରମ୍ବାର କାରାଦଣ୍ଡ ବରଣ କରିଛନ୍ତି । ତାଙ୍କର ପଦାଙ୍କ ଅନୁସରଣ କରି ମାନବିକତା ଓ ପ୍ରୀତିକୁ ମୂଳଧନ କରିହିଁ ଆମେ ସ୍ୱାଧୀନତା ପାଇପାରିବା । ପୁଣି ସେ ମୋହନ ଦାସ କରମଚାନ୍ଦ ଗାନ୍ଧିଙ୍କୁ ବ୍ୟକ୍ତିବିଶେଷ ନକହି ଅବତାର-ପୁରୁଷ ଭାବରେ ପରିକଳ୍ପନା କରିଛନ୍ତି ।

"ମହାତ୍ମା ମୋହନ ଦାସ     ଦ୍ୱାରକାପୁରେ ବାସ
ଦ୍ୱାପର ଦ୍ୱାରକା ଦ୍ୱୀପ କୃଷ୍ଣ ଲୀଳାମୟ ହେ ।
ଅଧମ ତାରଣ ହରି     ଗାନ୍ଧି ରୂପେ ଅବତରି
ବିନାଶିବା ପାଇଁ ବିଜେ ଦୁଃଖୀ ଦୁଃଖ ଜୟହେ ।।"

ଗାନ୍ଧିଜୀଙ୍କ ପ୍ରତି ଥିବା ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ଓ ଭକ୍ତି ଲୋକଚିତ୍ତକୁ ଏଭଳି ବଶୀଭୂତ କରିଥିଲା ଯେ ଏତାଦୃଶ ରଚନାଗୁଡ଼ିକୁ ସ୍ୱାଭାବିକଭାବରେ ଗୃହୀତ ହୋଇଯାଉଥିଲା । ଯେଉଁ ଆତ୍ମଶକ୍ତି ବଳରେ ଗାନ୍ଧିଜୀ ବିଦେଶୀ ଶାସକର କ୍ରୂରଚକ୍ଷୁ ସମ୍ମୁଖରେ ନିର୍ବିକାରରେ ଅହିଂସା ଅସ୍ତ୍ର ଧରି ଉଭା ହୋଇଥିଲେ, ତାହା ମଧ୍ୟରେ ଦୈବୀ ଶକ୍ତିର ପ୍ରଭାବ ଅନୁଭବ କରିବା ଥିଲା ସେ ସମୟର ବିଚାରଧାରା । ତତ୍କାଳୀନ ପାପପୂର୍ଣ୍ଣ ରାଜନୀତିକୁ କଂସ ସହିତ ତୁଳନା କରି ସେ ମୋହନ ଦାସଙ୍କୁ କୃଷ୍ଣଭାବରେ ପରିକଳ୍ପନା କରିଛନ୍ତି । ତାଙ୍କର ଅଭିନବ ମୁରଲୀ ଧ୍ୱନିରେ ସୁପ୍ତ ଜାତି ଜାଗ୍ରତ ହୋଇଛି । ତେଣୁ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ କବି ଜାତୀୟତାର ଆହ୍ୱାନ ଶୁଣି ଅବସରରେ ଗାନ୍ଧିଜୀଙ୍କ ତ୍ୟାଗପୂତ ଜୀବନର ଗୁରୁତ୍ୱ ଉପଲବ୍ଧି କରିଛନ୍ତି । ଗାନ୍ଧି ପାଲଟିଛନ୍ତି ଏକ ଅନୁଭବ, ଏକ ପୁଲକ, ଏକ ପ୍ରତୀକ । ସମଗ୍ର ଭାରତଭୂମି ସେହି ପୁଲକରେ ଉଲ୍ଲସିତ ହୋଇଉଠିଛି ।

## ଗ୍ରାମ ସ୍ୱରାଜ୍ୟର ପରିକଳ୍ପନା :

ଗାନ୍ଧିଜୀଙ୍କ ବିଚାରଧାରାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ଗ୍ରାମ ସ୍ୱରାଜ୍ୟର ଚିନ୍ତାଧାରା ଅନୁସରଣ କରିବା । ବିଦେଶୀ ଶାସକ ପ୍ରଥମେ ବଣିକ ଓ ପରେ ଶାସକ । ତେଣୁ ଯଦି ଭାରତବାସୀ କୁଟି ଖାଅ, କାଟି ପିନ୍ଧ ନୀତି ଅନୁସରଣ କରନ୍ତେ, ବିଦେଶୀ ଶାସକ ଭାରତଛାଡ଼ି ପଳେଇଯିବାକୁ ବାଟ ପାଆନ୍ତାନାହିଁ । ତେଣୁ ଅସହଯୋଗ କହିଲେ କେବଳ ବିଦେଶୀ ସରକାରଙ୍କୁ ସାହାଯ୍ୟ ନକରିବା ନୁହେଁ ସଂପୂର୍ଣ୍ଣଭାବରେ ବିଦେଶୀ ଦ୍ରବ୍ୟକୁ ନିଜ ଜୀବନଯାତ୍ରା ପ୍ରଣାଳୀଠାରୁ ଦୂରରେ ରଖିବା । ଏ ସଂପର୍କରେ ବାଞ୍ଛାନିଧି ସାଧାରଣ ଜନତାଙ୍କୁ ସଚେତନ କରିଛନ୍ତି । ବିଲାତି କପଡ଼ା ଦେଇ ବିଦେଶୀ ସରକାର ଜାହାଜଭର୍ତ୍ତି ଧାନ, ଚାଉଳ, ଗହମ ବିଦେଶକୁ ନେଇଯାଉଛି । ତେଣୁ ଜିନିଷପତ୍ରର ଦରଦାମ ବଢୁଛି । ତେଣୁ ଗାନ୍ଧିବାଦୀମାନେ କୁହନ୍ତି—

"ଗାନ୍ଧିବାଲା ବାରମ୍ବାର କଲେ ଅରଟ ପ୍ରଚାର
ଛାଡ଼ିଦିଅ ଅଦାଲତ କର ଗ୍ରାମେ ପଞ୍ଚାୟତ
ମଦ ଅଫିମ ଗଂଜାର ନିଶା କିଛି ଖାଅନାହିଁ
ହିନ୍ଦୁ ମୁସଲମାନ ଭାଇ ଅହିଂସା ଧରଣ ରହି
ନିଜ ଘର ନିଜେ କର, କାହିଁ ପୋଷୁଛ ପର ।"

ଏଠାରେ ପଞ୍ଚାୟତର ଗୁରୁତ୍ୱ ପ୍ରତିପାଦିତ ହୋଇଛି । ଯଦି ମଦ, ଅଫିମ, ଗଂଜାଠାରୁ ଦୂରରେ ରହି ହିନ୍ଦୁ ମୁସଲମାନ ଭାଇ ଭାଇ ଭଳି ଏକତ୍ର ଚଳିପାରନ୍ତେ ତେବେ ଅହିଂସା ଧର୍ମର ପ୍ରକୃତ ଗୁରୁତ୍ୱ ପ୍ରକଟିତ ହୁଅନ୍ତା । ଗ୍ରାମବାସୀମାନେ ଅଦାଲତକୁ ଧାଇଁ ଧାଇଁ ସର୍ବସ୍ୱାନ୍ତ ହୁଅନ୍ତେନାହିଁ । ଗାନ୍ଧିଜୀ କହିଥିଲେ ଅରଟ ହେଉଛି ଜାତିର ସୁଦର୍ଶନ ଚକ୍ର । ସେହି ଅରଟ ଚାଲିଲେହିଁ ଇଂରେଜ ସରକାର ଭୟରେ ଛତ୍ରଭଂଗ ଦେବ ।

''ଅରଟ ଅସ୍ତ୍ରର ବଳେ ସ୍ୱରାଜ୍ୟ ଲଭିବା ହେଲେ
ସେ ତ ସୁଦର୍ଶନ ଚକ୍ର, କରିଦେବ ପାପ କ୍ଷୟ ହେ ।''

ଅରଟକୁ ଅସ୍ତ୍ର କରି ଆତ୍ମବିଶ୍ୱାସ ବୃଦ୍ଧି କରିବାକୁ ହେବ ଓ ପାପକ୍ଷୟ କରିବା ପାଇଁ ସେହି ଅରଟରେ ପ୍ରୟୋଗ ଉପରେ ନିର୍ଭର କରିବାକୁ ପଡ଼ିବ । ତେଣୁ କବି କହନ୍ତି–

''ସ୍ୱରାଜ୍ୟ ବିହୁନେ ନାହିଁ ପ୍ରତିକାର ଆଶା
ସ୍ୱରାଜ୍ୟ ବିହୁନେ ନ ଘୁଂଚିବ ଦୁଃଖ ନିଶା ।''

ଏଠାରେ ସ୍ୱରାଜ୍ୟ କହିଲେ ସ୍ୱାଧୀନ ଦେଶ/ରାଜ୍ୟ; ଯେଉଁଠି ସମସ୍ତେ କର୍ତ୍ତବ୍ୟ ସଚେତନ । ନିଜର ଅଧିକାର ଓ କର୍ତ୍ତବ୍ୟରେ ଥିବା ସାମ୍ୟ-ବୈଷମ୍ୟ ସଂପର୍କରେ ସଚେତନ ତଥା ଦେଶମାତୃକାର ସର୍ବବିଧ ମଂଗଳ ସଂପର୍କରେ ସଚେତନ । ତେଣୁ ସେ ବିଦେଶୀ ଶାସକର ଚାତୁର୍ଯ୍ୟ ସଂପର୍କରେ ସାଧାରଣ ମଣିଷକୁ ସାବଧାନ କରିଛନ୍ତି । ଦେଶ ହିତପାଇଁ ନିଜ ନିଜର ଅଳଙ୍କାର ଦାନ କରିବାକୁ ହେବ । ନିଜର ସାଂସାରିକ ବନ୍ଧନ ତ୍ୟାଗ କରି ସମଗ୍ର ଜୀବନକୁ ମାତୃମୁକ୍ତି ପାଇଁ ଉତ୍ସର୍ଗ କରିବାକୁ ହେବ । ଚାଇନା ବାସନ କଂସାରୀର ବେପାର ବୁଡ଼ାଇ ଦେଉଛି । ଫ୍ରାନ୍‌ସ, ଜାପାନର ଶସ୍ତାକାମ ଏତେ ଚକଚକ୍, ଏତେ ଆକର୍ଷଣୀୟ ଯେ ତାହା ଶଂଖାରିର କୁଳ ବେଉସା ନଷ୍ଟ କରିଦେଉଛି । ଜାପାନର ଚାଦର ଖଦଡ଼ ଚାଦର ଭଗାରି ହୋଇଛି; କିନ୍ତୁ ମୁଷ୍ଟିମେୟ ପଟାଦାର ମଦ, ଅଫିମ, ଭାଂଗ ନିଶା ଉଠାଇଦେବାର କଥାଟାକୁ ସହ୍ୟ କରିପାରିନାହାନ୍ତି । କାରଣ ବ୍ୟକ୍ତିଗତଭାବରେ ଏହାଦ୍ୱାରା ସେମାନେ କ୍ଷତିଗ୍ରସ୍ତ ହେବେ । ଏପରିକି ଜମିଦାରମାନେ ଏହି ଗ୍ରାମ ସ୍ୱରାଜ୍ୟର ଧାରଣାକୁ ଉଦାର ଚିତ୍ତରେ ଗ୍ରହଣ କରିପାରିନାହାନ୍ତି । କାରଣ ତାଙ୍କର ଅତ୍ୟାଚାରର ଇତି ହୋଇଯିବ ଓ ସାଧାରଣ ମଣିଷ ପ୍ରକୃତ ଜମିର ମାଲିକ ପାଲଟିଯିବ । ଏମାନଙ୍କୁ ବାଞ୍ଛାନିଧି ଯଥେଷ୍ଟ ବିଦ୍ରୂପ କରିଛନ୍ତି ।

''ମୋ ଭାଇର ବାଟିକି ବାଟି ଅମାର ତ ପଡୁଛି ଫାଟି
ମୋର ଚାଳେ ନାହିଁ ଛପର କୁଟାଟି
ମୋ ଭାଇ ଶୋଇଛି ଛପର ଖଟ ।''

ବିଦେଶୀମାନେ ଆମର ଆତ୍ମୀୟ ନୁହଁନ୍ତି । ତେଣୁ ସେମାନେ ଯଦି ଆମ ଦୁଃଖ ବୁଝିନପାରିଲେ ତେବେ ତାହା ସହ୍ୟ କରିହେବ । ମାତ୍ର ଏକା ନାହି ଦୁଇଖଣ୍ଡ ହୋଇଯିବା ବ୍ୟକ୍ତି ମଧ୍ୟରୁ ଜଣେ ଲାଟ ହେବା ସମୟରେ ଜଣେ ଯଦି ଭୋକିଲା ରହିବ ତାହା ଅସହ୍ୟ ହୋଇଯିବ । ତେଣୁ ଧଳାମଣିଷଙ୍କ ସ୍ଥାନରେ କଳାମଣିଷ ବସିଗଲେ ପ୍ରକୃତ ଗ୍ରାମ ସ୍ୱରାଜ୍ୟ ଆସିବନାହିଁ । ଏ ଧରଣର କ୍ଷମତାର କଳା ସାହେବମାନଙ୍କୁ ପରିହାସ କରି ବାଞ୍ଛାନିଧି ଲେଖିଛନ୍ତି—

''ହୋନ୍ତି ଯେବେ ସାର ଅବା ନାଇଟ୍
ଦିଲ୍ ମୋର ହୁଅନ୍ତା ଟାଇଟ୍
ଗଳାରେ ମୋ ପୋଷା କୁକୁରର ମଖମଲ ବକ୍ଲିସ୍ ଭାରି ସାଜିବ ।''

ଲାଟ ଯଦି ଗୋଇଠା ମାରିବେ, ତେବେ ମଧ୍ୟ ରାୟସାହେବ, ନାଇଟ୍‌ଭଳି ଉପାଧି ହାସଲ କରିବାପାଇଁ ତାହାକୁ ହସି ହସି ସହ୍ୟ କରିବାକୁ ହେବ । ପରିହାସ ଛଳରେ ଏକଥା କହୁଥିବା କବି ଯେ ମୁଷ୍ଟିମେୟ ତଥାକଥିତ ଉଚ୍ଚ ବର୍ଗର ବ୍ୟକ୍ତିମାନଙ୍କୁ କିଭଳି ଘୃଣା କରୁଥିଲେ ତା'ର ପରିଚୟ ନିମ୍ନ ପଦମାନଙ୍କରୁ ମିଳିପାରିବ ।

''ଇଣ୍ଡିୟାନ ବ୍ୟୁରୋକ୍ରାସିକୁ ଇଣ୍ଡିୟାନ ମୋର ଜୁହାର
ଇଣ୍ଡିୟାନ ଶୁଣ ହେ ଆସ କି ଘନ ଗୁଣ କାହାର
ସିଭିଲିଏନ୍ ଦେଶୀ ବୋଲି
କୁଣ୍ଢେ ଫୁଲିଯାଏ ମୋ ଛାତି
ବ୍ଲଡି, ଡେମ୍‌ଫୁଲ ବୋଲି ଓଲଟି ଗୋଇଠା ପ୍ରହାର ।''

**ଭାରତ ଜନନୀର ପରିକଳ୍ପନା :**

ଭାରତବର୍ଷର ପରିକଳ୍ପନା କରିବାବେଳେ ଆମେ ଏକ ମହିମାମୟୀ ନାରୀର ସ୍ୱରୂପ କଳ୍ପନାକୁ ଆଣିଥାଉ । ଯାହାର ମସ୍ତକରେ ହିମାଳୟ ରୌପ୍ୟମୁକୁଟ ସଦୃଶ ବିରାଜିତ । ଯାହାର କଟିରେ ବିନ୍ଧ୍ୟ ପର୍ବତ, ଚରଣ ତଳେ ଭାରତ ମହାସାଗର ଉଭୟ ପାର୍ଶ୍ୱରେ ବ୍ରହ୍ମପୁତ୍ର ଓ ସିନ୍ଧୁନଦୀ, ଗଳାର ହାରଭାବରେ ଗଙ୍ଗା ଆଦି ଅନେକ ନଦୀର ପରିକଳ୍ପନା କରିଥାଉ । ତା'ର ଶ୍ୟାମଳ ଶରୀରରେ ଅନେକ କାରୁକାର୍ଯ୍ୟ ଖଚିତ ବସନ ଭୂଷଣର ପରିକଳ୍ପନା କରିବାବେଳେ ଭାରତଜନନୀ ବିଶ୍ୱଜନନୀରେ ରୂପାନ୍ତରିତ ହୋଇଯାଆନ୍ତି । ଭାରତକୁ ଏହିଭଳି ଐଶ୍ୱର୍ଯ୍ୟମୟୀବୋଲି ଚିନ୍ତା କରାଯାଇ ଅନେକ କବିତା ରଚିତ ହୋଇଛି । ସେହିଭଳି ଏକ ଆବେଗସ୍ପନ୍ଦିତ କବିତା —

''ଅନାହାରେ ମାତା ମୋର କଣ୍ଠାଗତ ପ୍ରାଣ
ଦେଖି ଯା ରହିଛି ମୋର ନିଲଠା ଜୀବନ ।

+ + +

ତେତ୍ରିଶ କୋଟି ସନ୍ତାନ ମାତା ମୋ ଜନନୀ
ଏତେ ସୁତ ଥାଇଁ ପୁଣି ଏଡ଼େ ଅଭାଗିନୀ ।''

ବୀରସନ୍ତାନର ଜନନୀ ଯଦି ଅପମାନିତା ହୁଏ ତେବେ ତାହା ତା'ର ସନ୍ତାନମାନଙ୍କର ଅପାରଗତା ବୋଲି ବୁଝିବାକୁ ହେବ ।

ଯେଉଁ କଥା ଦିନେ ଉତ୍କଳଗୌରବ କହିଥିଲେ–

''କୋଟିଏ ସନ୍ତାନ ମାଗୋ ଧରିଅଛୁ କୋଳେ,
ଗୋଟିଏ ମନୁଷ୍ୟ କିନ୍ତୁ ନଦେଖିଲି ତୋଳେ ।''

ବା ଉକ୍ତକବିଙ୍କ ପରିକଳ୍ପନାରେ —

''କୋଟି ସୁତ ଧରି କୋଳେ ପାଳୁଅଛୁ ସ୍ନେହଭୋଳେ
ତୁହିମା କରୁଣାମୟୀ କରି ଆଦର
ତୋ ବକ୍ଷର ଅମୃତ ରସ
ସୁଖୀକରୁଛି ମା କୋଟି କୋଟି ମାନସ ।''

ଭାରତଜନନୀ ଆମର ସକଳ ଦୁଃଖସୁଖର ସାକ୍ଷୀ । ଜନନୀ ଜଠରରୁ ତଳେ ପଡ଼ିବା ପରେ ସେହିଁ ନିଜ କୋଳରେ ସ୍ଥାନ ଦେଇଛି । ସେ କେବେ ଦୋଷ ଦେଖି ନାହିଁ । କଷ୍ଟ ସହି ବିରକ୍ତ ହୋଇନାହିଁ ବରଂ ଅଭୟ ଦେଇଛି ।

ତେଣୁ କବି ଗାଇଛନ୍ତି–

''ଧନ ଜନ ଯୁକ୍ତ-ଭାରତମାତା
ନମୋ ନମୋ ଜନନୀ ଶ୍ରୀଚରଣେ
ସନ୍ତାନ ବନ୍ଦେ ପ୍ରେମାନନ୍ଦେ
ଯା ଚିତ୍ତ କରୁଣା ମା ଶରଣେ ।''

ଅନ୍ୟତ୍ର ସେ ଭାରତବର୍ଷକୁ ଭବଦାରା, ଭବାନୀ, ଭାବମୋହିନୀ, ତ୍ରିଦୟନୀ ଓ ତାରାଭାବରେ ମଧ୍ୟ ସମ୍ବୋଧନ କରିଛନ୍ତି । ଭେଦବାଦର ପ୍ରମାଦ ଯେ ଏହି ମହିମାମୟୀ ଭାରତବର୍ଷକୁ ମ୍ରିୟମାଣ କରିଦେଇଛି ଏହା ଚିନ୍ତାକରି କବି ଦୁଃଖିତ । ତେଣୁ ସେ ଭାରତୀୟମାନଙ୍କୁ ମାତୃ ମୁକ୍ତିପାଇଁ ପ୍ରୟାସୀ ହେବାକୁ ଉଦ୍‌ବୋଧନ ଦେଇଛନ୍ତି । କେବେ ସେ ଭାରତକୁ ସୀତା ବା କେବେ ଦ୍ରୌପଦୀଭାବରେ ଦର୍ଶନ କରିଛନ୍ତି । ସୀତା ହରଣ କରି ଅନୀତି ଦଶାନନ ଅଚିରେ ମୃତ୍ୟୁବରଣ କରିବ । ଦ୍ରୌପଦୀଙ୍କ ପଞ୍ଚପତିଙ୍କୁ କେହି ସତେଯେପରି ବୀର୍ଯ୍ୟହୀନ କରିଦେଇଛି ।

## ସ୍ୱାଧୀନତା ଉପରେ ଗୁରୁତ୍ୱ :

ସ୍ୱାଧୀନତା ପ୍ରତ୍ୟେକ ବ୍ୟକ୍ତିର ଚିରବାଞ୍ଛିତ । ଜାଲରୁ ବାହାରକୁ ଯିବାପାଇଁ ମୀନର ବ୍ୟାକୁଳତା ବା ବ୍ୟାଘ୍ର ମୁଖରେ ପଡ଼ିଥିବା ମନୁଷ୍ୟର ବ୍ୟାକୁଳତାରୁ ସ୍ୱାଧୀନତା ସଂପର୍କୀୟ ଗୁରୁତ୍ୱ ଉପଲବ୍ଧି କରିହୁଏ । ଗଣତନ୍ତ୍ରରେ କଥା କହିବାର ସ୍ୱାଧୀନତା ପ୍ରତ୍ୟେକ ବ୍ୟକ୍ତିବିଶେଷର ରହିଅଛି । ଯଦି ସେତିକି ମାତ୍ର ସ୍ୱାଧୀନତା ନାହିଁ, ତେବେ ସେ ମନୁଷ୍ୟ ମନୁଷ୍ୟ ପଦବାଚ୍ୟ ନୁହେଁ ।

"ଯାର ମତ କହିବାକୁ ନାହିଁ ଚାରା
ସେ କେଉଁ ଜାତିରେ ହେବ ଗଣା
ଇଙ୍ଗିତ ଅବା ସଂଗୀତ
କାରାଗାରେ ଯାର ବୁଝାମଣା ।"

ଯେ ମନଖୋଲି କଥା କହିବାକୁ ବା ଦୁଇପଦ ସତ କଥା ଲେଖିବାପାଇଁ ସମ୍ଭବନୁହେଁ ସେ ସ୍ୱାଧୀନ ହୋଇପାରିବନାହିଁ । ଯଦି ସେ ଦେଶପ୍ରେମର କଥା କହିବ, ତାକୁ କଳାପାଣି ଦଣ୍ଡ ଦିଆଯିବାର ବ୍ୟବସ୍ଥା କରାଯାଇଛି । ଦାସତ୍ୱର ଶୃଙ୍ଖଳରେ ଦୀର୍ଘ ଦିନରୁ ବନ୍ଧାହୋଇଥିବା ମଣିଷପାଇଁ ସ୍ୱାଧୀନତାର ଗୁରୁତ୍ୱ ଯଥେଷ୍ଟ ମାତ୍ର ସେଥିପାଇଁ ନିଜକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଏହି କଥାର ଉଲ୍ଲେଖ କରିବା ସମୟରେ କବି କେବେ ଭାରତର କଥା କହିଛନ୍ତି ତ କେବେ ଛିନ୍ନମସ୍ତା ଉତ୍କଳ ଜନନୀ କଥା କହିଛନ୍ତି । କେବେ ସେ ମାତୃଗର୍ଭର ପରିକଳ୍ପନା କରିଛନ୍ତି ତ କେବେ ମଳିନ ବସନା ଅଶ୍ରୁମୁଖୀ ନାରୀର ରୂପ ବର୍ଣ୍ଣନା କରିଛନ୍ତି; କିନ୍ତୁ ଏସବୁ ଭିତରେ କବି ଚିତ୍ତରେ ସ୍ୱାଧୀନତାର କାମନାହିଁ ବଳବତ୍ତର ହୋଇଛି । ଗୋପବନ୍ଧୁଙ୍କର କବିତା—

"ସ୍ୱାଧୀନତା ମାନବର ଜନ୍ମ ଅଧିକାର,
ସ୍ୱାଧୀନ ଆହାର ଆଉ ସ୍ୱାଧୀନ ବିହାର
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ସମିତି,
ଚାରିସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।"

ସେହି ଜନ୍ମଗତ ଅଧିକାରର ଅନୁଭବକୁ ବାଞ୍ଛାନିଧି ଆହୁରି ସହଜ ସରଳ ତଥା ହୃଦ୍ୟ ଭାଷାରେ ପ୍ରକାଶ କରିଛନ୍ତି ।

—

# କବି ପଦ୍ମଚରଣ : ଏକ ଆକଳନ

କବି ପଦ୍ମଚରଣ ପଟ୍ଟନାୟକ ଓଡ଼ିଆ ସାହିତ୍ୟ ଜଗତର ଅନ୍ୟତମ ଉଜ୍ଜ୍ୱଳ ଜ୍ୟୋତିଷ୍କ । ସତ୍ୟବାଦୀର ସମକାଳୀନଭାବରେ ସାହିତ୍ୟ ରାଜ୍ୟକୁ ପ୍ରଥମ ପାଦ ପକାଇଥିଲେହେଁ ସେ ସବୁଜଯୁଗର ଆବାହନ କରିଛନ୍ତି ବୋଲି କୁହାଯାଇପାରେ । ସବୁଜଯୁଗର ସ୍ୱପ୍ନବିଳାସ, ସୁଦୂରପ୍ରୀତି ତଥା ଅତୀତପ୍ରୀତି ସହିତ ସତ୍ୟବାଦୀର ଦେଶାତ୍ମବୋଧକୁ ଏକୀଭୂତ କରି ପଦ୍ମଚରଣ କବିତା ରଚନା କରିଛନ୍ତି । ନିଜ ସମୟର ସମସ୍ତ ସ୍ୱାତନ୍ତ୍ର୍ୟକୁ କବିତା ମାଧ୍ୟମରେ ଧରିରଖିଥିବା ଏହି ସାହିତ୍ୟସାଧକ ୧୮୮୫ରେ ଭୁବନେଶ୍ୱର ନିକଟବର୍ତ୍ତୀ ପାଞ୍ଚଗାଁରେ ଏକ ସଂଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସାହିତ୍ୟ ସାଧନା ସମ୍ପର୍କରେ ଆଲୋଚନା କରିବା ସମୟରେ ପ୍ରଥମେ ତାଙ୍କ ସମୟର ସାହିତ୍ୟିକ ପଟ୍ଟଭୂମି ଉପରେ କିଞ୍ଚିତ ଆଲୋକପାତ କରିବାକୁ ହେବ ।

କବିଶେଖର ଚିନ୍ତାମଣି ମହାନ୍ତି, ପଲ୍ଲୀକବି ନନ୍ଦକିଶୋର ବଳ ପ୍ରଭୃତି ସେ ସମୟର ଓଡ଼ିଆ ସାହିତ୍ୟଜଗତରେ ଆଦୃତ । ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର, ଲକ୍ଷ୍ମୀକାନ୍ତ ମହାପାତ୍ର, କୁନ୍ତଳାକୁମାରୀ ସାବତ, କାଳିନ୍ଦୀ ପାଣିଗ୍ରାହୀ, ଅନ୍ନଦାଶଙ୍କର ରାୟ ବା ବୈକୁଣ୍ଠନାଥ ପଟ୍ଟନାୟକଙ୍କ ଭଳି କବିମାନେ ଏକସମୟରେ ସାହିତ୍ୟଜଗତରେ ନିଜର ଜ୍ୟୋତି ବିକିରଣ କରୁଥାଆନ୍ତି । ବ୍ୟାସକବି ଫକୀରମୋହନଙ୍କ ଗୀତିକବିତାଗୁଡ଼ିକର ଲୋକପ୍ରିୟତା ଯଥେଷ୍ଟ ରହିଥାଏ । ପଲ୍ଲୀପ୍ରୀତି, ଅତୀତପ୍ରୀତି, ସ୍ୱଦେଶପ୍ରୀତି, ବ୍ୟକ୍ତିଗତ ଭାବଉଚ୍ଛ୍ୱାସର କାବ୍ୟିକ ପ୍ରକାଶ ପ୍ରଭୃତି ବିଶିଷ୍ଟ ବିଭାବ କ୍ରମେ ଅଧିକରୁ ଅଧିକ ପ୍ରଭାବଶାଳୀ ହେଉଥାଏ । ଏହି ସମୟରେ କବି ପଦ୍ମଚରଣଙ୍କର ଆତ୍ମପ୍ରକାଶ ଓଡ଼ିଆ କାବ୍ୟସାହିତ୍ୟପାଇଁ ଗଭୀର ଆଶାର ଦ୍ୟୋତକ ହୋଇଥିଲା । ତାଙ୍କ ରଚିତ ସୂର୍ଯ୍ୟମୁଖୀ, ପଦ୍ମପାଖୁଡ଼ା, ଗୋଲାପଗୁଚ୍ଛ, ଆଶାମଞ୍ଜରୀ, ସ୍ୱର୍ଣ୍ଣରେଣୁ ଆଦି କବିତା ସଂକଳନରେ ସ୍ରଷ୍ଟାର ରସପ୍ରାଣତା, କଳାତ୍ମକତା ଓ ସୌନ୍ଦର୍ଯ୍ୟପ୍ରୀତି ଏକାଧାରରେ ରୂପାୟିତ ହୋଇଛି ।

ଫକୀରମୋହନ, ମଧୁସୂଦନ ଓ ନନ୍ଦକିଶୋରଙ୍କ ପରେ ପଦ୍ମଚରଣ ଗୀତିକବି ଭାବରେ ଯଥେଷ୍ଟ ସାଫଲ୍ୟ ଅର୍ଜନ କରିଛନ୍ତି । ସହଜ, ସ୍ୱାଭାବିକ ତଥା ଛନ୍ଦମୟ ରୂପ

ନେଇ ଏହି ଗୀତିକବିତାଗୁଡ଼ିକ ନିଜ ସମୟର ସାମର୍ଥ୍ୟକୁ ଧରି ରଖିପାରିଛନ୍ତି । ତାଙ୍କର ଅଧିକାଂଶ କବିତା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ । ରାଧାନାଥ ଜନପ୍ରିୟତାର ଶୀର୍ଷରେ ଥିବା ସମୟରେ ଏକପକ୍ଷରେ ସବୁଜପାଇଁ ପ୍ରସ୍ତୁତି ଓ ଅପରପକ୍ଷରେ ସତ୍ୟବାଦୀର ଆମନ୍ତ୍ରଣ ଭିତରେ ପଦ୍ମଚରଣଙ୍କ ସାହିତ୍ୟିକ ଜୀବନ ଗତିଶୀଳ । ବିଶିଷ୍ଟ ସମାଲୋଚକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ଭାଷାରେ–''x x ସବୁଜ ଗୋଷ୍ଠୀର ଅନ୍ତର୍ଭୁକ୍ତ ନଥାଇ ମଧ୍ୟ ସେ ସମୟରେ ପଦ୍ମଚରଣ ଜଣେ ପ୍ରତିଷ୍ଠାବାନ୍ ଏକକ କାବ୍ୟଶିଳ୍ପୀ; ଯାହାଙ୍କ କବିତାରାଜି ହୁଏତ ଓଡ଼ିଆ ସାହିତ୍ୟର ଇତିହାସରେ 'ସତ୍ୟବାଦୀ ଯୁଗ ଓ ସବୁଜ' କାବ୍ୟଚେତନା ମଧ୍ୟରେ ଏକ ସଂଯୋଗ ସେତୁ ଭାବରେ ଠିଆହେବ । ଏପରିକି ସବୁଜ ବନ୍ଧୁମାନଙ୍କ ଉପରେ କବି ପଦ୍ମଚରଣଙ୍କ ପ୍ରଭାବ ଅପ୍ରତିହିତ ଥିବା କବି କାଳିନ୍ଦୀଚରଣ ଓ ବୈକୁଣ୍ଠନାଥଙ୍କ ଆଦ୍ୟଜୀବନର ଅନେକ କବିତାରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ।''

(ସବୁଜରୁ ସାଂପ୍ରତିକ – ପୃ ୯୧)

୧୯୨୦ରେ 'ଧଉଳି ପାହାଡ' ଓ ୧୯୨୪ରେ 'ଖୋରଧାର ପ୍ରଥମ ଦର୍ଶନେ' ଭଳି କ୍ଲାସିକ୍ କବିତା ସୃଷ୍ଟି କରିଥିଲେହେଁ ପଦ୍ମଚରଣଙ୍କ ଦୃଷ୍ଟିଭଙ୍ଗୀ ମୁଖ୍ୟତଃ ରୋମାଣ୍ଟିକ୍ ।

## ପ୍ରକୃତିପ୍ରୀତି :

ପ୍ରକୃତିପ୍ରୀତି ରୋମାଣ୍ଟିକ୍ କବିତାର ଅନ୍ୟତମ ଲକ୍ଷଣ । ୱାଡସ୍‌ୱାର୍ଥଙ୍କର The Daffodils, କୀଟ୍‌ସଙ୍କର Ode to Autum, ସେଲିଙ୍କର Ode to Westwind, ରବୀନ୍ଦ୍ରନାଥଙ୍କର ବର୍ଷାମଙ୍ଗଳ, କାଳିନ୍ଦୀଚରଣଙ୍କର ପଉଷ ସନ୍ଧ୍ୟା ଓ ବୈକୁଣ୍ଠନାଥଙ୍କର ବର୍ଷାବରଣ ଭଳି ପଦ୍ମଚରଣଙ୍କ ଚିରସୁନ୍ଦରୀ, ଗୋଲାପରାଣୀ, ବୈଶାଖ, ଆଶ୍ୱିନ ଆଦି କବିତାରେ ପ୍ରକୃତିପ୍ରତି ଆତ୍ମୀୟତାର ସ୍ୱର ସ୍ପଷ୍ଟ, 'ଆଶାମଞ୍ଜରୀ'ର ଆଶ୍ୱିନ କବିତାରେ–

''ଜଳେ ସ୍ଥଳେ କଲେ ବାରି ବଗିଚାରେ
ନାଚେ କେତେ ତରୁବଲ୍ଲୀ
ଆନନ୍ଦେ ଅଧୀର ହୋଇ ଗାଏ ଗୀତ
ନଦୀତୀରେ ଶ୍ୟାମ ପଲ୍ଲୀ ।'' (ଆଶ୍ୱିନ)

ଆଶ୍ୱିନର ଆଗମନରେ ପ୍ରାକୃତିକ ସୁଷମାର ଯେଉଁ ଅପୂର୍ବ ସମାବେଶ ହୁଏ ତାହାର ଛଳଛଳ ବର୍ଣ୍ଣନା ପରେ କବି ରହସ୍ୟବାଦୀ ହୋଇପଡ଼ିଛନ୍ତି ଓ ଆଶ୍ୱିନ ଯେ ଚିରନ୍ତନ ନୁହେଁ ଏଥିପାଇଁ ଖେଦ ପ୍ରକାଶ କରିଛନ୍ତି । ପ୍ରକୃତିପାଇଁ ମନୁଷ୍ୟ ପ୍ରାଣର ଦରଦ

ତାଙ୍କ କବିତାକୁ ଏକ ସ୍ୱତନ୍ତ୍ର ଭାବଗାମ୍ଭୀର୍ଯ୍ୟ ପ୍ରଦାନ କରିଛି । 'ବୀଣାର ଅଭିମାନ' କବିତାରେ କିନ୍ତୁ କବି ପଲ୍ଲୀ ପ୍ରକୃତିର ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରିଛନ୍ତି—

''ଚମ୍ପା ମରୁଆ ତରାଟ ମଲ୍ଲୀ
ଦିଅର ସିନା କୁଟିର ପଲ୍ଲୀ
କେବେ ଯୋଗାଏ ଗୋଲାପ
କେବେ ବା କିଆ ହରଇ ହିଆ
ରକ୍ତମନ୍ଦାର ରସରସିଆ
ଟାଣଇ ପ୍ରିୟ ସନ୍ତାପ ।'' (ବୀଣାର ଅଭିମାନ)

ପର ପର୍ଯ୍ୟାୟରେ ସେ କହନ୍ତି— ''ହାସନା ହେନା ଚେରିର ଗନ୍ଧ
ପାଇବି କାହୁଁ କରିବ ଅନ୍ଧ ।''

ଅର୍ଥାତ୍ ସବୁଜ କବିଙ୍କର ସୁଦୂରର ଯେଉଁ ଅପରିସୀମ ଆକର୍ଷଣର ମୋହ ଥିଲା ତାହା ସହିତ ପରିଚିତ ପୃଥିବୀର ଚମ୍ପା, ମରୁଆ, ମଲ୍ଲୀ, ତରାଟର ତୁଳନା କରି କବି ପରିଚିତ ପରିବେଶର ଗୁରୁତ୍ୱ ପ୍ରତିପାଦିତ କରିଛନ୍ତି ।

**ପଲ୍ଲୀପ୍ରୀତି :**

ପଲ୍ଲୀ ଜୀବନ ସହିତ ପ୍ରାକୃତିକ ସୁଷମା ଯେତେ ଏକାକାର ହୋଇଛି, ତା'ଠାରୁ ଅଧିକ ଦିଶିଛି ପଲ୍ଲୀର ମହଳରୂପ । ଆଷାଢରେ ଅଭାବ ଭୋଗୁଥିବା ପଲ୍ଲୀ ରମଣୀର ଦୁଃଖ ପଦ୍ମଚରଣ ଅନୁଭବକୁ ଆଣିଛନ୍ତି । ଜନତାର ଦୁର୍ଦ୍ଦିନପାଇଁ କବିଙ୍କର ସହାନୁଭୂତି ଯଥେଷ୍ଟ । ଯଦିଚ ପଲ୍ଲୀ ଜୀବନରେ ଥିବା ଅଜସ୍ର ରୂପ-ସୁଷମା ତାଙ୍କୁ ଅଭିଭୂତ କରିଛି । 'ଆଷାଢ' କବିତାରୁ—''କୃଷକ ଘରଣୀ ଆଦର୍ଶରମଣୀ
ଭାତ ଗୋଟି ଗୋଟି ପଣି
ପିଲାଙ୍କ ମୁହଁରେ ଦେଇ ସୁଖେ ଥିଲା
ପିଇ ଢୋକେ ଢୋକେ ପାଣି ।'' (ଆଷାଢ)

ତଥାପି ଆଶ୍ୱିନରେ ସେ ଦେବୀପୂଜା ପୂର୍ବରୁ ଲିପାପୋଛା କରିବାକୁ ଆଗଭର ହୁଅନ୍ତି । ସଜଫୁଲ, ଦୂବ, ଆମ୍ବଡାଳ ସଜାଇ ରଖନ୍ତି । ଦାରିଦ୍ର୍ୟର ଲାଞ୍ଛନା ଭୁଲି ଆଶ୍ୱିନ ଅଭିନନ୍ଦନ ଜଣାଇବାକୁ ସେ ତତ୍ପରତା ପ୍ରକାଶ କରନ୍ତି । କୁମାର ପୂର୍ଣ୍ଣିମାରେ ପଲ୍ଲୀବାଳିକାର ସଙ୍ଗୀତ ଶୁଣି ସେ ମୁହୂର୍ତ୍ତକପାଇଁ ଆନନ୍ଦିତ ହୋଇଥିଲେହେଁ ଆସନ୍ତା ବର୍ଷକୁ ହୁଏତ ସେ କୁମାରୀ କାହାଘରେ ବୋହୂ ହୋଇ ନିଜର ସମସ୍ତ ସ୍ୱାଧୀନତାକୁ ବିସର୍ଜନ କରିଥିବ ଭାବି ଦୁଃଖ ପ୍ରକାଶ କରନ୍ତି ।

## ପ୍ରେମାନୁଭୂତିର କବିତା :

ପ୍ରଣୟଚେତନା ସବୁଜଯୁଗର ମୁଖ୍ୟ କାବ୍ୟଚେତନା । ରୋମାଣ୍ଟିକ୍ ଭାବପ୍ରବଣତାରୁ ସୃଷ୍ଟି ଏହି ଅନୁଭବ ଉତ୍ତରଣର ମାର୍ଗରେ ଯାଇ ରହସ୍ୟଘନ ହୋଇଯାଏ ଓ ବିଶ୍ୱ ତଥା ସମଗ୍ର ମାନବସମାଜପାଇଁ ପ୍ରେମର ବାର୍ତ୍ତା ପଠାଇପାରେ । ପ୍ରେମର ମଧୁମୟ ଭାବନା ନେଇ ହେ ବିଶ୍ୱ, କିଏ ତୁମ୍ଭେ ? କେଉଁ ଦେଶେ ଅଛ ? ଓ ଆଲେଖ୍ୟ ପ୍ରଭୃତି କବିତା ରହସ୍ୟଧର୍ମକୁ ଆତ୍ମସ୍ଥ କରିପାରିବୁ । ରବୀନ୍ଦ୍ରନାଥଙ୍କର ମହୁୟା, ମାନସିଂହଙ୍କର ଧୂପ, ରାଧାମୋହନ ଗଡନାୟକଙ୍କର ପୂର୍ଣ୍ଣିମା ସ୍ପର୍ଶରେ ଏହି ପ୍ରଣୟ ଭାବନାହିଁ ମୁଖ୍ୟ । ପଦ୍ମଚରଣଙ୍କର ବିରହେ, ଶେଷ କଥା, ମନେପଡ଼େ, ନାମକରଣ, ପ୍ରବାସୀ ସୈନିକର ଶେଷଚିନ୍ତା, ଅନୁରାଗ, ଗୋପବାଳାର ବ୍ୟଥା ପ୍ରଭୃତି ଏହି ଶ୍ରେଣୀର କବିତା । ଯେଉଁଠି ପ୍ରେମ ତ୍ୟାଗରେ ପର୍ଯ୍ୟବସିତ, ସେଠାରେ ତା'ର ମହତ୍ତ୍ୱ ଅଧିକ । ଏ ଜନ୍ମରେ ପ୍ରେମିକା ସହିତ ମିଳିତ ହୋଇନପାରିଲେ ପରଜନ୍ମରେ ମିଳିତ ହେବାର କାମନା ଏଗୁଡ଼ିକର ମହନୀୟତା ।

''ପ୍ରବାସୀ ସୈନିକର ଶେଷଚିନ୍ତା କବିତାରୁ –
ମରଣର ପରପାରେ ନବବେଶ ଧରି
ପ୍ରାଣେ ସେହି ସ୍ମୃତି ସେହି ପୁଣ୍ୟ ତୃଷ୍ଣା ଭରି
ସେ ଅତୃପ୍ତ କାମନାକୁ କରି ଗଣ୍ଠିଧନ
ଅନାଇ ବସିଛି ତୋତେ ଜୀବର ଜୀବନ ।''

'ଗୋପବାଳାର ବ୍ୟଥା' ଗୋପନଗରର ବାଳିକା କଥା କୁହେନାହିଁ, ପ୍ରଣୟ ଛଳ ଛଳ ଆବେଗମୟ ଯୁବତୀ ପ୍ରାଣର କଥା କୁହେ । କାଖରେ ଗୋବର ଟୋକେଇ ଥିଲେ ବା ଦେହଟା ଗୁହାଳେ ଥିଲେ ମଧ୍ୟ ମନ ଯେ ଗୋପବାଳକ ସହିତ ବିଲକୁ ଧାଇଁଚାଲେ, ତାହା ଏକ କବିତାରେ ଖୁବ୍ ଆନ୍ତରିକତା ସହିତ ପ୍ରଦର୍ଶିତ ହୋଇଛି । ପ୍ରେମ ସହିତ ବିଶ୍ୱାସ ନମିଶିଲେ ତାହାର ଭାବ ଦୀର୍ଘସ୍ଥାୟୀ ହୁଏନାହିଁ । ତେଣୁ 'ଶେଷ କଥା' କବିତାରେ କବି କହନ୍ତି–

''ପ୍ରେମ ବିଶ୍ୱାସର ସାନ ସାନ କର୍ମ
ମଧୁମୟ ହେମ ହାରେ
ଦେବ ଲୀଳାଭୂମି ସରଗ ସଂଗରେ
ବାନ୍ଧଇ ଏହି ସଂସାରେ ।''

ସ୍ୱର୍ଗ ସହିତ ମର୍ତ୍ତ୍ୟକୁ ବାନ୍ଧିପାରିବାର କ୍ଷମତା ପ୍ରେମର ହିଁ ରହିଛି । ତେଣୁ କବି ଦୃଷ୍ଟିରେ ପ୍ରେମର ସୌନ୍ଦର୍ଯ୍ୟ ଅନୁପମ । ଏହାହିଁ ମନୁଷ୍ୟପାଇଁ ବିଧାତାର ଶ୍ରେଷ୍ଠ ବରଦାନ ।

## ଦେଶପ୍ରୀତିମୂଳକ କବିତା :

ତତ୍‌କାଳୀନ ପ୍ରାୟ ପ୍ରତ୍ୟେକ କବି ଦେଶପ୍ରୀତିର କବିତା ରଚନା କରିଛନ୍ତି । କେବଳ ଓଡ଼ିଶାରେନୁହେଁ ସର୍ବଭାରତୀୟ ସ୍ତରରେ ଜାତୀୟ ଜାଗରଣର ସ୍ରୋତ ପ୍ରବାହିତ ହୋଇଛି । ବଙ୍କିମଚନ୍ଦ୍ରଙ୍କର ବନ୍ଦେମାତରମ୍, ରାଧାନାଥଙ୍କର ସର୍ବେଷାଂ ନୋ ଜନନୀଭାରତ, କୁନ୍ତଳାକୁମାରୀଙ୍କର ଉତ୍କଳଜନନୀ, ଗୋପବନ୍ଧୁଙ୍କର ବନ୍ଦୀର ସ୍ୱଦେଶ ଚିନ୍ତା ଭଳି କବିତାର ମନ୍ଦ୍ରସ୍ୱରରେ ଗଗନ ପବନ ମୁଖରିତ ହୋଇଉଠେ । ଏହି ସମୟରେ ପଦ୍ମଚରଣଙ୍କର ଧଉଳି ପାହାଡ, ପୃଥ୍ୱୀରାଜଙ୍କ ପୁତ୍ର, ତ୍ରିବେଣୀ ତଟେ, ଖୋରଧାର ପ୍ରଥମ ଦର୍ଶନେ, ବସନ୍ତ ଉତ୍ସବେ ଭଳି କବିତା ରଚିତ । ଅତୀତର ସ୍ମୃତି ଉଜ୍ଜୀବନ ତଥା ବର୍ତ୍ତମାନର ତୀବ୍ର ଅବସାଦର ବର୍ଣ୍ଣନା ସହିତ ଭବିଷ୍ୟତ ପାଇଁ ଗଭୀର ଆଶାବାଦର ସ୍ୱର ଏହି କବିତାଗୁଡ଼ିକର ମହତ୍ତ୍ୱ । 'ତ୍ରିବେଣୀ ତଟେ' କବିତାରେ ଏହି ଆଶାର ଦୀପ୍ତସ୍ୱର–

"ଅତୀତକୁ ସାକ୍ଷୀରଖି ଗଢିଯାଅ ବର୍ତ୍ତମାନ
ଅନଂଗ ଯଯାତି ଦେଶ ନୁହେଁ ନୀଚ, ନୁହେଁ ସାନ ।"

ଏହି କବିତାରେ ମଧୁସୂଦନ ରାଓଙ୍କର 'ନବଯୁଗର ଅଭିଷେକ' କବିତାର ଭାବସାମ୍ୟ ଲକ୍ଷ୍ୟ କରାଯାଇପାରେ । 'ଧଉଳି ପାହାଡ'. ଦର୍ଶନରେ କବି ଚିତ୍ତରେ ଅତୀତର ବିଚିତ୍ରବର୍ଣ୍ଣୀ ଛବି ନାଚିଉଠିଛି । ଅଶୋକଙ୍କର କଳିଙ୍ଗ ଆକ୍ରମଣ ଓ ତା'ର ପରିଣତିର ବର୍ଣ୍ଣନା ଭିତରେ ପ୍ରାକୃତିକ ଶୋଭା-ସମ୍ପଦର ବର୍ଣ୍ଣନା ସେ କରିବସିଛନ୍ତି । ସେ ଗାଆନ୍ତି–

"ଏହିପରି ସିନା କଳିଙ୍ଗ ତପନ ବୁଡ଼ିଗଲେ ଦିନେ ଦରିଆ ତୀରେ
ଏହିପରି ସିନା କଳିଙ୍ଗ ଗୁରୁତ୍ୱ ଭାସିଗଲା କାଳ-ସାଗର-ନୀରେ
X X X X
କେତେ ଜାତି ହାତଧରି ଆଗେ ଚଳି ଆଗୁଆ ହୋଇଣ ରଖିଲେ ନାମ
ସତ୍ୟ ସାହସର ଜନମଭୂଇଁକୁ ସତେ ମୋର ବିଧି ହୋଇଲା ବାମ ।"

ଏସବୁ ଗୌରବୋଜ୍ଜ୍ୱଳ ଅତୀତର ମୂକସାକ୍ଷୀ ହେଉଛି ଧଉଳିପାହାଡ଼ । ତେଣୁ କବି ଧଉଳି ପାହାଡ଼କୁ ସମ୍ବୋଧନ କରି କୁହନ୍ତି, ଥରେ ହେଲେ ସେ କହିଦେଉ ଯେ ଏ ସୁଦିନ ଆଉ କେବେ ଆସିବାରନାହିଁ । ଅର୍ଥାତ୍ ଏହି ଅତୀତ ରୋମନ୍ଥନରେ ହିଁ କବିଙ୍କର ଲେଖନୀ ସୀମାବଦ୍ଧ ରହିଛି । କିନ୍ତୁ ଭବିଷ୍ୟତପାଇଁ ଆଶା ଓ ବିଶ୍ୱାସକୁ ସେ ମନରୁ ପୋଛି ଦେଇପାରୁନାହାନ୍ତି ।

**ଈଶ୍ୱରପ୍ରୀତିର କବିତା :**

ପଦ୍ମଚରଣଙ୍କ ଗୀତିକବିତାର ଅନ୍ୟ ଏକ ଉଲ୍ଲେଖନୀୟ ବୈଶିଷ୍ଟ୍ୟ ହେଉଛି ବିଭୁପ୍ରୀତି । ଏହି ଈଶ୍ୱର ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ନୁହଁନ୍ତି । ଏ ଜୀବନ ଦେବତା, ଅବ୍ୟକ୍ତ ଅନିର୍ବଚନୀୟ । କେବଳ ଅନୁଭବ ଦେଇ ତାଙ୍କର ଅବସ୍ଥିତି କଳନା କରାଯାଇପାରେ । ରବୀନ୍ଦ୍ରନାଥଙ୍କ 'ଗୀତାଞ୍ଜଳି' ବା କୁନ୍ତଳାକୁମାରୀଙ୍କର 'ଅଂଜଳି' ଭଳି କବିତାରେ ବ୍ୟକ୍ତିଗତ ଭାବପ୍ରବଣତାର ସାର୍ବଜନୀନ ତଥା ଦିବ୍ୟଚେତନା ଅନୁଭୂତ ହେଉଥିବାବେଳେ ପଦ୍ମଚରଣ ଏହି ଚେତନାରେ ଏକାଧିକ କବିତା ରଚନା କରିଛନ୍ତି । ମୋ ଅଳି, ସୁଖ ଦୁଃଖ, ଜମା ଖର୍ଚ୍ଚ, ମୋ ଅଭିମାନ, କିଏ ତୁମ୍ଭେ ? ବ୍ୟର୍ଥ ପ୍ରୟାସ ପ୍ରଭୃତି ଏହି ଶ୍ରେଣୀର କବିତା, କିଏ ତୁମ୍ଭେ କବିତାରେ ଗଂଗାଧରଙ୍କ 'ଭକ୍ତି' କବିତାର ଛାୟା ସ୍ପଷ୍ଟ ।

"ଯାହା ମୁଁ ଦେଖୁଛି ତାହା କାହା ଛାୟା
ଅବା କାୟା ରୂପୀ ଛାୟା
ବୁଝିଲି ମୁଁ ଏବେ ଚାରିଦିଗେ ମୋର
ତୁମରି ମୋହିନୀ ମାୟା ।"

ଏହି ପଙ୍କ୍ତିରେ–

"କି ଦେଇ ପୂଜିବି ଯାହା ମୁଁ ଦେଖୁଛି
ସବୁ ତୁମରି ପ୍ରସାଦ
ଯାହା ପରସାଦ ତାଙ୍କୁ ଅରପିଲେ
ହେବ ସିନା ଅପରାଧ ।"

ଗଙ୍ଗାଧରଙ୍କ ଭକ୍ତି କବିତାର ଅନୁରଣନ ଅନୁଭବ କରିହୁଏ । ଏହି 'ତୁମେ' ମଧ୍ୟରେ ରହସ୍ୟଘନ ଜୀବନଦେବତାଙ୍କୁ ନିରାଜାନା କରି କବି 'ମୋ ଅଳି' କବିତାରେ ଗାଇଛନ୍ତି –

"ହଂସ ମୃଗ ଅଂଗେ ଗମନ ମାଧୁରୀ
କପୋତକୁ ଚିତ୍ର ତନୁ
ବାଛି ବାଛି ମୋତେ ପ୍ରେମ ଫୁଲ ଦିଅ
ତୁମରି ପ୍ରେମ କାନନୁ ।"

ରୋମାଣ୍ଟିକ୍ ରହସ୍ୟବାଦର ଯେଉଁ ସ୍ୱର ସବୁଜଯୁଗରେ ଶୁଭୁଥିଲା, ଏ ସ୍ୱରକୁ ତା'ର ଆଦ୍ୟ ଗୁଞ୍ଜରଣ ବୋଲି କୁହାଯିବା ଯଥାର୍ଥ ମନେହୁଏ ।

ଏହି ଦେବତା ପୁଣି ମନ୍ଦିରରେ ନଥା'ନ୍ତି । ସେ ଥାଆନ୍ତି ଦୀନ ଦୁଃଖୀର କୁଟିରରେ । ମାନବବାଦର ଏହି ଉଦାର ଧାରା ତାଙ୍କର ବିଭୁପ୍ରୀତିର ଅନ୍ୟତମ ଦିଗ ।

ଈଶ୍ୱରଙ୍କଠାରୁ ମଣିଷର ଗୁରୁତ୍ୱ ପ୍ରତିପାଦନ କରି କାଳିନ୍ଦୀଚରଣଙ୍କର ପୁରୀ ମନ୍ଦିର, ଯାଦୁଘର ଭଳି କବିତା ରଚିତ। 'ଦେବ ପୂଜା' କବିତାରେ ପଦ୍ମଚରଣ ସେହି ମାନବବାଦୀ ସ୍ୱରର ଉଦ୍‌ଘୋଷଣା କରନ୍ତି –

''ସେଥିରେ ମୋହର ହେବ ଯୋଗ୍ୟ ପୂଜା
ସେଥିରେ ମାନେ ମୋ ମନ
ଅନାଥ ଆତୁର ଜୀବେ ଯେ ତୋଷର
ପ୍ରିୟ ମୋର ସେହି ଦିନ।'' (ଦେବପୂଜା)

ନିଜକୁ ସେ ଧୂଳି ଧରଣୀର ଅଜସ୍ର ନାମହୀନ ମଣିଷଙ୍କ ପ୍ରତିନିଧି ବୋଲି ମନେ କରନ୍ତି। ତେଣୁ ପଲ୍ଲୀ କୃଷକର ଦୁଃଖ ତାଙ୍କୁ ଅଭିଭୂତ କରେ। ପୁଣି ପ୍ରବାସୀ ସୈନିକର ଆକୃତି ତାଙ୍କୁ ବିହ୍ୱଳ କରେ।

**ଚତୁର୍ଦ୍ଦଶପଦୀ କବିତା ଓ ସମ୍ବୋଧନ ଗୀତିର କବି :**

ସମ୍ବୋଧନ ମାଧ୍ୟମରେ ନିଜ ହୃଦୟ ଆବେଗର ସ୍ଫୁରଣ ସମ୍ବୋଧନ ଗୀତିକାର ମୂଳକଥା। ଓଡ଼ିଆ ସାହିତ୍ୟରେ ଏହି ସମ୍ବୋଧନ ଗୀତିକା (ଓଡ଼ ୧)ର ପ୍ରବର୍ତ୍ତକ ଭାବରେ ଆମେ ଭକ୍ତକବି ମଧୁସୂଦନ ରାଓଙ୍କୁ ସମ୍ମାନ ଦେଉଥାଉ। ପଦ୍ମଚରଣଙ୍କର ଚିରସୁନ୍ଦରୀ, ଲୋହିତ ଗୋଲାପ ପ୍ରଭୃତି ଉତ୍‌କୃଷ୍ଟ ସମ୍ବୋଧନ ଗୀତିକା। ରବି ଠାକୁରଙ୍କ ଭଳି ରୂପ ମଧ୍ୟରେ ଅରୂପ, ସୀମା ମଧ୍ୟରେ ଅସୀମର ଅନୁଭବ 'ଚିରସୁନ୍ଦରୀ' କବିତାର ମୂଳକଥା –

''ଇନ୍ଦ୍ରିୟର ରୂପତୃଷ୍ଣା ପରାଜୟ କରି
ଅମର ସୌନ୍ଦର୍ଯ୍ୟେ ରାଜ ହେ ଚିରସୁନ୍ଦରୀ।''

ରୂପସୀ, ବିଜୟିନୀ, ଷୋଡ଼ଶୀ, ବ୍ୟର୍ଥପ୍ରୟାସ, ପ୍ରୀତିସ୍ମୃତି, ସୌନ୍ଦର୍ଯ୍ୟର ଅପମାନ ପ୍ରଭୃତି ତାଙ୍କର ସାର୍ଥକ ଚତୁର୍ଦ୍ଦଶପଦୀ କବିତା। କ୍ଷୁଦ୍ର ଅବୟବ ମଧ୍ୟରେ ବ୍ୟାପକ ଓ ବିରାଟର ଅନୁଭବ ଏଗୁଡ଼ିକର ବୈଶିଷ୍ଟ୍ୟ।

ପ୍ରକୃତି ସହିତ ମାନବୀୟ ପ୍ରବୃତ୍ତିର ସାମଞ୍ଜସ୍ୟ ପ୍ରତିପାଦନ ତାଙ୍କର କବିତାର ଅନ୍ୟତମ ବୈଶିଷ୍ଟ୍ୟ। 'ଆଶ୍ୱିନ' କବିତାରେ –

''ଫୁଟୁ ଫୁଟୁ କଢ଼ ପଡ଼ଇ ମଉଳି
ପଲକେ ତପନ ତାପେ
ପ୍ରେମ ପବିତ୍ରତା କ୍ଷଣେ ମୁଖ ଟେକି
ଲୁଚେ ଦ୍ୱେଷ ହିଂସା ପାପେ।''

ଏହିଭଳି କବିତାରେ କବି ପାଲଟିଛନ୍ତି ଦାର୍ଶନିକ । ସେ ଜୀବନର ଭଙ୍ଗୁରତା ଦେଖି ବିଷର୍ଣ୍ଣ । ପ୍ରେମର ଅସଫଳତା ଦେଖିବା ପରେ ସମାଜର ଦ୍ୱେଷ-ହିଂସା କଥା ଚିନ୍ତା କରି ଦୁଃଖୀ ହୋଇପଡ଼ିଛନ୍ତି । ଜଗତର ଦୁଃଖକୁ ନିଜ ଦୁଃଖ ବୋଲି ବିଚାର କରିବା ଭିତରେ ଆମେ କବିଙ୍କର ଜୀବନପ୍ରତି ଥିବା ଦାର୍ଶନିକସୁଲଭ ଦୃଷ୍ଟିଭଙ୍ଗୀର ପରିଚୟ ପାଇଥାଉ ।

ଯୁଗସ୍ରଷ୍ଟା ରାଧାନାଥଙ୍କ ରଚନାଦ୍ୱାରା ପଦ୍ମଚରଣ ବହୁଭାବରେ ପ୍ରଭାବିତ । 'ମହାଯାତ୍ରାର ଅମର୍ଷୀବାଣୀ' ଅନୁରୂପ ତାଙ୍କର ପୃଥ୍ୱୀରାଜଙ୍କ ପତ୍ର ଦେଶପ୍ରୀତିର ଉଦ୍‌ଘୋଷଣା କରିଥାଏ । ପୃଥ୍ୱୀରାଜ ଚରିତ୍ର ଅନ୍ତରାଳରେ ରହି ସ୍ୱୟଂ କବି ପଦ୍ମଚରଣ ଭାରତବାସୀଙ୍କୁ ଜାଗ୍ରତ ହେବାପାଇଁ ଆହ୍ୱାନ ଦେଇଛନ୍ତି । ଅନ୍ୟତ୍ର ରାଧାନାଥଙ୍କର 'ଚିଲିକା'ରେ –

''ବହନ୍ତି କଳ୍ପନା ନାମ ସେ ସୁନ୍ଦରୀ
ବୀଣାପାଣୀଙ୍କର ଚିର ସହଚରୀ ।''

ପଦର ସିଧାସଳଖ ପ୍ରଭାବ ପୃଥ୍ୱୀରାଜଙ୍କ ପତ୍ରରେ –

''କଳପନା ଦେବୀ ବାଣୀ ସହଚରୀ
ଦୟା କରି ଦେଲେ ମୋର କର ଧରି
କାହିଁ ନେଲେ ତା'ର ନଜାଣେ ମୁଁ ନାମ
ଦେଖିଲି ଯେ ଦୃଶ୍ୟ ଭୀଷଣ ମହାନ ।''

ଯୁଗର ସନ୍ଧିକ୍ଷଣରେ ବିକଶିତ ଏହି ପ୍ରତିଭାର ସୃଷ୍ଟିପ୍ରକ୍ରିୟା ପଛରେ ଯେ ପୂର୍ବବର୍ତ୍ତୀ ସ୍ରଷ୍ଟାଙ୍କର ପ୍ରଭାବ ରହିବ, ଏହା ନିଶ୍ଚିତ । କିନ୍ତୁ ଭାବର ବଳିଷ୍ଠତା ଓ ଭାଷା ପ୍ରୟୋଗର ପରିଚ୍ଛନ୍ନତା ନେଇ ପଦ୍ମଚରଣ ନିଜ ସମୟରେ ମଧ୍ୟ ନିଜପାଇଁ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ଜାତୀୟ ଜୀବନର ଅବସାଦ କେବେ ତାଙ୍କୁ ଦୁଃଖୀ କରିଛି ତ ବନ୍ଧୁ ବିଦାୟରେ ସେ ଅତୀତ ଉନ୍ମୁଖୀ ହୋଇପଡ଼ିଛନ୍ତି । କିନ୍ତୁ ପ୍ରେମ ଓ ବିଶ୍ୱାସ ଉପରେ ଗଭୀର ଆସ୍ଥା ତାଙ୍କୁ ଯଥେଷ୍ଟ ଆତ୍ମବିଶ୍ୱାସ ପ୍ରଦାନ କରିଛି । ତେଣୁ 'ଧଉଳିପାହାଡ଼' କବିତାରେ ସେ ସମ୍ରାଟ ଅଶୋକଙ୍କ ସହିତ ମିଶି କାମନା କରନ୍ତି –

''ଏହି ତପଫଳ ଏହି ଧର୍ମବଳ
ଜୀବନର ମୋର ହେଉ ଭୂଷଣ
ସେହି ବଳେ ପ୍ରଭୁ ଘୁଞ୍ଚାଇ ଦିଅ ହେ
ଲକ୍ଷ ଲକ୍ଷ ପ୍ରାଣୀ ପ୍ରାଣ କଷଣ ।''

———

# ଗଡ଼ନାୟକ କାବ୍ୟବିଭା

କବି ରାଧାମୋହନ ଗଡ଼ନାୟକ ସବୁଜଯୁଗର ସମକାଳୀନ କବି । ସବୁଜର ସ୍ୱପ୍ନପ୍ରବଣତାଠାରୁ ନିର୍ଦ୍ଦିଷ୍ଟ ଦୂରତା ରଖି ତାଙ୍କର କାବ୍ୟସାଧନା ଗତିଶୀଳ । କେବେ ତାଙ୍କ କବିତାରେ ପ୍ରକୃତିପ୍ରୀତିର ଉଚ୍ଛ୍ୱାସ ତ କେବେ ରହସ୍ୟବାଦୀ ଚେତନା ପରିଦୃଷ୍ଟ ହୁଏ । କେବେ ସେ ଦରିଦ୍ର ପ୍ରତି ସମ୍ବେଦନଶୀଳ ହୋଇଛନ୍ତି ତ କେବେ ମଣିଷର ଅବିଶ୍ୱସ୍ତତା ଲକ୍ଷ୍ୟ କରି ପଶୁପକ୍ଷୀଙ୍କପାଇଁ କାବ୍ୟ ରଚନା କରିଛନ୍ତି । ରବୀନ୍ଦ୍ର କାବ୍ୟ ମାନସର ଅତୀନ୍ଦ୍ରିୟ ଚେତନାରେ ଉଦ୍‌ବୁଦ୍ଧ ହୋଇଥିବା କବି ଜାତୀୟଭାବନାର ବାହକ ହୋଇ ବିପ୍ଳବୀର ଭୂମିକା ଗ୍ରହଣ କରିଛନ୍ତି ଓ ଜୀବନର ସମ୍ମୁଖୀନ ହେବା ପାଇଁ ଦମ୍ଭ ଧରିଛନ୍ତି । ତାଙ୍କର ଦୀର୍ଘଦିନର ସାହିତ୍ୟ ସାଧନାର ଫଳଶ୍ରୁତିସ୍ୱରୂପ ଆମେ ବନରାଜି ଲୀଳା, କାଳିଦାସ, କାବ୍ୟନାୟିକା, ଶାମୁକାର ସ୍ୱପ୍ନ, ପଶୁପକ୍ଷୀର କାବ୍ୟ, ଉତ୍କଳିକା, ସ୍ମରଣିକା, ଧୂସର ଭୂମିକା, କୈଶୋରିକା, ଦୀପଶିଖା, ସୂର୍ଯ୍ୟ ଓ ଅନ୍ଧକାର ଭଳି ସୃଷ୍ଟିସଂପଦ ପାଇଛୁ ।

କବିତା ରଚନାର ପ୍ରାଥମିକ ପର୍ଯ୍ୟାୟରେ କବି ଗ୍ରାମ୍ୟ-ଜୀବନ ତଥା ଜାତୀୟ ଜୀବନ ପ୍ରତି ସମପରିମାଣରେ ଅନୁରକ୍ତ । ୧୯୨୮ରେ ପ୍ରକାଶିତ 'ବନରାଜିଲୀଳା' ତାଙ୍କର ପ୍ରଥମ ପ୍ରକାଶିତ କବିତା ସଂକଳନ । ଏହି ସଂକଳନରେ କେତେକ କବିତାରେ ଇଂରାଜୀ ଭାଷା ବିଶିଷ୍ଟ ରୋମାଣ୍ଟିକ୍ କବିମାନଙ୍କର କବିତା ଅନୁବାଦ ସ୍ଥାନିତ ହୋଇଛି । Wordsworthଙ୍କର Cuckoo ଓ The Solitary Reaperର ଅନୁବାଦ ଯଥାକ୍ରମେ 'କୋକିଳ ପ୍ରତି' ଓ 'ଦେଖ ଏକାକିନୀ କେଦାର କୋଳେ' ଭାବରେ ପ୍ରକାଶିତ । ସେହିପରି Tennysonଙ୍କର A farewellର ମେଲାଣି, The poet's songର ଅନୁବାଦ କବିର ଗୀତ, Beggar maidର ଅନୁବାଦ 'ଭିକ୍ଷୁବାଳା', Scottଙ୍କର Patriotismର ଅନୁବାଦ – ସ୍ୱଦେଶ ପ୍ରେମ, Campbellଙ୍କର Lord Lullin's Daughterର ଅନୁବାଦ 'ରାଜଜେମା', Cowperଙ୍କର The Gold Finchର ଅନୁବାଦ ହଳଦୀବସନ୍ତର ମୃତ୍ୟୁ, Moorଙ୍କର The Last Roseର ଅନୁବାଦ ଶେଷ ଗୋଲାପ, Mathew Arnoldଙ୍କର Sohrab & Rustomର ଅନୁବାଦ ତାଙ୍କର ଅନୁବାଦ କଳାର

ପରିଚାୟକ । ଏହି ଅନୁବାଦରେ ରୋମାଣ୍ଟିକ୍ କଳ୍ପନାବିଳାସର ଆଧିକ୍ୟ ଅନୁଭୂତ ହୁଏ । ଏତଦ୍‌ବ୍ୟତୀତ 'ମେଘଦୂତ'ର ସମସ୍ତ କାବ୍ୟ ସୌନ୍ଦର୍ଯ୍ୟ ଏହି ଅନୁବାଦରେ ପରିଲକ୍ଷିତ ହୁଏ । କବି ଗଡ଼ନାୟକ ଇଂରାଜୀ ଭାଷାର ଅନୁବାଦ ମାଧ୍ୟମରେ ଆମ ସାହିତ୍ୟକୁ ଅନେକ ବିଶିଷ୍ଟ କବିଙ୍କ ରଚନାବଳୀ ପ୍ରଦାନ କରିବା ସହିତ ସଂସ୍କୃତର ମହାନ୍ କବି କାଳିଦାସଙ୍କୁ ପାଠକର ନିକଟବର୍ତ୍ତୀ କରାଇପାରିଛନ୍ତି । ଏହାଦ୍ୱାରା ସାହିତ୍ୟର ପରିସୀମା ପରିବ୍ୟାପ୍ତ ହୋଇଛି ଓ ଅତୀତ ସଂପୃକ୍ତି ଆଧୁନିକ କବିତା ଜଗତକୁ ନୂତନ ଜୀର୍ଣ୍ଣ ପ୍ରଦାନ କରିଛି । ତାଙ୍କର କାବ୍ୟନାଟିକା କାଳିଦାସ ୧୯୩୩ରେ ରଚିତ ଓ ୧୯୪୦ରେ ପ୍ରକାଶିତ । ୧୯୪୫ରେ ପ୍ରକାଶିତ କବିତା ସଂକଳନ ତିନି ଭାଗରେ ବିଭକ୍ତ – ମୈତ୍ରୀ, ପ୍ରାକ୍ତନୀ ଓ ଅର୍ଘ୍ୟ । 'ମୈତ୍ରୀ' ମାନବିକତାର ବିଜୟ ଉଦ୍‌ଘୋଷଣା କରେ । କନିଅର ଫୁଲ, ଘାସ ଫୁଲ, ମାଟି ପ୍ରଭୃତି କବିତାଗୁଡ଼ିକରେ କବିଙ୍କର ମାନବ ତଥା ପ୍ରକୃତି ପ୍ରତି ଥିବା ଆନ୍ତରିକତା ପ୍ରକଟିତ । 'ମାଟି' କବିତାରେ ମାଟିକୁ ଧୈର୍ଯ୍ୟ ଓ ସହିଷ୍ଣୁତାର ପ୍ରତୀକ ଭାବରେ ସମ୍ମାନ କରାଯାଇଛି । ସୃଷ୍ଟିର ପ୍ରାରମ୍ଭରେ ସୃଷ୍ଟିକର୍ତ୍ତା ପଞ୍ଚଭୂତ (କ୍ଷିତ୍, ଅପ୍, ତେଜଃ, ମରୁତ, ବ୍ୟୋମ)ଙ୍କୁ ନିଜ ନିଜ ସ୍ଥାନ ବାଛି ନେବାକୁ କହିଛନ୍ତି । ସମସ୍ତେ ନିଜପାଇଁ ଅନ୍ୟଠାରୁ ଉତ୍କୃଷ୍ଟ ସ୍ଥାନ ବାଛିଛନ୍ତି ମାତ୍ର ମାଟି ନୀରବ ରହିଛି । ତା' ମତରେ, ''ତବ ଇଚ୍ଛା ସେହି ମୋର ଦୀକ୍ଷା'' କବିତାର ପ୍ରାନ୍ତ ଭାଗରେ ସୃଷ୍ଟିକର୍ତ୍ତା ମାଟିର ପ୍ରଶଂସା କରି କହନ୍ତି –

''ସୁନ୍ଦରୀ କଲ୍ୟାଣୀ,
ନମ୍ର ହୋଇ ହୋଇଛୁ ବିରାଟ
ଆଜି ତୁମେ ଜଗତର ରାଣୀ ।''

'ପ୍ରାକ୍ତନୀ'ରେ ପିଙ୍ଗଳାର ଅଭିସାର, ଲଳିତା ବିଦୂଳା, ଶ୍ରମଣା ଭଳି କବିତାଗୁଡ଼ିକ ସ୍ଥାନିତ । ଏଗୁଡ଼ିକ ଗାଥା କବିତା । ପିଙ୍ଗଳାର ଅଭିସାର କବିତାରେ ପିଙ୍ଗଳାକୁ... ପ୍ରତିମୂର୍ତ୍ତିଭାବରେ ପରିକଳ୍ପନା କରାଯାଇଛି ସତ୍ୟ ମାତ୍ର ନାରୀର ଶାଶ୍ୱତ ରୂପ ଏଥିରେ ଉଦ୍‌ଘାଟିତ ହୋଇଛି । ରବି ଠାକୁରଙ୍କ ପତିତା, ଭକ୍ତକବି ମଧୁସୂଦନଙ୍କର ପତିତାରମଣୀ, ବୈକୁଣ୍ଠନାଥଙ୍କର ଅମ୍ବାପାଲୀର ଉତ୍‌କଣ୍ଠା ଭଳି ଏହା ମଧ୍ୟ ଗଡ଼ନାୟକଙ୍କର ଅନ୍ୟତମ ସଫଳ ତଥା ସ୍ମରଣୀୟ କବିତା । ପିଙ୍ଗଳା ଧନୀପୁତ୍ରର ଅପେକ୍ଷାରେ ରାତ୍ରି ଉଜାଗର ରହିବା ପରଦିନ ପ୍ରଭାତରୁ ତା' ମନରେ ନୂତନ ଚିନ୍ତାଧାରା ଦେଖାଦେଇଛି । ସେ ଜୀବନର ନଶ୍ୱରତା ବୁଝିପାରିଛି । ତେଣୁ ସେ କହେ –

''ସରଗର ମୁହିଁ ଅମର କନ୍ୟା ମୁହିଁ ନାରୀ ମୁହିଁ ଦେଶ
ପୁଣ୍ୟ ମରତେ ପତିତା ସାଜିଲି ଘୃଣ୍ୟ ଜୀବନ ସେବି

ଅମୃତ ପିଇ ଆସିଥିଲି ଏଠି ହାୟରେ କରିଲି କିସ
ସର୍ପିଣୀ ସମ ସୃଷ୍ଟିର ତଳେ ସୃଜିଲି ବିଷମ ବିଷ ।''

ପରବର୍ତ୍ତୀ କାଳରେ ବେଣୁଧର ରାଉତ ପିଙ୍ଗଳାର ରାତି ଓ ପିଙ୍ଗଳାର ସୂର୍ଯ୍ୟ ଭଳି କବିତାରେ ରୂପଜୀବୀ ପିଙ୍ଗଳାର ଜୀବନ ସମ୍ପର୍କୀୟ ନୂତନ ଅବବୋଧ କଥା କହିଛନ୍ତି ।

ଉତ୍କଳିକା ଓ ସ୍ମରଣିକା ୧୯୫୦, ପଶୁପକ୍ଷୀର କାବ୍ୟ ୧୯୫୯, ଶାମୁକାର ସ୍ୱପ୍ନ ୧୯୬୧ ଓ ଧୂସର ଭୂମିକା ୧୯୬୦ରେ ରଚିତ । ତାଙ୍କର 'ସୂର୍ଯ୍ୟ ଓ ଅନ୍ଧକାର' ୧୯୭୫ରେ ଓଡ଼ିଶା ସାହିତ୍ୟ ଏକାଡେମୀର ପୁରସ୍କାର ପାଇଛି । 'ଦୁଇଟି ତାହାର ଡେଣା' ୧୯୫୪ରେ ସଂକଳିତ କବିତା ଗ୍ରନ୍ଥରେ ମୁକ୍ତ ଛନ୍ଦର ଅଭିନବ ପରୀକ୍ଷା ସଂଘଟିତ ହୋଇଛି । ଏହି କବିତାରେ କବି ଜୀବନପାଇଁ ତ୍ୟାଗ ଓ ଭୋଗ ଉଭୟର ଆବଶ୍ୟକତା କଥା ସୂଚାଇଛନ୍ତି ।

## ଗାଥା-କବିତାର କବି :

ଗାଥା-କବିତା (Ballad) ହେଉଛି କାହାଣୀପିଣ୍ଡିତ କବିତା; ଯାହାର ଆବେଦନ ସ୍ୱତନ୍ତ୍ର ଓ ପ୍ରକାଶଭଙ୍ଗୀ ଚମତ୍କାର । ଏଥିରେ ସମକାଳୀନତାକୁ ପୂର୍ବକାଳୀନତାରେ ପରିଣତ କରିବାର ଆଗ୍ରହ ଉଲ୍ଲେଖଯୋଗ୍ୟ । ପୁରାଣ, ଇତିହାସ ଓ କିମ୍ବଦନ୍ତୀର ଲୋକପ୍ରିୟ କାହାଣୀ ମାଧ୍ୟମରେ ଜୀବନପାଇଁ ବାର୍ତ୍ତା ପ୍ରଦାନ କରିବାରେ ଗାଥା କବିତାର ସାର୍ଥକତା । ଦିଲ୍ଲୀପ ଓ ନନ୍ଦିନୀ, ପିଙ୍ଗଳାର ଅଭିସାର, ଲଳିତା, ବିଦୁଲା, ପାଷାଣୀ ଅହଲ୍ୟା, ଶ୍ରମଣା, ଯସ୍‌ମା, କପିଳେନ୍ଦ୍ରଦେବ, ରାଣୀ ଶୁକ ଦେଈ, ଧର୍ମପଦ, ପ୍ରଭାବତୀର ଅଭିଯାନ, ବାଇମୁଣ୍ଡି, ଚାଖି ଖୁଣ୍ଟିଆ, ସନାତନ, ସରସ୍ୱତୀ ବାଈ, କାଶିଆ କପିଳା ଭେଟ, କୌମୁଦୀ, ଗୁଖା ସିପାହି, ସୈନିକ ନାରୀ, ବୀରହମ୍ବୀର ପ୍ରଭୃତି ତାଙ୍କର ଉଲ୍ଲେଖଯୋଗ୍ୟ ଗାଥା-କବିତା । ଗାଥା କବିତା ରଚନାରେ ସେ ରବୀନ୍ଦ୍ରନାଥ ଓ ସତ୍ୟେନ୍ଦ୍ରନାଥଙ୍କ ଭଳି ନୂତନ ଚିନ୍ତାଧାରାର ପ୍ରୟୋଗ କରିଛନ୍ତି । ମଧୁସୂଦନଙ୍କ ଉତ୍କଳଗାଥା, ଗୋଦାବରୀଶ ମିଶ୍ରଙ୍କର ଆଲେଖିକା ଓ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଆହୁତି ଭଳି ଗାଥା-କବିତା ଓଡ଼ିଶାରେ ଅନନ୍ୟ । ଏତାଦୃଶ କବିତାର ଭାଷା ସରଳ, ଇଙ୍ଗିତଧର୍ମୀ ତଥା ସଂକ୍ଷିପ୍ତ । ଏହି ଗାଥାର କାହାଣୀ ଦ୍ରୁତ ଓ ନାଟକୀୟତା ସୁରକ୍ଷିତ । ଆବୃତ୍ତିଧର୍ମିତା ଏମାନଙ୍କର ମୁଖ୍ୟ ବିଭାବ । କାଓପର, ରସେଟି, କିଟ୍‌ସ ପ୍ରଭୃତି ପାଶ୍ଚାତ୍ୟ କବିଗଣ ଗାଥା-କବିତା ଲେଖି ଲୋକପ୍ରିୟ ହୋଇଥିଲେ । ସେହିପରି ଗଡ଼ନାୟକ ଖବରକାଗଜ ପୃଷ୍ଠାର ଉଲ୍ଲେଖଯୋଗ୍ୟ ସମ୍ବାଦଗୁଡ଼ିକୁ ମଧ୍ୟ ଗାଥା-କବିତାର କୋଟିକୁ ଉନ୍ନୀତ କରିଛନ୍ତି । ଯେମିତି ଚନ୍ଦକା

ବଣର ଏକ ତରୁଣୀ ବାଘୁଣୀ ବୃତ୍ତାନ୍ତ, ଦେଶପାଇଁ ସର୍ବସ୍ୱ ଦାନ କରିଥିବା କୌମୁଦୀର କଥା, ଯସ୍‌ମାରେ ଶ୍ରମଜୀବୀ ଯୁବତୀ ଯସ୍‌ମାର କାହାଣୀ, ନଅଙ୍କ ଦୁର୍ଭିକ୍ଷ ପ୍ରପୀଡ଼ିତ କିଶୋର ସନାତନରଂ କଥା ଗଡ଼ନାୟକଙ୍କ ଲେଖନୀରେ ଚିରନ୍ତନ କାବ୍ୟରୂପ ପରିଗ୍ରହ କରିଛି । ଉତ୍କଳୀୟ ଜନଜୀବନର ଅନେକ ଗୌରବମୟ ଆଲେଖ୍ୟ 'ଉତ୍କଳିକା'ରେ ରୂପାୟିତ ହୋଇଛି । 'ଶୁକଦେଈ' କବିତାରେ ଶୁକଦେଈଙ୍କ ବୀରତ୍ୱର ପରିକଳ୍ପନା ଏହିଭଳି –

''ଲାଜେ ବଂଚିବାଠୁଁ ମରଣଟି ବଡ଼
ହାରିବାଠୁଁ ବଡ଼ ଜିଣା ବା
ଜୀଇଁ ଥାଉଁ ଥାଉଁ ଆପଣା ଦରବ ନ ରଖିପାରଇ ଯେହୁ
ପୋଡ଼ି ଯାଉ ତା'ର ମଣିଷପଣିଆ ଜୀଇଁ ମରିଥାଏ ସେହୁ ।''

ଉଲ୍ଲେଖ ଭିତରେ ଆମେ ଓଡ଼ିଆ ରମଣୀର ବୀରତ୍ୱର ଜୟଗୀତି ଶୁଣିପାରୁ । ସନାତନ ନଅଙ୍କ ବିଧ୍ୱସ୍ତ ଓଡ଼ିଶାର ଜନଜୀବନର ପ୍ରତିନିଧିଭାବରେ ରୂପାୟିତ । ମାଆ, ଭାଇ, ଭଉଣୀଙ୍କପାଇଁ ଭିକ୍ଷା ମାଗି ଘରକୁ ଫେରୁଥିବା ସନାତନ ନଅଙ୍କର ଗ୍ରାସରେ ମୃତ୍ୟୁବରଣ କରିଛି । ଏହି କାରୁଣ୍ୟର ଅନୁପମ ଚିତ୍ର 'ସନାତନ' କବିତାରେ ରୂପାୟିତ ।

## ଦେଶପ୍ରୀତିର କବି :

ଦେଶ ପ୍ରୀତିର ବିବିଧ ବର୍ଣ୍ଣବିଭାରେ ଗଡ଼ନାୟକଙ୍କ ସୃଷ୍ଟିସଂପଦ ବିମଣ୍ଡିତ । ସ୍ୱାଧୀନତା ଆନ୍ଦୋଳନ, ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧା ଓ ସମ୍ମାନ ତଥା ଦେଶର ସାଂପ୍ରତିକ ସ୍ଥିତିପାଇଁ ଅସନ୍ତୋଷର ପ୍ରତିଫଳନ ଏସବୁ କବିତାର ବୈଶିଷ୍ଟ୍ୟ । ଉତ୍କଳର ଜୟଗୀତି ଗାନ ଓ ଉତ୍କଳର ବୈଚିତ୍ର୍ୟପ୍ରତି ସଶ୍ରଦ୍ଧ ସମ୍ମାନର ଧାରା ମଧ୍ୟ ତାଙ୍କର ଦେଶପ୍ରୀତିର ନିଦର୍ଶନ । ମୁକ୍ତ ଭାରତ, ପୁଣ୍ୟ ଭାରତବର୍ଷ, ଆମର ଏ ଭାରତ, କିଏ ତାକୁ ମାରିପାରେ, ମରି ସୁଦ୍ଧା ମରିନଥିଲାରେ, ଉଦ୍ଧମ ସିଂହ, କୌମୁଦୀର ଅବଦାନ ଭଳି କବିତାରେ ଦେଶପ୍ରୀତିର ସ୍ୱରହିଁ ମୁଖ୍ୟ । 'ଆଜି ଏ ରୂପାର ଜୟନ୍ତୀ'ରେ ସ୍ୱାଧୀନ ଭାରତର ରଜତ ଜୟନ୍ତୀରେ କବି ଚିତ୍ତର କ୍ଷୋଭ ପ୍ରକଟିତ । 'ମୁଁ କି କେବେ ଦୀନହୀନ' କବିତାରେ କବି ଓଡ଼ିଶାର ଭୌଗୋଳିକ ସ୍ଥିତି ସହିତ ନିଜର ମାନସିକ ସ୍ଥିତିକୁ ଏହିଭାବରେ ବ୍ୟକ୍ତ କରିଛନ୍ତି –

''ଯେ ଦେଶର ପ୍ରଭୁ ଜଗତର ନାଥ, ନଦୀ ଯାର ମହାନଦୀ
ଶୈଳ ଯାର ମହାଇନ୍ଦ୍ର ମେଘାସନ ପାଦ ଦୁଏ ମହୋଦଧି
ଇତିହାସ ଯାର ନଈ ନାଳ ବିଲ ବନ ପ୍ରାନ୍ତରେ ବିକୀର୍ଣ୍ଣ

ସେଇ ଦେଶ କୋଳେ ଜନମ ମୋର ରେ
ମୁଁ କି କେବେ ଦୀନହୀନ !''

ମହାମାନବ ମହାତ୍ମାଗାନ୍ଧିଙ୍କର ଅମାନୁଷିକ ହତ୍ୟା ସମଗ୍ର ବିଶ୍ୱକୁ ଚକିତ କରିଥିଲା । ଗାନ୍ଧିଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ କବି ଗାନ୍ଧିଜୀଙ୍କ ଉଦ୍ଦେଶ୍ୟରେ ନିଜର ଶ୍ରଦ୍ଧା ନିବେଦନ କରିଛନ୍ତି । ତାଙ୍କୁ କେହି ହତ୍ୟା କରିବା ସମ୍ଭବ ନୁହେଁ । ତେଣୁ କବି କହନ୍ତି–

''ଅନ୍ଧକାର ସେ ଲୁଚିଯାଇଛି କି କ୍ରାନ୍ତିର ବିଦ୍ୟୁତ୍ ?
ମରଣର ବୁକେ ଅଭ୍ୟୁଦୟ ସେ ଅକ୍ଷୟ ଅଦ୍ଭୁତ
ମୃତ୍ୟୁ ତାହାର ନାହିଁ
ପୃଥିବୀରେ ତାକୁ ମାରିପାରିବାକୁ
ଘାତକ ଅସ୍ତ୍ରରେ କାହିଁ ?'' ''କିଏ ତାକୁ ମାରିପାରେ ?''

ଉଦ୍ଧାମ ସିଂହ ଜେନେରାଲ ଡାୟାରଙ୍କୁ ହତ୍ୟାକରି ଜାଲିଆନ ୱାଲାବାଗ୍ ହତ୍ୟାକାଣ୍ଡର ପ୍ରତିଶୋଧ ନେଇଥିଲେ । ତାଙ୍କୁ ଫାଶୀ ଦିଆଯିବା ସମୟରେ ମଧ୍ୟ ତାଙ୍କ ମନରେ ସେଥିପାଇଁ କ୍ଷୋଭ ନଥିଲା, ଥିଲା ଅପୂର୍ବ ପ୍ରଶାନ୍ତି । ଉଦ୍ଧାମ ସିଂହଙ୍କ କଣ୍ଠରେ ସ୍ଫୁରିଥିବା ଦେଶାତ୍ମବୋଧର ସେହି ସଂଗୀତ ଗଡ଼ନାୟକଙ୍କ ସମବେଦନାରେ ସିକ୍ତ ହୋଇ ପାଠକଙ୍କୁ ଲଣ୍ଡନ ସହରର ଫାଶୀକାଠ ପାଖକୁ ନେଇଯାଏ । ଦେଶପ୍ରୀତିର ଏକାଧିକ ଉଦାହରଣ ଗଡ଼ନାୟକଙ୍କ କବିତାରୁ ଦିଆଯାଇପାରେ । ସେ ନିଜକୁ ସୈନିକ ବୋଲି ବାରମ୍ବାର କହିଛନ୍ତି ଓ ଦେଶପାଇଁ ଆତ୍ମବଳି ଦେବାକୁ ଜୀବନର ମହାନ୍ ଲକ୍ଷ୍ୟ ବୋଲି ଘୋଷଣା କରିଛନ୍ତି । ତାଙ୍କ ଲେଖନୀରେ କୌମୁଦୀ ହେଉ ବା ବିଦୁଲା ହେଉ ସମସ୍ତେ ବିଜୟରେ ବିଶ୍ୱାସ କରନ୍ତି ଓ ହାରି ସାରି ବଞ୍ଚିବାକୁ ଅପମାନ ବୋଲି ମନେକରନ୍ତି । ଗାନ୍ଧିଜୀଙ୍କ ପାଣ୍ଠିକୁ ସର୍ବସ୍ୱ ଦାନ କରି କୌମୁଦୀ ନିଜ ସମୟର ପ୍ରତିନିଧି ପାଲଟିଯାଏ ।

**ପ୍ରେମ ଓ ପ୍ରଣୟର ସାଧକ କବି :**

କବି ଗଡ଼ନାୟକଙ୍କ କବି ଦୃଷ୍ଟିରେ ପ୍ରେମ ସହିତ ତ୍ୟାଗ ଓ କର୍ତ୍ତବ୍ୟବୋଧର ଧାରା ଏକାତ୍ମ ହୋଇଯାଇଛି । ସେହିସବୁ କବିତାରେ ପ୍ରଚଳିତ ସମାଜ ପ୍ରତି ହେୟ ମନୋଭାବ ସହିତ ମନୋମତ ଅନ୍ୟ ଏକ ଜଗତର ପରିକଳ୍ପନା ଦେଖିବାକୁ ମିଳେ । କବିଙ୍କର ପ୍ରେମ ଓ ପ୍ରଣୟର ଉଚ୍ଛ୍ୱାସ 'କାବ୍ୟନାୟିକା'ର ଅଧିକାଂଶ କବିତାରେ ପ୍ରତିଫଳିତ । ତାଙ୍କର ବିବି ଖାନୁନ୍ ଓ ଶିଳ୍ପୀ, ଚିରନ୍ତନୀ, ପୂର୍ଣ୍ଣିମାସ୍ପର୍ଶ, ବସନ୍ତ-ସଖୀ, ରାମୀ ଓ ଚଣ୍ଡୀଦାସ, ପିଙ୍ଗଳାର ଅଭିସାର ପ୍ରଭୃତି କବିତାରେ ପ୍ରେମର ଚମତ୍କାର ପରିପ୍ରକାଶ ହୃଦ୍ୟ । 'ପୂର୍ଣ୍ଣିମାର ସ୍ପର୍ଶ' କବିତାରେ କବି ନିଜର ବ୍ୟକ୍ତିଗତ ପ୍ରେମର କଥା ଖୁବ୍ ସନ୍ତର୍ପଣରେ କହିଛନ୍ତି –

''ତୁମେ ତ ମୋ ପରିଚିତା ଶୈଶବ ସହୀ ଗୋ
ପଡ଼ୋଶୀ ବାଳିଶ ମୋର ଅନୁରାଗମୟି ଗୋ
ମଧୁ ଯଉବନେ ଆଜି, ଜୀବନର ବଧୂ ସାଜି
ଝଁସିଚ ବାସର ବାସେ ନବ ପ୍ରାଣ ବହି ଗୋ
ତୁମେ ତ ମୋ ପରିଚିତା ଶୈଶବ ସହୀ ଗୋ ।''

ପ୍ରେମର ଅନନ୍ୟ ଅନୁଭବ 'ବିବି ଖାନୁନ୍ ଓ ଶିଳ୍ପୀ'ରେ ରୂପାୟିତ । ତୈମୁରଙ୍କ ପତ୍ନୀ ବିବି ଖାନୁନ୍ ଅନାମଧେୟ ଶିଳ୍ପୀ ପ୍ରତି ଆକୃଷ୍ଟ । ତାଙ୍କ ପ୍ରେମ ପଥରେ ସମାଜର ନାଲି ଆଖିର ଭୟ ଅନୁରୂପଭାବରେ 'ଶାମୁକାର ସ୍ୱପ୍ନ' ସଂକଳନରେ 'ରାମୀ ଓ ଚଣ୍ଡୀଦାସ' କବିତାରେ ସମାଜ ଅସ୍ୱୀକୃତ ପ୍ରେମ ସମ୍ପର୍କ ଓ ତା'ର ପରିଣତିର କଥା କୁହାଯାଇଛି । କବି ଚଣ୍ଡୀଦାସ ରଜକିନୀ ରାମୀ ପ୍ରତି ଆକୃଷ୍ଟ । ସମାଜର ଭର୍ତ୍ସନାରେ ସେ ବିଚଳିତ ନୁହଁନ୍ତି । ତେଣୁ ଶୁଦ୍ଧ ପ୍ରେମର ଜୟଗାନ କରି ସେ କହନ୍ତି –

''ତୁମେ ଅଛ, ମୁଁ ଅଛି ଆଜିର ଏ କାକଜ୍ୟୋସ୍ନା ଅଛି
କି କରିବ ସମାଜର ଷଡ଼ଯନ୍ତ୍ର କଠିନ କଠୋର
ଆମର ସମାଜ ଆମେ ଏଇଠାରେ ପାରିବାନି ରଚି ?''

ବ୍ୟଥାର ଦାନ, ସାହାଜାହାନ୍ ଭଳି କବିତାରେ ପ୍ରେମରେ ତ୍ୟାଗର ମହନୀୟତା କଥାହିଁ ପ୍ରକାଶିତ ହୋଇଛି । ଏହି କବିତାରେ ପ୍ରେମର ଶାଶ୍ୱତ ବିଜୟଗାଥା ଉଦ୍‌ଘୋଷିତ ହୋଇଛି । 'ଲଳିତା' ଭଳି କବିତାରେ ପ୍ରେମପାଇଁ ପ୍ରେମିକାଠାରୁ ଦୂତୀକାର ଭୂମିକାକୁ ଗୁରୁତ୍ୱ ପ୍ରଦାନ କରାଯାଇଛି । ଲଳିତା ବ୍ୟକ୍ତିଗତ ଲାଭ କ୍ଷତିର ଊର୍ଦ୍ଧ୍ୱରେ ରାଧାଙ୍କର ପ୍ରେମର ସଫଳତାପାଇଁ ନିଜ ସାମର୍ଥ୍ୟ ଦାନ କରି ଚାଲିଛନ୍ତି । ଏଭଳି ପ୍ରେମରେ ମଣିଷ ଊର୍ଦ୍ଧ୍ୱମୁଖୀ ହୁଏ । ସର୍ବସ୍ୱ ତ୍ୟାଗ କରି ମହୀୟାନ ହୋଇଯାଏ । ସମାଜର ବନ୍ଧନକୁ ଅବଲୀଳାକ୍ରମେ ଏଡ଼ାଇଯାଏ । ପ୍ରେମ ହୁଏ ସମର୍ପଣର ଭିନ୍ନ ନାମ । ସେଠି ଦେଣା ପାଉଣାର ହିସାବ ରହେନାହିଁ ପରନ୍ତୁ ଦାନ କରୁଥିବା ବ୍ୟକ୍ତି ନିଜେ ପରିପୂର୍ଣ୍ଣ ହୋଇଯାଉଥାଏ । ରାମାୟଣ 'ଉର୍ମିଳା' ଭଳି ପ୍ରେମରେ ସମର୍ପଣ ହୋଇ ପ୍ରତୀକ୍ଷାକୁ ଜୀବନ ବୋଲି ଗ୍ରହଣ କରିନେଇଥାଏ । ଏଭଳି ଚରିତ୍ରମାନଙ୍କୁ ସମବେଦନାରେ ସିକ୍ତ କରି କବି ପାଠକମାନଙ୍କ ଉଦ୍ଦେଶ୍ୟରେ ପରିବେଷଣ କରିଛନ୍ତି ।

**ବିପ୍ଳବର ମନ୍ଦ୍ରସ୍ୱର :**

ଗଡ଼ନାୟକଙ୍କ କବିତାରେ ସମାଜର ବୈଷମ୍ୟ ବିରୁଦ୍ଧରେ ସ୍ୱର ଶୁଣିବାକୁ ମିଳେ । ବିଦୁଲା, ଯସ୍‌ମା, ସେଦିନ ଓ ଆଜି, କିଂଶୁକ, ଦାରିଦ୍ର୍ୟ, ବନ୍ଦନାପାଇଁ ଦଳୁଛି

ଦୀପାଳି ଜଳୁଛି କାହିଁ, ଗୋଟିଏ ସାପର ଆତ୍ମକଥା ଭଳି କବିତାରେ ବିବର୍ଣ୍ଣର ମନ୍ଦ୍ର ସ୍ୱର ଝଙ୍କୃତ । ଦୁର୍ମୁଖ, ଅପଥଗାମୀ ଓ ମୌସୁମୀ ଭଳି କବିତାରେ ସକଳ ଗତାନୁଗତିକତାକୁ ପରିହାର କରି ନୂତନ ପଥରେ ଯିବାପାଇଁ କବିଚିତ୍ତର ଆଗ୍ରହ ପରିଦୃଷ୍ଟ ହୁଏ । ଶ୍ରୀୟା ଚଣ୍ଡାଲୁଣୀ, ଶ୍ରମଣା, ଗୁହକ, ଏକଲବ୍ୟ, ଶମ୍ବୁକ ପ୍ରଭୃତି ସେହି ସାମାଜିକ ବୈଷମ୍ୟରୁ ସୃଷ୍ଟ ଅନନ୍ୟ ଚରିତ୍ର । ଏହି ଚରିତ୍ରମାନେ ଯୁଗ ଯୁଗ ଧରି ପ୍ରତିଷ୍ଠିତ ସମାଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଆସିଛନ୍ତି । 'ଶାମୁକାର ସ୍ୱପ୍ନ'ର ମୁଖବନ୍ଧରେ – ''ପୃଥିବୀର ନେପଥ୍ୟରେ ବହୁତ ଆତ୍ମା ନିଭୃତରେ ନୀରବରେ ଜୀବନ ସୌରଭ ଦେଉଛନ୍ତି – ଜୀବନ ସଙ୍ଗୀତ ଗାଉଛନ୍ତି । କିନ୍ତୁ ଜଗତରେ ତାଙ୍କ ଦାନର ପ୍ରତିଦାନ ଯୁଗ ଯୁଗ ଧରି ମିଳିନାହିଁ, ମିଳୁନାହିଁ । ତଥାପି ସେଇ ଅବିନଶ୍ୱର, ଅବିସ୍ମରଣୀୟ ଆତ୍ମାର ଅଭିଯାନ ଚାଲିଛି । ସେହି ଅସ୍ୱୀକୃତ ଅଥଚ କ୍ରାନ୍ତିମାନ ଜୀବନର କେତେଗୁଡ଼ିଏ ସ୍ୱପ୍ନ ଶାମୁକାର ସ୍ୱପ୍ନରେ ସନ୍ନିବିଷ୍ଟ ।'' ଯସ୍‌ମା ମାଟିକାମ କରୁଥିବା ଶ୍ରମିକବଧୂ । ତା' କୋଳରେ ସନ୍ତାନ; କିନ୍ତୁ ମାଲିକର ଲୋଲୁପଦୃଷ୍ଟିର ସେ ଦୃଢ଼ ପ୍ରତିବାଦ କରିଛି ।

''ହୀନ ନୁହେଁ ମୁହିଁ ମାଟିଆଣୀ ନିଆଁ ଜଳୁଅଛି ମୋର ପ୍ରାଣେ
ଯିଏ ଛୁଇଁଦେବ ଜଳିଯିବ ସିଏ ମୋହରି ଜୀବନ ମୁହିଁ ଜାଣେ ।'' (ଯସ୍‌ମା)

ଏହି ଉକ୍ତି ଭିତରେ ଆମେ ମୂକ ଶ୍ରମିକ କଣ୍ଠରେ ପ୍ରତିବାଦର ତୀବ୍ର ସ୍ୱର ଶୁଣିପାରୁ । 'ମୌସୁମୀ' କବିତାରୁ ତାଙ୍କର ବିପ୍ଳବୀ କବିଦୃଷ୍ଟିର ବିଶେଷ ପରିଚୟ ମିଳିଥାଏ । ମୌସୁମୀର ରୁଦ୍ରମୂର୍ତ୍ତି ଭୟଙ୍କରନୁହେଁ ବରଂ ମଙ୍ଗଳର ପୂର୍ବାଭାଷ । ଅତୀତର ସକଳ ମାଳିନ୍ୟ ଦୂର କରି ମୌସୁମୀ ଭବିଷ୍ୟତର ଶୁଭ ସଙ୍କେତ ଆଣେ । ସେ ନିଜକୁ ସମରପଥର ଯାତ୍ରୀଭାବରେ ବାରମ୍ବାର ଅଭିହିତ କରିଛନ୍ତି । ଜୀବନସଂଗ୍ରାମରେ ସୈନିକ ତଥା କ୍ରୁଶବିଦ୍ଧ ଯିଶୁଖ୍ରୀଷ୍ଟଭାବରେ ନିଜକୁ ସେ ଉପସ୍ଥାପିତ କରିଛନ୍ତି । 'ବିଦୁଲା' କବିତାରେ ବିଦୁଲା ନିଜ ସନ୍ତାନକୁ କହେ –

''ଜୀବନ ତୋର ଏ ନୁହେଁରେ ପୁତ୍ର ମୃତ୍ୟୁ ତୋର ଏ ସିନା
ବଞ୍ଚିବାର କି ଅଧିକାର ତୋର, ବିନୟ ସାଧନା ବିନା ।''

ଏହାହିଁ ଗଡ଼ନାୟକଙ୍କର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ । ଏଠାରେ ବିପ୍ଳବ ଅଶ୍ରୁ ଓ ଜୀବନକୁ ଗ୍ରହଣ କରିନେବାର ମାନସିକତା ଅଛି । ତେଣୁ 'ଅପଥଗାମୀ' କବିତାରେ ସେ କୁହନ୍ତି –

''ଅପଥେ ମୁଁ ଯିବି ଅପଥେ ମୁଁ ଯିବି
କର ପଛେ ମୋତେ ତିରସ୍କାର

ନେପଥ୍ୟେ ଅଛି ଯେତେ ଯାହା ସବୁ
କରିବି ମୁଁ ତା'ର ଆବିଷ୍କାର
ମଥାପାତି ନେବି ମାନ ଅପମାନ
ବୁକୁ ପାତି ନେବି ଝଞ୍ଜା ତୋଫାନ
ସମୟ ଆସିବ ଯେଉଁଦିନ ତୁମେ
ଯାଚି ଦେବ ମୋତେ ପୁରସ୍କାର ।''

ଏତାଦୃଶ କବିତାରେ ଆଗେ ବିପ୍ଲବୀ କବିଙ୍କର ପରିଚ୍ଛନ୍ନ ଜୀବନ-ଦୃଷ୍ଟି ଦେଖି ମୁଗ୍ଧ ହେଉ ।

**ରହସ୍ୟବାଦ କବି :**

ରହସ୍ୟବାଦ (Mysticism) ପ୍ରତି କବିର ଚିରକାଳ ଆଗ୍ରହ । ଦେହରୁ ବିଦେହ, ଇଚ୍ଛାରୁ ଅଭୀପ୍‌ସା ଦିଗକୁ ତା'ର ଉତ୍ତରଣ । ଏହି ଉତ୍ତରଣର କବିତା ଗଡ଼ନାୟକଙ୍କ କାବ୍ୟଜଗତରେ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । ଯେତେବେଳେ ସ୍ରଷ୍ଟା ଦ୍ରଷ୍ଟାରେ ରୂପାନ୍ତରିତ ହୁଏ, ତା'ର ଚର୍ମଚକ୍ଷୁ ଦିବ୍ୟଚକ୍ଷୁରେ ପରିଣତ ହୁଏ ଓ ସେ ସୃଷ୍ଟି ମଧ୍ୟରେ ଅନ୍ୟ ଏକ ଦିବ୍ୟସତ୍ତା ଲକ୍ଷ୍ୟ କରିପାରେ । ସେହି ପର୍ଯ୍ୟାୟର କବିତାଗୁଡ଼ିକ ହେଉଛି 'ସୂର୍ଯ୍ୟ ଓ ଅନ୍ଧକାର' ସଂକଳନର 'ଡୁବିବି ଏଥର', 'ଶାମୁକାର ସ୍ୱପ୍ନ' ସଂକଳନର ଭୀମଭୋଇ, ପିଙ୍ଗଳାର ଅଭିସାର ପ୍ରଭୃତି । ସମୁଦ୍ରର ପ୍ରଚ୍ଛନ୍ନ ଅନ୍ତରକୁ ସନ୍ଧାନ କରିବାର ଅଭିଳାଷ ନେଇ କବି ସମୁଦ୍ରରେ ବୁଡ଼ିବାପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ମୁକ୍ତା ମିଳୁ ବା ନ ମିଳୁ କବି କିନ୍ତୁ ନିଶ୍ଚୟ ସମୁଦ୍ରରେ ବୁଡ଼ିବେ ଓ ସେ ଅନନ୍ୟ ଅନୁଭୂତିକୁ ବିଜୟୀର ଅନୁଭୂତିଭାବରେ ଗ୍ରହଣ କରିବେ । ପିଙ୍ଗଳାର ଦୈହିକ କାମନା ରାତ୍ରିର ଶେଷ ପ୍ରହରକୁ ଅନ୍ୟ ଏକ ପର୍ଯ୍ୟାୟରେ ପହଞ୍ଚିଛି । ସେ ନିଜ ନାଗରକୁ ଅନ୍ତର ଭିତରେ ପ୍ରତ୍ୟକ୍ଷ କରିବାର କଳା ଶିଖିଛି ଓ ଦିବ୍ୟ ପ୍ରେମର ସ୍ପର୍ଶରେ ପବିତ୍ର ହୋଇଛି । 'ଭୀମଭୋଇ' କବିତାରେ ମହିମା ଗୋସାଇଁଙ୍କଦ୍ୱାରା ଆଦିଷ୍ଟ ହୋଇ ଭୀମଭୋଇ କିଭଳି ଜଗତର ଉଦ୍ଧାରପାଇଁ କାମନା କରିଛନ୍ତି ତାହା ବର୍ଣ୍ଣିତ । ଭୀମଭୋଇଙ୍କ ଦିବ୍ୟଦୃଷ୍ଟିରେ –

''ଅନ୍ତରେ ଦେଖଇ ମୁହିଁ ସୃଷ୍ଟିର ସୌଷ୍ଠବ ବିରାଟ ବିପୁଳ
ଚକ୍ଷୁ ଦେଇ ନାହିଁ ମୁଁ ତ କହିଲେ ଗୋସାଇଁ
ନାହିଁ ସେ ଶକତି, ଚକ୍ଷୁ ପାଇଅଛ ତୁମେ
ଅଲେଖ ପ୍ରଭୁର ସେହି ଆଲୋକ ଅତୁଳ ।'' (ଭୀମଭୋଇ)

ଅନ୍ଧ ଭୀମଭୋଇଙ୍କ ମଧ୍ୟରେ ଏହି ଦିବ୍ୟ ଚେତନା କବି ଗଡ଼ନାୟକଙ୍କ ଲେଖନୀରେ ଅନ୍ତରଙ୍ଗଭାବରେ ରୂପାୟିତ ହୋଇଛି ।

**ସମ୍ବେଦନଶୀଳ କବି :**

କବି ଏ ବିଶ୍ୱ, ପ୍ରକୃତି, ପରିପାର୍ଶ୍ୱର ପରିବେଶ ତଥା ମାନବେତର ଜୀବ ପ୍ରତି ମଧ୍ୟ ସମ୍ବେଦନଶୀଳ । ଏହି ସମ୍ବେଦନଶୀଳତା ଓ ସହାନୁଭୂତିହିଁ ବିଶ୍ୱର ଆଦି ଶ୍ଳୋକ ରଚନାର ହେତୁ ହୋଇଥିଲା । ରୂପହୀନାର ବ୍ୟଥା, ମାଟିର ମଣିଷ, ଉର୍ମିଳା, ଲଳିତା ଭଳି କବିତାରେ ତାଙ୍କର ସମ୍ବେଦନଶୀଳତା ବିକସିତ । କବି ଓ ଶିଳ୍ପୀ କବିତାରେ ସେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ଓ ଶିଳ୍ପୀ ବିମ୍ବାଧର ବର୍ମାଙ୍କ ପ୍ରତି ନିଜର ଆନ୍ତରିକତା ପ୍ରକାଶ କରିଛନ୍ତି ଓ ନିଜର ଅନ୍ତରକୁ ସମ୍ବେଦନାରେ ଆର୍ଦ୍ର କରି ଗାଇଛନ୍ତି –

''ମୋ ଦେଶର ଉପେକ୍ଷିତ ସେଇ କବି ଶିଳ୍ପୀର ଲକ୍ଷ୍ୟରେ
ମୋର ଶ୍ରଦ୍ଧା ମୋ ପ୍ରୀତିର ଢେଉ
ଅମିତାଭ ଅମିତାସୁ ହେଉ ସିକ୍ତ ଏ ଅକ୍ଷରେ
ଦୁହେଁଯାକ ମୋ ଦେଶର କମ୍ର କଳାକାର
ଦୁହେଁ ସମଧର୍ମୀ
ଜଣେ କବି ଲକ୍ଷ୍ମୀକାନ୍ତ ମହାପାତ୍ର
ଆଉ ଜଣେ ଶିଳ୍ପୀ ବି. ବର୍ମା ।''

'ମାଟିର ମଣିଷ' କବିତାର ଏହି କେତୋଟି ପଂକ୍ତି ପ୍ରାୟ ପ୍ରତ୍ୟେକ ସାହିତ୍ୟାନୁରାଗୀ ବ୍ୟକ୍ତି ବାରମ୍ବାର ଆବୃତ୍ତି କରିଥାଆନ୍ତି –

''ଯନ୍ତ୍ର ତତେ ମନ୍ତ୍ର ଦେଇଛି ମାଟିର ମଣିଷ ଆରେ
ମୁଗ୍‌ଧ ତୋହର ଚିର ଗହନେ ଚିହ୍ନିପାରୁନୁ ବାରେ ।''

ଏଠାରେ କବି ମାଟିର ମଣିଷକୁ ତା'ର ସ୍ୱାଭାବିକତା ରକ୍ଷା କରିବାକୁ ଉପଦେଶ ଦେଇଛନ୍ତି । ଯନ୍ତ୍ର ସଭ୍ୟତାର ଚାକଚକ୍ୟରେ ମୁଗ୍‌ଧ ମଣିଷ ନିଜର ସ୍ୱାତନ୍ତ୍ର୍ୟ ଭୁଲିଯାଏ ଓ ଯନ୍ତ୍ର ତାକୁ ଅନ୍ତଃସାରଶୂନ୍ୟ କରିଦିଏ । ଚମ୍ପୂର ଲଳିତାକୁ କବି 'ପ୍ରେମିକାର ଗୁରୁ' ଭାବରେ ସମ୍ମାନିତ କରିଛନ୍ତି । ନିଜସ୍ୱ କୌଣସି ସ୍ୱାର୍ଥ ନଥାଇ ରାଧାକୃଷ୍ଣଙ୍କ ମିଳନପାଇଁ ଲଳିତାର ବ୍ୟାକୁଳତା ସାଧାରଣ ନାରୀର ବ୍ୟାକୁଳତା ନୁହେଁ । ଏଥିରେ ସାଧକର ନିଷ୍ଠା ବିଦ୍ୟମାନ । ସେହିପରି 'ଉର୍ମିଳା' କବିତାରେ ସେ ଉପେକ୍ଷିତା ନାୟିକା ଉର୍ମିଳା ପ୍ରତି ସମ୍ବେଦନଶୀଳ ହୋଇ ଗାଇଛନ୍ତି –

''ଛାୟା ସଂକାଶ ପ୍ରିୟ ସଂଗତେ ଯାଇନାହିଁ ତୁମେ ଗୋଡ଼ାଇ
ପ୍ରିୟତମ ହାତେ ହୃଦୟର ରୁଚି ସରାଗେ ଦେଇଚ ବଢ଼ାଇ

ରମ୍ୟ ରୁଚିର ହର୍ମ୍ୟର ତଳେ, ବିଳାସ-ବିଲୋଳା ସଂଗିନୀ ଦଳେ
କାଳ କାଟିଅଛୁ ବିରହ ଦହନ
ଅନ୍ତର ତଳେ ଜଡ଼ାଇ ।''

କବିଙ୍କର ସମବେଦନା ଉର୍ମିଳା ଚରିତ୍ରକୁ ପୁନର୍ଜୀବନ ପ୍ରଦାନ କରିପାରିଛି । 'ରୂପହୀନାର ବ୍ୟଥା' କବିତାରେ କବି ରୂପହୀନା ନାରୀ ପ୍ରତି ସମବେଦନା ପ୍ରକାଶ କରିଛନ୍ତି ।

## ପ୍ରକୃତିପ୍ରୀତିର କବି :

ପ୍ରକୃତିର ଅଶେଷ ପ୍ରାଣପ୍ରାଚୁର୍ଯ୍ୟ ସାଧାରଣ ମଣିଷକୁ ଭାବୁକ କରିଦିଏ । ତା'ର ବିଶାଳ ପ୍ରକାଶ ଭିତରେ ବିଶ୍ୱଦେବତାର ପରିପ୍ରକାଶ ଘଟେ । କେବେ ପ୍ରକୃତ ହୁଏ ପ୍ରେମିକା । ତା'ର କଟାକ୍ଷରେ ଶତ କଦମ୍ବ ରୋମାଞ୍ଚିତ ହୁଅନ୍ତି । କେବେ ପ୍ରକୃତିର ଦାରୁଣ ଅଭିଶାପ ମଣିଷକୁ ଯନ୍ତ୍ରଣାଜର୍ଜର ମଧ କରେ । ରୋମାଣ୍ଟିକ୍ କବି ଦୃଷ୍ଟିରେ ପ୍ରକୃତି ଓ ନାରୀ ଏକାକାର । 'ପୂର୍ଣ୍ଣିମା ସ୍ପର୍ଶ' କବିତାରେ –

''କିଏ ତୁମେ ସୁନ୍ଦରୀ, କିଏ ତୁମେ ଶୋଭନେ
ଅମୀୟ ଲଗନେ ଆଜି ଆସିଛ ଶୋଭାବନେ
ନୟନେ ବିକଚଲାଜ ବଦନେ ଓଢ଼ଣା ସାଜ
ସିନ୍ଦୂର ଲଲାମେ ଗୋ ଅଳକ୍ତ ଚରଣେ ।''

ଏଠାରେ ପୂର୍ଣ୍ଣିମା ଓ କାବ୍ୟନାୟିକା ଏକୀଭୂତ ହୋଇଯାଇଛନ୍ତି ଓ ରସପିପାସୀ କବି ସେହି ସୌନ୍ଦର୍ଯ୍ୟରେ ମନ୍ତ୍ରମୁଗ୍ଧ ହୋଇଛନ୍ତି । ଅୟି-ପୃଥ୍ୱୀ ଆଉଥରେ କାମଧେନୁ ହୁଅ ଆଜି ତୁମେ । ମାଟିର ମଣିଷ, ବିଦାୟ ହେ ମୋର ମାଟି ପ୍ରଭୃତିରେ ପ୍ରକୃତି ପ୍ରତି ଅଜସ୍ର ମମତାର ସ୍ୱର ଶୁଣାଯାଏ । କନିଅର ଫୁଲ, ବସନ୍ତ ସଖୀ, ତନ୍ମୟୀ ବର୍ଷା, ଚିରନ୍ତନୀ, ପ୍ରଧାନ ପାଟ, ବିଦ୍ରୋହୀ ବସନ୍ତ, ସତକଥା, ଆଷାଢ଼ ମେଘ, ଦେଉଳ ଝର, ଗୋଲାପ ଓ ବୁଲବୁଲ୍, ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ, ଶରତ ନଈର କୂଳେ ଭଳି ଅନେକ କବିତାରେ ପ୍ରକୃତି ପ୍ରତି କବିଙ୍କର ଦୃଷ୍ଟିଭଙ୍ଗୀ ପ୍ରକାଶିତ । କିନ୍ତୁ 'ସତକଥା' କବିତାରେ –

''ମୌସୁମୀ ବାଆ ଏ ବରଷ ପାଣି କଅଣ କଲା ?
ବିଲ ଭରା କରି ବରଷିଲା ନାହିଁ କେବେ ତ ଭଲ
ଆକାଶର ବୁକେ ମାଟିର ଆକୁଳ ପିଆସବାଜି
କିଞ୍ଚିତ ହେଲେ ସଂଚରୁନାହିଁ ବାଦଲ ଆଜି

ମାଟିର ମଣିଷ ଶୂନ୍ୟେ ଚାହିଁ
ବରଷା ପାଉନି ଭରସା ପାଉନି କୁଆଡ଼େ କାହିଁ ।''

ଏହି କବିତାରେ ଭାବପ୍ରବଣତାଠାରୁ ଯୁକ୍ତିସିଦ୍ଧତା ଅଧିକ ଓ ଏହା ଏକ ନିର୍ଦ୍ଦିଷ୍ଟ ସମୟର ଚିତ୍ର ସହଜଭାବରେ ଦେଇପାରିଛି ।

**ପ୍ରତିଭା ପୂଜା ଓ କବି :**

କବି ବିଭିନ୍ନ ସମୟରେ ବିଭିନ୍ନ ପ୍ରତିଭାଧର ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ନିଜର ଶ୍ରଦ୍ଧା ନିବେଦନ କରିଛନ୍ତି । ସେମାନେ ହେଲେ ଜୟଦେବ, ରାଧାନାଥ, ବିଶ୍ୱନାଥ କର, ବିଦ୍ୟାଧର ବର୍ମା, ପ୍ରାଣକୃଷ୍ଣ ସାମଲ, ଗୋପବନ୍ଧୁ, ଦୀନକୃଷ୍ଣ ଦାସ, ଉଦ୍ଧାମ ସିଂହ, ରବୀନ୍ଦ୍ରନାଥ, ବର୍ଣ୍ଣାଡ଼ଶ, ଆଚାର୍ଯ୍ୟ ହରିହର, ଦୀନବନ୍ଧୁ ଆଣ୍ଡ୍ରୁଜ୍, କୁଳବୃଦ୍ଧ ମଧୁସୂଦନ ପ୍ରଭୃତି ସ୍ମରଣୀୟ ବ୍ୟକ୍ତିତ୍ୱ । ରାଧାନାଥ ସାମନ୍ତ ଚନ୍ଦ୍ରଶେଖରଙ୍କ ଉଦ୍ଦେଶ୍ୟରେ ଦିନେ ଲେଖିଥିଲେ –

''ଲକ୍ଷ୍ମୀଙ୍କ ସପତ୍ନୀ ହେବାରୁ ବରଦା
ଦାରିଦ୍ର୍ୟ ତୁମର ସଂଗୀ ହେଲା ସଦା ।''

ଅନୁରୂପ ଭାବରେ କବି ଗଡ଼ନାୟକ 'ବିପ୍ଳବୀ ରାଧାନାଥ' କବିତାରେ ଲେଖିଲେ –

''ବାଣୀ ଶୋହେ ଯହିଁ କମଳାର ତହିଁ ପଡ଼େନାହିଁ ପାଦ ରେଖା
ମନ ଥାଏ ଯହିଁ ସେ ଘର ଦୁଆରେ ଧନ ଦିଏନାହିଁ ଦେଖା ।''

ଏହି ଉକ୍ତି ଭିତରେ କବି ପ୍ରତିଭାଧର ବ୍ୟକ୍ତିମାନଙ୍କର ସାଂସାରିକ ଜୀବନର ବିପର୍ଯ୍ୟୟ ସମ୍ପର୍କରେ ନିଜର ବିଚାର ବ୍ୟକ୍ତ କରିଛନ୍ତି । କେବଳ ପ୍ରତିଭା ପୂଜାରେ କବି ସୀମିତ ରହିନାହାନ୍ତି । 'ପଶୁପକ୍ଷୀର କାବ୍ୟ' ସଂକଳନରେ ସେ ମାନବେତର ପ୍ରାଣୀମାନଙ୍କର ବୈଶିଷ୍ଟ୍ୟ ଓ ମାନବସମାଜପାଇଁ ସେମାନଙ୍କର ବାର୍ତ୍ତାର କଥା ଉଲ୍ଲେଖ କରିଛନ୍ତି । ସିଂହ, ବ୍ୟାଘ୍ର, ସାରମେୟ, ଶଶକ, ଅଶ୍ୱ, ହସ୍ତୀ, ଗାଭୀ, ଗୃଧ୍ର, କ୍ରୌଞ୍ଚ, କପୋତ, ଇଗଲ, ବୁଲ୍‌ବୁଲ୍, ହଥି, ଶୁକ ଓ ବଳାକା ପ୍ରଭୃତି ତାଙ୍କ କବିତାରେ ନୂତନଭାବରେ ରୂପାୟିତ ହୋଇଛନ୍ତି । 'ଶକୁନ୍ତର ଦାନ' କବିତାରେ ଅପ୍‌ସରା କନ୍ୟା ଶକୁନ୍ତଳାର ନାମକରଣ ପଛରେ ଥିବା ଶକୁନ୍ତ ପକ୍ଷୀର ଅବଦାନ କଥା କୁହାଯାଇଛି । ବୌଦ୍ଧ ଜାତକର ଶଶା ଗଳ୍ପ, Oscar Wildeଙ୍କର Rose & Nightingale ଗଳ୍ପ, ବଳରାମ ଦାସଙ୍କର ବଉଳା ଉପାଖ୍ୟାନର ବଉଳା ଓ ମହାବଳ ଗଳ୍ପ, ପଞ୍ଚତନ୍ତ୍ର ଓ ହିତୋପଦେଶ ଅନୁକରଣରେ ଚିତ୍ରଗ୍ରୀବ କପୋତ ଗଳ୍ପ ପ୍ରଭୃତିକୁ ସେ କବିତାରେ

ରୂପାୟିତ କରିଛନ୍ତି । ନୈଷଧ ଓ ହଂସଦୂତ ଅନୁସରଣରେ ହଂସଦୂତ କବିତା ରଚିତ । ରାଣା ପ୍ରତାପଙ୍କ ଅଶ୍ୱ ଚୈତକ ସମ୍ପର୍କୀୟ କବିତା ରଚିତ । ସେହିପରି 'ଶୁଆ ଓ ଦେବଦୂତ' କବିତାର ଉପାଦାନ ମହାଭାରତର ଅନୁଶାସନ ପର୍ବ ଓ ବୌଦ୍ଧ ଜାତକର ମହାଶୁକଜାତକରେ ରହିଛି ବୋଲି ସେ ନିଜେ ଉଲ୍ଲେଖ କରିଛନ୍ତି । 'ପଶୁରାଜ ସିଂହ' କବିତାଟି ଆଣ୍ଡ୍ରୋକ୍ଲିସ୍ ଓ ସିଂହ ଗଳ୍ପର କାବ୍ୟରୂପ, ଏଥିସହିତ ସେ ଚନ୍ଦ୍ର ଲୋକର ପ୍ରଥମଯାତ୍ରୀ ଲାଇକା କୁକୁରପାଇଁ ମଧ କବିତା ରଚନା କରିଛନ୍ତି । ସମ୍ବାଦପତ୍ରର ସ୍ମରଣୀୟ ଘଟଣାମାନଙ୍କୁ ନେଇ ମଧ ସେ ଏକାଧିକ କବିତା ସୃଷ୍ଟି କରିଛନ୍ତି । ଗ୍ରୀକ୍ ପୁରାଣର ଗଳ୍ପ 'ବଳାକା' କବିତାରେ ରୂପ ପାଇଛି । କବି ଗଡ଼ନାୟକ ନିଜର ଅପୂର୍ବ ବସ୍ତୁ ନିର୍ମାଣ କ୍ଷମା ପ୍ରତିଭାର ଉପଯୋଗ କରି ସମକାଳୀନ ଘଟଣାକୁ ସର୍ବକାଳୀନ କରିପାରିଛନ୍ତି । କବିତାରେ ଅନବଦ୍ୟ ଛାନ୍ଦସିକତା କବି ଗଡ଼ନାୟକଙ୍କର ସ୍ୱାତନ୍ତ୍ର୍ୟ, ତେଣୁ ଆବୃତ୍ତିଧର୍ମୀ ଏହି କବିତାଗୁଡ଼ିକର ଆବେଦନ ଅନନ୍ୟ । ଏହି କବିତାଗୁଡ଼ିକର ପ୍ରାଣପ୍ରାଚୁର୍ଯ୍ୟ ମଧ ଈର୍ଷଣୀୟ । କବି ଗଡ଼ନାୟକ ନିଜର ସମୟର ସ୍ୱରକୁ ଧରିରଖିବା ସହିତ ମାନବର ଚିରନ୍ତନ ଦୁଃଖ, ସୁଖ, ଅଶ୍ରୁ ଓ ଆବେଗକୁ ତାଙ୍କ ସାହିତ୍ୟରେ ଏକାକାର କରିଛନ୍ତି । ସବୁ କବିତା ଭିତରେ ସମାଜ ପ୍ରତି ଥିବା ତାଙ୍କର ଅଙ୍ଗୀକାର ସହିତ ଦେଶପ୍ରତି ଥିବା ଆନୁଗତ୍ୟର ସୂକ୍ଷ୍ମସ୍ୱର ଶୁଣିବାକୁ ମିଳେ । ସେହି 'ଅପଥଗାମୀ' କବି କହନ୍ତି –

''ସବୁରି ଲୁହରେ ସବୁରି ଲହୁ
ଅନ୍ତରେ ଆଣି କରଇ ମନୁ
ସେଇତକ ମୋର ବୁକୁର ଥାତି
କବି ହେବାପାଇଁ ବାସନା ମୋର
ଦିବସ ରାତିରେ ଦିବସ ରାତି ।'' (କବି ହେବା ପାଇଁ ବାସନା ମୋର)

ସେହି କବିଙ୍କର ଅଜସ୍ରସ୍ରାବୀ ତଥା ଅମୃତସ୍ରାବୀ ଲେଖନୀ ଓଡ଼ିଆ ସାହିତ୍ୟକୁ ବହୁଭାବରେ ସମୃଦ୍ଧ କରିଛି । ଏହି ସୃଷ୍ଟି ସମ୍ପଦର ଚର୍ଚ୍ଚା/ଆଲୋଚନା ବାରମ୍ବାର ହେବା ଆବଶ୍ୟକ ମନେହୁଏ ।

—

# ଆଧୁନିକ ଓଡ଼ିଆ କବିତା ଅଶ୍ଳୀଳ କି ?

କବିତା ଭାବରାଜ୍ୟର ରାଣୀ । ସାହିତ୍ୟଜଗତର ସର୍ବଶ୍ରେଷ୍ଠ ରୂପ ହେଉଛି କବିତା । ମନୁଷ୍ୟର ସମସ୍ତ ଆବେଗ, ଆନ୍ତରିକତା, କ୍ଷୋଭ, ଚିତ୍ତଚାଞ୍ଚଲ୍ୟ, ବିଦ୍ରୋହ ତଥା ସମର୍ପଣର ପରିଚ୍ଛନ୍ନ ପରିବେଷଣ ଏଥିରେ ସମ୍ଭବ । ସୌକୁମାର୍ଯ୍ୟ ଏହାର ବିଶେଷତ୍ୱ । ସାଂଗିତିକତା ବା ଆବୃତ୍ତିଧର୍ମିତାକୁ ନେଇ ଏହା ଗଦ୍ୟଠାରୁ ସ୍ୱତନ୍ତ୍ର ।

ଯୁଗ ଯୁଗ ଧରି କବିତା ରସିକ ତଥା ପଣ୍ଡିତ ଗ୍ରାହକ ଖୋଜିଥାଏ । ଗୋଟିଏ କଥାରେ କହିଲେ 'ଚିହ୍ନରା ଗରାଖ' ହିଁ ସାହିତ୍ୟିକର ବଂଧୁ । ଦୁଃଖ ବାଣ୍ଟିବାକୁ ଓ ସୁଖର ଭାବନାକୁ ଏକାଠି ଅନୁଭବ କରିବାକୁ କବିତାକୁ ଦରଦୀ ପାଠକଟିଏପାଇଁ ଅପେକ୍ଷା କରିବାକୁ ପଡ଼ିଥାଏ । ମିଳିଲେ ସେ ଧନ୍ୟ ହୁଏ ନଚେତ୍ ଅହଲ୍ୟାର ଭାଗ୍ୟକୁ ଆଦରି ଯୁଗ ପରେ ଯୁଗ ଅପେକ୍ଷା କରେ ମର୍ଯ୍ୟାଦାପୁରୁଷୋତ୍ତମ ରାମଚନ୍ଦ୍ରଙ୍କର ପବିତ୍ର ପଦସ୍ପର୍ଶ ଲାଗି ।

ଯୁଗର ଅନୁସାରୀ ହୋଇ କବିତାର ମାର୍ଗ ପରିବର୍ତ୍ତନ ହୋଇଛି । ଛନ୍ଦ ଓ ରାଗରେ ବିନ୍ୟସ୍ତ କବିତା ହୋଇଛି ସ୍ୱଚ୍ଛଳ ଗଦ୍ୟ-କବିତା । ବହିର୍ଦୃଷ୍ଟିର ବିସ୍ତାର ଅନ୍ତର୍ଦୃଷ୍ଟିରୁ ଗାମ୍ଭୀର୍ଯ୍ୟରେ ପର୍ଯ୍ୟବସିତ ହୋଇଛି କିନ୍ତୁ ରସସୃଷ୍ଟିର କ୍ଷମତାରେ ତାହା ଚିରନ୍ତନତ୍ୱ ରକ୍ଷା କରିଛି । ରସକୁ 'ବ୍ରହ୍ମାନନ୍ଦ ସହୋଦର' କୁହାଯାଏ । ସର୍ବଦା କ'ଣ ରସ ବ୍ରହ୍ମାନନ୍ଦ ବା ବ୍ରହ୍ମାସ୍ୱାଦ ସହୋଦରଭାବରେ ନିଜର ବୈଶିଷ୍ଟ୍ୟ ରକ୍ଷା କରିପାରିଛି କି ? କେଉଁଠି କେଉଁଠି ରସକୁ କେବଳ ଅବସରବିନୋଦନର ସାଧନଭାବରେ ପ୍ରୟୋଗ କରାଯିବାର ଉଦାହରଣ ଯଥେଷ୍ଟ । ଈଶ୍ୱରଙ୍କୁ ସକଳ ରସର ଆଧାର କୁହାଯାଏ । 'ରସୋ ବୈ ସଃ' ଅର୍ଥାତ ଈଶ୍ୱରହିଁ ରସ । ରୀତିକାଳୀନ କାବ୍ୟରେ ଈଶ୍ୱର ତ ନାରୀର ବିଭିନ୍ନ ଅଙ୍ଗର ଉପମାଭାବରେ ବ୍ୟବହୃତ ।

ରୀତିକାଳୀନ କାବ୍ୟରେ ଯଥେଷ୍ଟ ଶୃଙ୍ଗାରିକତା ଥିଲା । ରାଧାକୃଷ୍ଣଙ୍କ ସମ୍ପର୍କକୁ ନେଇ ଯେଉଁ କାବ୍ୟକବିତା ରଚିତ ହେଉଥିଲା ତହିଁରେ ବର୍ଣ୍ଣିତ ଶୃଙ୍ଗାର ରସକୁ ଅପ୍ରାକୃତ ବୋଲି 'ଉଜ୍ଜ୍ୱଳରସ' ନାମରେ ଅଭିହିତ କରାଯାଉଥିଲା । କାଳ୍ପନିକ କାବ୍ୟ ଶୃଙ୍ଖଳାରେ ରଚିତ କାବ୍ୟମାନଙ୍କରେ ନାୟିକାର ଯୌବନ ପ୍ରାପ୍ତିଠାରୁ କେଳିଗୃହର ବର୍ଣ୍ଣନା ପର୍ଯ୍ୟନ୍ତ ନିପୁଣତାର ସହିତ ଚିତ୍ରିତ ହେଉଥିଲା । ଏପରିକି ସମ୍ଭୋଗ ଶୃଙ୍ଗାରର ବିଶଦ୍ ବର୍ଣ୍ଣନା ରୀତି ସାହିତ୍ୟର ପରିସରଭୁକ୍ତ ଥିଲା । କବି ଜୟଦେବଙ୍କର 'ଗୀତଗୋବିନ୍ଦ'ରେ ମଧ୍ୟ ଏତାଦୃଶ ବର୍ଣ୍ଣନା ଦେଖାଯାଏ ।

ସାହିତ୍ୟରେ ଅଶ୍ଳୀଳତା ସମ୍ପର୍କରେ ଅନେକ ମତଭେଦ ଦେଖାଯାଏ । ଶିଳ୍ପ ବିପ୍ଲବ ପରେ ଏହି ଅଶ୍ଳୀଳତା ଏକ ସାହିତ୍ୟିକ ଆଭିମୁଖ୍ୟରେ ପରିଣତ ହୋଇଥିଲା । ବାସ୍ତବତାବାଦର ପ୍ରବର୍ତ୍ତକ ଏମିଲି ଜୋଲାଙ୍କ 'ନାନା', ଡି.ଏଚ୍.ଲରେନ୍ସଙ୍କର 'ଲେଡ଼ି ଚାଟର୍ଲିଜ ଲଭର', ଭ୍ଲାମିଦିର ନବୋକୋଭାଙ୍କ 'ଲୋଲିତା', ହେନେରି ମିଲର୍ଙ୍କର 'ଟ୍ରପିକ୍ ଅଫ୍ କ୍ୟାନସର' ପ୍ରଭୃତି ଏହିମତର ଯଥାର୍ଥତା ପ୍ରତିପାଦନ କରିଥାଏ । କିନ୍ତୁ ଏହି ପ୍ରତିଭାଶାଳୀ ଲେଖକମାନେ ଯୌନତାକୁ ଅଶ୍ଳୀଳତା ବୋଲି ଗ୍ରହଣ କରିନାହାନ୍ତି । ଆହାର, ନିଦ୍ରା, ଭୟ ଭଳି ମୈଥୁନକୁ ଏକ ସ୍ୱାଭାବିକତାଭାବରେ ଗ୍ରହଣ କରି ନେଇଛନ୍ତି । କିନ୍ତୁ ଏହି ସ୍ରଷ୍ଟାପୁରୁଷମାନଙ୍କୁ ସାଂସ୍କୃତିକ ଅବକ୍ଷୟର ପ୍ରତୀକଭାବରେ ହିଁ ଗ୍ରହଣ କରାଯାଇଛି । "Art for arts sake' ନାମରେ ଅନେକ ଅଶ୍ଳୀଳତାକୁ ସାହିତ୍ୟର ପରିସରଭୁକ୍ତ କରାଯାଇଛି । ସିନେମାର ଅଶ୍ଳୀଳ ପୋଷ୍ଟର କାନ୍ଥବାଡ଼ରେ ଦେଖି ଆମେ ନାକଟେକୁ । କିନ୍ତୁ କୋଣାର୍କର ମିଥୁନ ଚିତ୍ରକୁ ଆର୍ଟଭାବରେ ମୁକ୍ତକଣ୍ଠରେ ପ୍ରଶଂସା କରୁ । ନିଜର ସଂସ୍କୃତି ପ୍ରେମର ପରିଚୟ ଦେବାକୁ ବିଦେଶୀ ବଂଧୁମାନଙ୍କୁ ସାଥିରେ ଧରି ବାରମ୍ବାର କୋଣାର୍କ ଧାଇଁଯାଉ ।

''ଧୀର ସମୀରେ ଯମୁନାତୀରେ ବସତି ବନେ ବନମାଳୀ
ପୀନ ପୟୋଧର ପରିସରମର୍ଦ୍ଦନ ଚଞ୍ଚଳ କରଯୁଗଶାଳୀ ।''

ଗୀତଗୋବିନ୍ଦର ଏହି ଶ୍ଳୋକ ଗାଇ ଆମେ ଭକ୍ତିଗଦ୍‌ଗଦ ହୋଇଯାଉ । କିନ୍ତୁ ସର୍ବସାଧାରଣ ସ୍ଥାନରେ ବା ବସ୍‌ରେ ''ତୁ ମୋର ପାଉଁରୁଟି, ମୁଁ ତୋ ବନାନା'' ଗୀତ ଶୁଣି ବିରକ୍ତରେ କାନ ବୁଜିଦେଉ, କୁଆଡ଼େ ଗଲା ସବୁ ଶାଳୀନତା ।

ଶ୍ଳୀଳତା ଏକ ଦ୍ରବ୍ୟ ନୁହେଁ, ଏକ ଅନୁଭବ – ଯାହା ସ୍ଥାନ, କାଳ, ପାତ୍ରରେ ବଦଳିଯାଏ । ଦିନ ଥିଲା ଆମ ମାଆ ମାଉସୀମାନେ ହାତେ ଲମ୍ବର ଓଢ଼ଣା ପକାଇ ନଇଁ ନଇଁ ଚାଲୁଥିଲେ । ଆଜି ଆମେ ହାତକଟା ଆଣ୍ଠୁ ନଲୁଚୁଥିବା ପୋଷାକ ପିନ୍ଧି ରାସ୍ତାରେ ନିର୍ବିକାରରେ ଚାଲୁଛୁ । ଏହା କ'ଣ ପ୍ରଚଳିତ ମୂଲ୍ୟବୋଧର ଏକ ସୁନ୍ଦର ଉଦାହରଣ ନୁହେଁ କି ? ଶିଶୁ ନଗ୍ନ ହେଲେ ମଧ୍ୟ ଅଶେଷ ନିଷ୍ପାପ ସୌନ୍ଦର୍ଯ୍ୟର ଅଧିକାରୀ । ଦାମ୍ପତ୍ୟ ଜୀବନରେ 'ସେକ୍‌ସ'ର ଏକ ନିର୍ଦ୍ଦିଷ୍ଟ ସ୍ଥାନ ରହିଛି ଏକଥା ସ୍ୱୀକାର କରିବାରେ ଲଜ୍ୟା ନାହିଁ ବରଂ ଗୌରବ ଅଛି । କିନ୍ତୁ ସ୍ଥାନ ଭେଦରେ ତାହା ଧର୍ଷଣର ରୂପ ନେଉଛି ଓ ସାମାଜିକ ମର୍ଯ୍ୟାଦା ହାନି ହେଉଛି । ତେବେ ଅଶ୍ଳୀଳତା ଏକ ମନୋବୃତ୍ତି ଯାହା ପ୍ରବୃତ୍ତିଦ୍ୱାରା ପରିଚାଳିତ ।

କବିତାରେ ଅଶ୍ଳୀଳତା ଚିରଦିନ ଥିଲା, ରହିଛି ଓ ରହିବ । କିନ୍ତୁ କବିତା ଭଳି ଏକ ସୂକ୍ଷ୍ମ ତଥା ଆବେଗପୂର୍ଣ୍ଣ ଆଲେଖ୍ୟ ମଧ୍ୟରୁ ଅଶ୍ଳୀଳତାର ଶତକଡ଼ା ହିସାବ ଖୋଜିବା ମଧ୍ୟ ସ୍ପୃହଣୀୟ ନୁହେଁ । ମନୋବିଶ୍ଳେଷଣ ନାମରେ ଫ୍ରୟେଡୀୟ ତତ୍ତ୍ୱକୁ

ବେଳେ ବେଳେ କବିତାରେ ବ୍ୟବହାର କରାଯାଉଛି ଯାହାକି କବିତାକୁ ଅଶ୍ଳୀଳତାପୂର୍ଣ୍ଣ କରିଦେଉଛି । ସାହିତ୍ୟ ସମାଜ ଜୀବନକୁ ପ୍ରଭାବିତ କରିବାର ଅଖଣ୍ଡ କ୍ଷମତା ରଖୁଥିବାରୁ ଅଶ୍ଳୀଳ ବର୍ଣ୍ଣନା ଆମ ସମାଜ ଜୀବନକୁ କଳୁଷିତ କରିଦେବା ସମ୍ଭବ, ଏଭଳି ଧାରଣା ମନକୁ ଆସେ । ତେଣୁ ଏଭଳି ଲେଖାକୁ ନିରୁତ୍ସାହିତ କରିବାପାଇଁ ସାହିତ୍ୟ ବିରୁଦ୍ଧରେ ରାଷ୍ଟ୍ରୀୟ କ୍ଷମତା ବ୍ୟବହାର କରାଯାଉଛି ।

ମନୁଷ୍ୟର ପ୍ରବୃତ୍ତି ଅଶ୍ଳୀଳତାଦ୍ୱାରା ପରିଚାଳିତ । ତେଣୁ ଅଶ୍ଳୀଳତା ପ୍ରତି ତା'ର ଆଗ୍ରହ ରହିବା ସ୍ୱାଭାବିକ । ସାମାଜିକତା ଓ ବିବେକକୁ ଗୁରୁତ୍ୱ ଦେଇ ଶିକ୍ଷିତ ମଣିଷ ସୁସ୍ଥ ସୁନ୍ଦର ସାହିତ୍ୟ ସୃଷ୍ଟି କରିବାକୁ ଚାହେଁ । କିନ୍ତୁ ସିନେମାର 'A' ଚିହ୍ନ ଦେଖି କିଶୋର କିଶୋରୀହିଁ ଅଧିକ ଆକର୍ଷିତ ହୁଅନ୍ତି । ଫଳରେ ସାମାଜିକ ଜୀବନର ଶୃଙ୍ଖଳା ନଷ୍ଟ ହୁଏ । ବୟସ୍କମାନେ ମଧ୍ୟ ନିଜ ନିଜ ପରିସରରେ ଅଶ୍ଳୀଳ କଥା କହି ବା ଅଶ୍ଳୀଳ ମନ୍ତବ୍ୟ ଦେଇ ଆନନ୍ଦ ପାଉଥିବା ଦେଖାଯାଏ । ସେନ୍‌ସର୍ ବୋର୍ଡ଼ର କଇଁଚିକୁ ଏଡ଼ାଇ ସିନେମାରେ ଖଞ୍ଜି ଦିଆଯାଏ ଯୌନୋଦ୍ଦୀପକ ଦୃଶ୍ୟ କେତୋଟି ।- ପରିବେଷକଙ୍କର ବାଣିଜ୍ୟ ଦ୍ରୁତଗତିରେ ବଢ଼ିଚାଲେ ସତ କିନ୍ତୁ କେତୋଟି କିଶୋରଙ୍କର ଭବିଷ୍ୟତ ଅନ୍ଧାର ହୋଇଯାଏ ତା'ର ହିସାବ କିଏ ରଖେ ?

ଆଧୁନିକ କବିତାରେ ଅଶ୍ଳୀଳତା ସମ୍ପର୍କରେ ଆଲୋଚନା କରିବାବେଳେ ମନକୁ ଆସେ ଆଧୁନିକ ଗଳ୍ପ, ଉପନ୍ୟାସ, ସ୍ଥାପତ୍ୟ, ଚାରୁକଳା ଏସବୁ କ'ଣ ଅଶ୍ଳୀଳ ନୁହେଁ ବା କେବଳ କବିତାହିଁ ଏଭଳି ଦୋଷଦୁଷ୍ଟ ? ତେଣୁ ମୁଁ ଭାବୁଛି କଳାର ଅବବୋଧ ପାଇଁ କଳାତ୍ମକ ମନଟିଏ ଦରକାର ବା ଆମେ ସାଧାରଣ ଦର୍ଶକ କଳାର ବକ୍ତବ୍ୟ ବୁଝିପାରୁନାହୁଁ । କିନ୍ତୁ କବିତାକୁ ସମସ୍ତେ ଊଣାଅଧିକେ ବୁଝନ୍ତି । ତେଣୁ ଭଲ ବା ଖରାପ ଏଭଳି ମନ୍ତବ୍ୟମାନ କବିତାକୁହିଁ ସହଜରେ ମିଳିଥାଏ । ସମସ୍ତ ଶ୍ରେଣୀର ପାଠକଙ୍କୁ ଆକୃଷ୍ଟ କରୁଥିବା ଏହି ସାହିତ୍ୟିକ ବିଭାଗରେ ଅଶ୍ଳୀଳତା କାହିଁକି ଆସେ ? ଏ ସମ୍ପର୍କରେ ମଧ୍ୟ ବିଭିନ୍ନ ଯୁକ୍ତି କରାଯାଇପାରେ ।

ବେଳେ ବେଳେ କବି ବା ସାହିତ୍ୟିକ ନିଜକୁ ଅଶ୍ଳୀଳ ମନେହେଉଥିବା ଶବ୍ଦଟିଏ ଇଚ୍ଛାକରି କବିତାରେ ଖଞ୍ଜିଦିଏ । ସେହି ଶବ୍ଦଟିକୁ ଉଠାଇଦେଲେ ମଧ୍ୟ କବିତାର ବିଶେଷ କିଛି କ୍ଷତି ହୁଅନ୍ତା ନାହିଁ । ବରଂ ଅନ୍ୟଭାବରେ ପ୍ରକାଶ ପାଇଲେ ତା'ର ମର୍ଯ୍ୟାଦା ବୃଦ୍ଧି ହୁଅନ୍ତା ଏଭଳି ଆଶା କରାଯାଇପାରେ । କିନ୍ତୁ ତାହା ହେଉନାହିଁ । କବିତାରେ ଗାନଯୋଗ୍ୟତା ସିନା ଏବେ ପରିତ୍ୟକ୍ତ କିନ୍ତୁ ଆବୃତ୍ତି ଧର୍ମିତା ? ଯଦି ଆବୃତ୍ତି କରିବାବେଳେ କେହି ଲଜ୍ୟାକର ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି ତାହା କବିତାର ଗୌରବ ନୁହେଁ ବରଂ ଲଜ୍ୟାର ବିଷୟ ।

କେତେକ ଅଶ୍ଳୀଳ ଶବ୍ଦ, ଉପମା, ରୂପକଳ୍ପ ମାଧ୍ୟମରେ କବିତାରେ ଭାବ ପ୍ରକାଶିତ ହେଉଛି । ଯଦି ଶବ୍ଦକୁ ବ୍ରହ୍ମ ମନେକରାଯାଏ ତେବେ ଶବ୍ଦ ପ୍ରୟୋଗରେ

ଯଥେଚ୍ଛାଚାର ସର୍ବାଦୌ ନିନ୍ଦନୀୟ । ଯଦି ଶବ୍ଦ ସହିତ ଅର୍ଥର ପାର୍ବତୀ ପରମେଶ୍ୱରଙ୍କ ସମ୍ପର୍କ ମନେକରାଯାଏ, ତେବେ ଶବ୍ଦର ଔଜ୍ଜ୍ୱଲ୍ୟ ଓ କାନ୍ତି ରହିବା ଆବଶ୍ୟକ । ଯଦି ଶବ୍ଦ ବିଚାର ବିନିମୟର ସାଧନ ହୁଏ, ତେବେ ତହିଁରେ ଶାଳୀନତା ରହିବା ଉଚିତ । ସାହିତ୍ୟର ଏକ ସାମାଜିକ ଅଙ୍ଗୀକାର ରହିଛି । ଏ ଅଲିଖିତ ନିୟମକୁ ସ୍ୱୀକାର କଲେ ହିଁ ସାହିତ୍ୟର ପରିସର ପ୍ରଦୂଷଣମୁକ୍ତ ହୋଇପାରିବ ।

ଅଶ୍ଳୀଳତା କିଭଳି ସାହିତ୍ୟ ଭିତରକୁ ଆସେ ସେ ସମ୍ପର୍କରେ କେତୋଟି ନିଜସ୍ୱ ମତ ଉଲ୍ଲେଖ କରୁଛି ।

(କ) କେତେକ ସ୍ୱନାମଧନ୍ୟ ସ୍ରଷ୍ଟାପୁରୁଷ ଚେତନାର ଉର୍ଦ୍ଧ୍ୱସ୍ତରକୁ ଯାଇ ସ୍ୱାଭାବିକ ଭାବରେ ଏଭଳି ପ୍ରୟୋଗ କରିଥାଆନ୍ତି ଯାହା ଆମ ସାଧାରଣ ଦୃଷ୍ଟିରେ ଅଶ୍ଳୀଳବୋଧ ହୁଏ ।

(ଖ) କବିତାକୁ ସାମାଜିକ ଉଦ୍ଦେଶ୍ୟ ସାଧନଭାବରେ ବିଚାର ନକରି କେତେକ ନୂତନ ସ୍ରଷ୍ଟା ଇଚ୍ଛା କରି ଅଶ୍ଳୀଳ ଶବ୍ଦ ଯୋଡ଼ିଦିଅନ୍ତି ଓ ନିଜେ ଆମୋଦିତ ହୁଅନ୍ତି । ଅବଶ୍ୟ ଯୁବସ୍ରଷ୍ଟାମାନେ ଯେ ଉଚ୍ଚକୋଟୀର ପ୍ରତିଶ୍ରୁତିପୂର୍ଣ୍ଣ କବିତା ନ ଲେଖୁଛନ୍ତି ତା ମୁଁ କହୁନି, ବେଳେ ବେଳେ ଏଭଳି ତ୍ରୁଟି ବୟସ୍କମାନଙ୍କୁ ମଧ୍ୟ ଆକ୍ରାନ୍ତ କରୁଛି ।

(ଗ) କେତେକ ସ୍ଥଳରେ କେବଳ ହଟଚମଟ ବା ଚମତ୍କାରିତା ସୃଷ୍ଟିପାଇଁ ଏଭଳି ଅଶାଳୀନ ଶବ୍ଦ ପ୍ରୟୋଗ ମଧ୍ୟ ହେଉଛି ।

(ଘ) ଯେଉଁଠି ଅଶ୍ଳୀଳତାର ସ୍ୱାଭାବିକ ପ୍ରୟୋଗ ଘଟୁଛି ସେଠାରେ ତାହା ଆହୁରି ସ୍ୱାଭାବିକଭାବରେ ମଧ୍ୟ ପାଠକଦ୍ୱାରା ଗୃହୀତ ହୋଇଯାଉଛି ।

ମନେରଖିବାକୁ ହେବ ଆମ ସମାଜ ଆଜି ମଧ୍ୟ 'ଅଚ୍ଛୁ' ଶକ୍ତିଦ୍ୱାରା ପରିଚାଳିତ । ଅଶ୍ଳୀଳ ଶବ୍ଦଟିଏ ପ୍ରୟୋଗ କରିଦେଲେ ସମାଜର ରକ୍ଷଣଶୀଳ ମନୋଭାବର ବିଶେଷ ପରିବର୍ତ୍ତନ ଘଟେନାହିଁ । ଏଥିପାଇଁ ଚେତନା ସ୍ତରରେ ପରିବର୍ତ୍ତନ ଆବଶ୍ୟକ ।

ଯଦି ସାଧାରଣଭାବରେ କବିତାଟିଏ ନିଜର ଭାବାନୁଭୂତିକୁ ସଂଚରଣକ୍ଷମ କରିପାରେ ସେଠାକୁ ଅଶ୍ଳୀଳତା ଆସିବା ଉଚିତ ନୁହେଁ । କାରଣ କବିତା ମଣିଷର ବଂଧୁ, ଗୁରୁଜନ, ଦିଗ୍‌ଦର୍ଶକ ତଥା ଦାର୍ଶନିକ । ଏତେ ସମ୍ମାନର ଅଧିକାରୀ କବିତା ମଣିଷର ଚେତନାକୁ ଉର୍ଦ୍ଧ୍ୱମୁଖୀ କରାଇବାପାଇଁ ପ୍ରତିଶ୍ରୁତିବଦ୍ଧ ହେବା ଆବଶ୍ୟକ । କବିତା କବିର ବ୍ୟକ୍ତିଗତ ସଂପତ୍ତି ନୁହେଁ, ତାହା ଗୋଟିଏ ସମାଜର ସମ୍ପତ୍ତି ଓ ଗୋଟିଏ ସମୟର ପ୍ରତିନିଧି । ଯଦି ଅଶ୍ଳୀଳତା ନଆସି ତହିଁରେ ଭାବପ୍ରକାଶରେ ସ୍ୱତଃସ୍ଫୂର୍ତ୍ତତା ରହିପାରେ, ତେବେ ମନ୍ଦ କ'ଣ ?

—

# ବିଶ୍ୱାସର ଦର୍ପଣରେ ସମୟର ମୁହଁ

''କବୀ କୁନ୍ତଳାକୁମାରୀ ଓଡ଼ିଶାର ଗର୍ବ ଓ ଗୌରବ । ବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଜନ୍ମଲାଭ କରିଥିବା ଏହି ପ୍ରତିଭା ଓଡ଼ିଆ ସାହିତ୍ୟକୁ ଯଥେଷ୍ଟ ମର୍ଯ୍ୟାଦାବନ୍ତ କରିପାରିଛନ୍ତି । ତାଙ୍କର ବ୍ୟକ୍ତିତ୍ୱ ଓ କୃତିତ୍ୱ ସେ ସମୟପାଇଁ କେବଳ ବିସ୍ମୟକର ନଥିଲା; ଆଜି ବିଂଶ ଶତକର ଅନ୍ତିମ ପାଦରେ ବି ଆଶ୍ଚର୍ଯ୍ୟଜନକ ହୋଇ ରହିଛି । ତାଙ୍କର ସେହି ଅନମନୀୟ ସ୍ୱତନ୍ତ୍ର କବିସତ୍ତା ପ୍ରତି ଶ୍ରଦ୍ଧା ଓ ନିବେଦନ ଏହି କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।''

**ବାଲ୍ୟକାଳ :**

୧୯୦୦ ଫେବୃୟାରୀ ୮ ତାରିଖରେ ମଧ୍ୟପ୍ରଦେଶର ବସ୍ତର ଷ୍ଟେଟ୍‌ର ଜଗଦଳପୁରରେ କୁନ୍ତଳା ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜେଜେବାପା ପରିବା ବ୍ୟବସାୟୀ ଶ୍ୟାମରନ୍ ଅନିଚ୍ଛାସତ୍ତ୍ୱେ ତୁବନ ବିଧିରେ ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିଥିଲେ । ଶ୍ୟାମରନ୍‌ଙ୍କ ପୈତୃକ ଗୃହ ଥିଲା ପୁରୀ ଜିଲ୍ଲା କୁଣ୍ଢେଇବେଣ୍ଟ ସାହି । ପାଦ୍ରୀମାନେ ଶ୍ୟାମରନ୍‌ଙ୍କ ବିବାହ ସାଧବୀ ନାମ୍ନୀ କନ୍ୟାଙ୍କ ସହିତ କରାଇଥିଲେ । ଯାହାଙ୍କର ପିତା ପୂର୍ବରୁ ଖ୍ରୀଷ୍ଟିଆନ୍ ହୋଇସାରିଥିଲେ । କୁନ୍ତଳାଙ୍କ ପିତା ଦାନିୟେଲ୍ ସାବତ୍ ଏହି ଶ୍ୟାମରନ୍ ଓ ସାଧବୀଙ୍କ ସନ୍ତାନ । ଦାନିୟେଲ୍ ସାବତ୍ 'ଏଣ୍ଟ୍ରାନ୍ସ' ପାସ୍ କରିବା ପରେ ଡାକ୍ତରୀ ପାଠ ପଢ଼ିଥିଲେ ଓ ଜଗଦଳପୁରରେ ଚାକିରି କରୁଥିଲେ । ତାଙ୍କର ବିବାହ ହୋଇଥିଲା ମନିକାଙ୍କ ସହିତ ଯେ କି ଖ୍ରୀଷ୍ଟିଆନ୍ ପରିବାରର କନ୍ୟା ଥିଲେ । କୁନ୍ତଳାଙ୍କ ପିତାଙ୍କର କୁନ୍ତଳା, ସରଳା, ପ୍ରଫୁଲ୍ଲା ନାମ୍ନୀ ତିନିକନ୍ୟା ଓ ସାମୁଏଲ୍, ନିଥାନିୟେଲ୍ ନାମକ ଦୁଇ ପୁତ୍ରସନ୍ତାନ ଜାତ ହୋଇଥିଲେ । ସେମାନଙ୍କର ବାଲ୍ୟକାଳ ବର୍ମାରେ ଅତିବାହିତ ହୋଇଥିଲା ।

**ବ୍ୟକ୍ତିତ୍ୱ :**

ହିନ୍ଦୀରେ ପହିଲି କଥା କହିବାକୁ ଆରମ୍ଭ କରିଥିବା କୁନ୍ତଳା ୧୩ ବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ସଂସ୍ପର୍ଶରେ ଆସିନଥିଲେ । କିନ୍ତୁ ବର୍ମୀୟ ମହିଳାଙ୍କ ଦୃଢ଼ତା ତାଙ୍କୁ ବହୁଭାବରେ ଅନୁପ୍ରାଣିତ କରିଥିଲା । ସେ ଛୋଟ ଛୋଟ ଅବିଚାରକୁ ମଧ୍ୟ ସହ୍ୟ କରିପାରୁନଥିଲେ ଓ ଦୃଢ଼ଭାବରେ ନିଜର ମତପ୍ରକାଶ କରୁଥିଲେ । ସେ ବେଶି ସମୟ ନିର୍ଜନରେ ଏକାକୀ ବସିବାକୁ ଭଲପାଉଥିଲେ । ଯିଶୁଙ୍କ ଭଜନଗୁଡ଼ିକ ସେ ସ୍ୱରକରି

ଗାନ କରୁଥିଲେ ଓ ସମସ୍ତଙ୍କୁ ମୁଗ୍ଧ କରିପାରୁଥିଲେ । ସ୍ୱଭାବରେ ସେ ଧୀର ଓ ନମ୍ର ଥିଲେହେଁ ଥିଲେ ନିର୍ଭୀକ ଓ ସ୍ପଷ୍ଟବାଦୀ ।

**ଶିକ୍ଷା :**

ପିତାଙ୍କଠାରୁ ଇଂରାଜୀ ଓ ମାତାଙ୍କଠାରୁ ଓଡ଼ିଆ ଶିକ୍ଷା କରିଥିବା କୁନ୍ତଳା ୧୯୧୫ରେ ନିଜ ଭାଇଭଉଣୀ ଓ ମାଆଙ୍କ ସହିତ ଖୋର୍ଦ୍ଧା ଚାଲିଆସିଥିଲେ । ପିତା ଦାନିଏଲ୍ ମନିକାଙ୍କ ସାନଭଉଣୀଙ୍କୁ ବିବାହ କରିବା ପରେ କୁନ୍ତଳାଙ୍କ ଜନନୀ ଏତାଦୃଶ ପଦକ୍ଷେପ ନେଇଥିଲେ । ସେ ହିନ୍ଦୁ ବାଳିକାମାନଙ୍କ ସଂସ୍ପର୍ଶରେ ଆସି ତାଙ୍କର ସାରଲ୍ୟ ଓ ନମ୍ରତାଦ୍ୱାରା ପ୍ରଭାବିତ ହୋଇଥିଲେ । ୧୯୧୭ରେ କଟକର କେଶରପୁରରେ ରହୁଥିବା ଜଣେ ଆତ୍ମୀୟଙ୍କ ଘରେ ରହି ସେ ରେଭେନ୍ସା ଗାର୍ଲସ୍କୁଲରେ ପାଠ ପଢ଼ିଲେ । ୧୯୧୮ରେ ମେଡ଼ିକାଲ ସ୍କୁଲରେ ପଢ଼ିବାପାଇଁ ରେଭେନ୍ସା ଗାର୍ଲ ସ୍କୁଲରୁ ବିଦାୟ ନେବାଦିନ ସେ ସ୍ୱରଚିତ କବିତା ଗାନ କରି ସମସ୍ତଙ୍କୁ ଚମତ୍କୃତ କରିଥିଲେ । ୧୯୨୧ରେ ସେ ବିହାର-ଓଡ଼ିଶା ମେଡ଼ିକାଲ ବୋର୍ଡ଼ ପରୀକ୍ଷାରେ ସର୍ବାଧିକ ନମ୍ବର ରଖି ସ୍ୱର୍ଣ୍ଣପଦକ ବିଜୟିନୀ ହୋଇଥିଲେ । ଡାକ୍ତରୀ ପେଶାପାଇଁ ସେ ଦିଲ୍ଲୀରେ ମଧ୍ୟ ଅବସ୍ଥାନ କରିଥିଲେ । ତତ୍କାଳୀନ ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ତାଙ୍କର ପରିଚୟ ଥିଲା ଓ ଡାକ୍ତରଭାବରେ ତାଙ୍କର ବହୁ ସୁନାମ ଥିଲା । ନିଜ ଚେଷ୍ଟାରେ ସେ ଏକାଧିକ ଭାଷା ଶିକ୍ଷା କରିଥିଲେ । ତାଙ୍କର ନିର୍ଭୁଲ ଇଂରାଜୀ ଉଚ୍ଚାରଣ ସମସ୍ତଙ୍କୁ ଚକିତ କରିଥିଲା ।

**ବ୍ୟକ୍ତିଜୀବନ ଓ ବିବାହ :**

କୌଣସି ସ୍ରଷ୍ଟାର ବ୍ୟକ୍ତିଗତ ଜୀବନ ବିଷୟରେ ପାଠକୀୟ ଆଗ୍ରହ ରହିବା ସ୍ୱାଭାବିକ । ଯଦି ସେ ସ୍ରଷ୍ଟା ନାରୀ ହୋଇଥାଏ, ତେବେ କୁତୂହଳର ମାତ୍ରା ଅଧିକ ହୋଇଥାଏ । ଏହି ଦୃଷ୍ଟିରୁ କୁନ୍ତଳାଙ୍କ ବ୍ୟକ୍ତିଗତ ଜୀବନ ତାଙ୍କର ସାହିତ୍ୟିକ ଜୀବନର ପରିପୂରକ ପୁଣି ପରିପନ୍ଥୀ— କଟକ ମେଡ଼ିକାଲ ସ୍କୁଲ୍‌ର ଆନାଟୋମି ଓ ଫିଜିଓଲୋଜି ଡିମନ୍‌ଷ୍ଟ୍ରେଟର୍ ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ରାଓ ଥିଲେ ତାଙ୍କର ପଥପ୍ରଦର୍ଶକ । କୁନ୍ତଳାଙ୍କ ସାହିତ୍ୟିକ ଜୀବନ ଶ୍ରୀଯୁକ୍ତ ରାଓଙ୍କ ତତ୍ତ୍ୱାବଧାନରେହିଁ ପୁଷ୍ଟ ହୋଇଥିଲା । ୧୯୨୧ ରୁ ୧.୯୨୮ ପର୍ଯ୍ୟନ୍ତ କୁନ୍ତଳାଙ୍କ ସାହିତ୍ୟ ସୃଷ୍ଟିକୁ ପ୍ରେରଣା ଦେବା ଓ ସେସବୁର ମୁଦ୍ରଣ ଦିଗରେ ସାହାଯ୍ୟ କରିବାରେ ସେ ଅକୁଣ୍ଠ ସାହାଯ୍ୟ କରିଥିଲେ । କିନ୍ତୁ ବିବାହିତ ହିନ୍ଦୁ ଯୁବକ କୈଳାସଚନ୍ଦ୍ରଙ୍କୁ ସ୍ୱାମୀ ରୂପରେ ପାଇବାପାଇଁ ଚେଷ୍ଟାକରି କୁନ୍ତଳା ଅସଫଳ ହୋଇଥିଲେ । ୧୯୨୮ ଅଗଷ୍ଟ ୯ ତାରିଖରେ ସେ କୃଷ୍ଣପ୍ରସାଦ ବ୍ରହ୍ମଚାରୀ ନାମକ ଯୁବକଙ୍କୁ ବିବାହ କରିଥିଲେ; ମାତ୍ର ବ୍ୟକ୍ତିତ୍ୱମୟୀ କୁନ୍ତଳାଙ୍କ ବ୍ୟକ୍ତିତ୍ୱର ଭୂୟୋବିକାଶ

ଏହାପରେ ବାଧାପ୍ରାପ୍ତ ହୋଇଥିଲା । କୁନ୍ତଳାଙ୍କୁ ସାଧାରଣ ନାରୀ ଭଳି ବ୍ୟବହାର କରୁଥିବା ସ୍ୱାମୀ ତାଙ୍କର ବୈଶିଷ୍ଟ୍ୟ ଆକଳନ କରିପାରିନଥିଲେ । ଫଳରେ ସେମାନଙ୍କର ବୈବାହିକ ଜୀବନ ସୁଖମୟ ହୋଇପାରିନଥିଲା । ତେବେ ସେ ତିନୋଟି ସନ୍ତାନର ଜନନୀ ହୋଇଥିଲେ । ୧୯୩୮ ଅଗଷ୍ଟ ୨୩ ତାରିଖରେ ତାଙ୍କର ମହାପ୍ରୟାଣ ହୋଇଥିଲା । ସକଳ ଦୁଃଖ-ଶୋକକୁ ସେ ମଙ୍ଗଳମୟ ପ୍ରଭୁଙ୍କର ଆଶୀର୍ବାଦ ଭାବି ସହ୍ୟ କରିଯାଉଥିଲେ । ଅନେକ ଭାବପ୍ରବଣତା ନେଇ ବଞ୍ଚୁଥିବା ଏକ ଚିକିତ୍ସିକା ନିଜର ମନୋମତ ପରିବେଶ ନପାଇ ବେଶ୍ ଭାଙ୍ଗିପଡ଼ିଥିଲେ । ଯାହା ତାଙ୍କର ରଚନାବଳିରେ ବହୁଭାବେ ପ୍ରତିବିମ୍ବିତ ହୋଇଛି । ଜୀବନର ସକଳ ଦୁର୍ବିପାକକୁ ସେ ଈଶ୍ୱରାର୍ପଣ କରି ସନ୍ତୋଷ ଲାଭ କରିଥିଲେ ଓ ହଳାହଳ ପାନକରି ଜାତି ଉଦ୍ଦେଶ୍ୟରେ ଅମୃତ ଦାନ କରିଥିଲେ ।

**ସମକାଳୀନ ସାହିତ୍ୟିକ ପରିବେଶ :**

କୁନ୍ତଳାଙ୍କ ସମୟରେ ସାହିତ୍ୟିକ ପାଣିପାଗରେ ଦେଶାତ୍ମବୋଧ ଓ ପଲ୍ଲୀଚେତନାର ଏକତ୍ର ସମାବେଶ ପରିଦୃଷ୍ଟ ହେଉଥିଲା । ଏକପକ୍ଷରେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ଯୋଗଦାନ ସଂପର୍କରେ ଜନ-ମାନସରେ ଆଗ୍ରହ ସୃଷ୍ଟିପାଇଁ ଗୋପବନ୍ଧୁ, ଗୋଦାବରୀଶ, ପଦ୍ମଚରଣ, କାଳିନ୍ଦୀଚରଣ ପ୍ରଭୃତି ଯଥେଷ୍ଟ ପ୍ରୟାସ କରିଥିଲେ । ମାନସିଂହଙ୍କ କବିତାର ରୋମାଣ୍ଟିକ୍ ଅବବୋଧ, ପଲ୍ଲୀପ୍ରୀତି; ବୈକୁଣ୍ଠନାଥଙ୍କର ମାନବବାଦୀ ଊର୍ଦ୍ଧ୍ୱଗାମୀ ଚିନ୍ତାଧାରା; ଗଡ଼ନାୟକଙ୍କର ଛାନ୍ଦସିକତା ପ୍ରଭୃତି ସେ ସମୟର ସାହିତ୍ୟିକ ପାଣିପାଗକୁ ଉଜ୍ଜୀବିତ କରି ରଖିଥିଲା । ପୂର୍ବସୂରୀ ରାଧାନାଥ, ମଧୁସୂଦନ ଓ ବିଶେଷଭାବରେ ନନ୍ଦକିଶୋର ଥିଲେ ତାଙ୍କର ଆଦର୍ଶ ।

ଫକୀରମୋହନ ଗଦ୍ୟ ସାହିତ୍ୟରେ ଯେଉଁ ନୂତନ କ୍ରାନ୍ତି ଆଣିଥିଲେ, ତାହା କୁନ୍ତଳାଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା । ଓଡ଼ିଆଣୀ ତୁଣ୍ଡର ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେଇ ଫକୀରମୋହନ ଚମ୍ପା, ନାକଫୋଡ଼ିଆ ମାଆ, ଚିତ୍ରକଳାଙ୍କୁ ସାହିତ୍ୟ ଜଗତରେ ଅନ୍ତର୍ଭୁକ୍ତ କରିଥିଲେ । ଗୋପବନ୍ଧୁ, ଗୋଦାବରୀଶ ପ୍ରଭୃତିଙ୍କ ସହଜ ତଥା ଭାବଗର୍ଭିକ ଗଦ୍ୟରଚନା କୁନ୍ତଳାକୁମାରୀଙ୍କୁ ଗଦ୍ୟସାହିତ୍ୟ ରଚନାପାଇଁ ଉତ୍ସାହିତ କରିଥିଲା ।

ସେହି ସମୟରେ ବ୍ରାହ୍ମ ସମାଜ, ଆର୍ଯ୍ୟ ସମାଜ, ରାମକୃଷ୍ଣ ମିଶନ, ଥିଓସୋଫିକାଲ୍ ସୋସାଇଟି ପ୍ରଭୃତି ଧର୍ମୀୟ ବାତାବରଣକୁ ପ୍ରଭାବିତ କରିଥିଲା ଓ ଫଳସ୍ୱରୂପ ଏକ ଉଦାର ମାନବବାଦୀ ଦୃଷ୍ଟିକୋଣ କ୍ରମେ ପ୍ରସାରିତ ହେଉଥିଲା ।

ଉତ୍କଳ ସାହିତ୍ୟ, ସତ୍ୟବାଦୀ, ମୁକୁର ପ୍ରଭୃତି ପତ୍ରପତ୍ରିକା ମଧ୍ୟ ଏକ ସାଂସ୍କୃତିକ ପରିବେଶ ସୃଷ୍ଟି କରିବାପାଇଁ ଅନେକ ନୂତନ ଲେଖକ-ଲେଖିକା ସୃଷ୍ଟି କରିଥିଲେ । ୧୯୨୫ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ତରଫରୁ 'Typical Selections from Oriya Literature' ମୁଦ୍ରିତ ହୋଇଥିଲା । ଏହାର ୩ୟ ଖଣ୍ଡରେ ରାଧାନାଥ, ଫକୀରମୋହନ, ଗଙ୍ଗାଧର, ନନ୍ଦକିଶୋର, ଗୋବିନ୍ଦ ରଥ, ଚିନ୍ତାମଣି ମହାନ୍ତି ଓ ନୀଳକଣ୍ଠ ଦାସଙ୍କ କୃତି ସହିତ କୁନ୍ତଳାଙ୍କ କବିତା ମୁଦ୍ରିତ ହୋଇଥିଲା ।

## ସାହିତ୍ୟକୃତି (ଉପନ୍ୟାସ) :

କୁନ୍ତଳାକୁମାରୀ ଗଦ୍ୟ ଓ ପଦ୍ୟ ସାହିତ୍ୟରେ ତାଙ୍କର ପାରଦର୍ଶିତା ଦେଖାଇଯାଇଛନ୍ତି । କବିତାରେ ଅଞ୍ଜଳି (୧୯୨୨), ଉଚ୍ଛ୍ୱାସ (୧୯୨୩), ଅର୍ଚ୍ଚନା (୧୯୨୭), ସ୍ଫୁଲିଙ୍ଗ (୧୯୨୯), ଆହ୍ୱାନ (୧୯୩୦), ପ୍ରେମ ଚିନ୍ତାମଣି (୧୯୩୦), ଓଡ଼ିଆଙ୍କ କାନ୍ଦଣା (୧୯୩୬), ଗଡ଼ଜାତ କୃଷକ (୧୯୩୯) ଓ ମଣିକାଞ୍ଚନ ହେଉଛି ତାଙ୍କ ସୃଷ୍ଟି । ଉପନ୍ୟାସଗୁଡ଼ିକ ହେଉଛି—ଭ୍ରାନ୍ତି (୧୯୨୩), ନଅତୁଣ୍ଡୀ (୧୯୨୫), କାଳୀବୋହୂ, ପରଶମଣି ଓ ରଘୁ ଅରକ୍ଷିତ । 'ଚିତ୍ରପଟ' ତାଙ୍କର ଅସଂପୂର୍ଣ୍ଣ ଉପନ୍ୟାସ । ଆକୃତି ଦୃଷ୍ଟିରୁ 'ରଘୁ ଅରକ୍ଷିତ' ଦୀର୍ଘ ଓ ଅନ୍ୟ ଚାରିଟି ଉପନ୍ୟାସ କ୍ଷୁଦ୍ରକାୟ ।

ଭ୍ରାନ୍ତିର ଶେଫାଳିକା, ନଅତୁଣ୍ଡୀର ଗେହ୍ଲୀ ଓ ରତନୀ, କାଳୀବୋହୂର ଲକ୍ଷ୍ମୀ, ପରଶମଣିର ଲଳିତା, ରଘୁଅରକ୍ଷିତର ସୀତା, ସରସ୍ୱତୀ ପ୍ରଭୃତିରେ କୁନ୍ତଳାକୁମାରୀଙ୍କ ବ୍ୟକ୍ତିତ୍ୱ ବିକଶିତ । ଶେଫାଳିକା ସରଳା ନିଷ୍ପାପ କିଶୋରୀ ମାତ୍ର ଗେହ୍ଲୀ ଓ ରତନୀ ନିଜସ୍ୱ ବ୍ୟକ୍ତିତ୍ୱରେ ଉଜ୍ଜ୍ୱଳ । ସେମାନେ ପ୍ରତିବାଦ କରିଛନ୍ତି, ପରିବେଶ ବିରୁଦ୍ଧରେ ସଂଗ୍ରାମ କରିଛନ୍ତି, ଲଳିତାର ବୈଧବ୍ୟରେ ପାଠକର ପ୍ରାଣ ଅଶ୍ରୁସିକ୍ତ ହୁଏ । ସୀତାର ଚାତୁର୍ଯ୍ୟ ରଘୁ ଅରକ୍ଷିତର ମୂଳ ପ୍ରେରଣା-ସ୍ରୋତ ପାଲଟିଯାଏ । ତତ୍‌କାଳୀନ ସମାଜରେ ଯୌତୁକ, ଅସ୍ପୃଶ୍ୟତା, ଧନୀଦରିଦ୍ର, ଧର୍ମାନ୍ତର ଗ୍ରହଣର ସମସ୍ୟା—ସର୍ବୋପରି ନାରୀକୁ 'ନେଇ ଯେତେସବୁ ସମସ୍ୟା ଥିଲା, କୁନ୍ତଳା ସେସବୁ ବିରୁଦ୍ଧରେ ବିଦ୍ରୋହ କରିଛନ୍ତି । ସତ୍ୟାଗ୍ରହ, ହରତାଳ, ଖଦୀପିନ୍ଧା, ଦେଶପାଇଁ ନିଜର ପିନ୍ଧା ଗହଣା ପର୍ଯ୍ୟନ୍ତ ଦାନ କରିବାର ଦମ୍ଭ ଓ ଆଗ୍ରହ ତାଙ୍କର ନାରୀ ଚରିତ୍ରମାନେ ଦେଖାଇଯାଇଛନ୍ତି । କେବଳ ସେତିକି ନୁହେଁ; ଖ୍ରୀଷ୍ଟିଆନ୍ ପରିବାରର ଉଦାରତା, ବୁଝାମଣା ଓ ଆଧୁନିକ ମାନସିକତାକୁ ସେ ଯଥେଷ୍ଟ ପ୍ରଶଂସା କରିଛନ୍ତି । ତାଙ୍କ ଉପନ୍ୟାସର ପାରମ୍ପରିକ ବୟସ୍କ ଚରିତ୍ରମାନେ ଉତ୍ତର ଜୀବନରେ ସମାଜ ସେବାପାଇଁ ଆଗ୍ରହୀ ମଧ୍ୟ ହୋଇଛନ୍ତି । ଏହା ତତ୍‌କାଳୀନ ସାମାଜିକ ସ୍ଥିତିର ସୂଚନା ଦେଇଥାଏ ।

କେଉଁଠି ସେମାନେ ଅମ୍ବିକା ଆଶ୍ରମ ଗଢ଼ିଛନ୍ତି, କେଉଁଠି ଗଢ଼ିଛନ୍ତି ଶାନ୍ତି କୁଟୀର (କାଳୀବୋହୂ), କେଉଁଠି ବା କଲ୍ୟାଣୀ ଭବନ ତିଆରି ହୋଇଛି ଅନାଥମାନଙ୍କ ସେବାଯତ୍ନପାଇଁ । ସେମାନେ ସୂତା କାଟିବେ, କାର୍ପେଟ୍ ବୁଣିବେ, ଚିତ୍ର ଆଙ୍କିବେ, କେବଳ କପାଳକୁ ନ ନିନ୍ଦି ଜୀବନକୁ ଭିନ୍ନ ମାର୍ଗରେ ସମାଜ ଉପଯୋଗୀ କରି ଗଢ଼ିବାର ସୁଯୋଗ ପାଇବେ ।

ତାଙ୍କ ଉପନ୍ୟାସମାନଙ୍କରେ ନାରୀର ଯେଉଁ ମହନୀୟ ମାତୃମୂର୍ତ୍ତି ଚିତ୍ରିତ ହୋଇଛି, ତାହା ଅନନ୍ୟସାଧାରଣ । ଅନାଥବାଳକ ତଥା ସଂପର୍କୀୟମାନଙ୍କ ପ୍ରତି ଏହି ବାତ୍ସଲ୍ୟ ଶତଧାରରେ ଝରିଯାଇଛି । ତାହା କୌଣସି ସାମାଜିକ ବିଧିନିଷେଧକୁ ଭ୍ରୂକ୍ଷେପ କରିନାହିଁ । 'ରଘୁ ଅରକ୍ଷିତ' ଉପନ୍ୟାସରେ ଜମିଦାର ଚନ୍ଦ୍ରଶେଖର ଚୌଧୁରୀଙ୍କ ପତ୍ନୀ ସରସ୍ୱତୀ ଏହାର ଏକ ପ୍ରକୃଷ୍ଟ ଉଦାହରଣ । ଗାଳି ଦେବା ଓ ପିଠି ଆଉଁସି ସାନ୍ତ୍ୱନା ଦେବାରେ ସେ ଥିଲେ ଅଦ୍ୱିତୀୟା । ଗାଈ ରଖିବା, କ୍ଷୀର ବିକ୍ରି କରିବା, ପୋଖରୀରେ ମାଛଚାଷ କରିବା, ବଳକା ଟଙ୍କା କରଜ ଲଗାଇବା, ଆମ୍ବ କରଞ୍ଜ-ପୋଲାଙ୍ଗ ତୋଟା ନିଲାମ୍ ଧରିବା ଆଦି ମାମଲତକାରସୁଲଭ କର୍ମ ସେ ବଡ଼ କୌଶଳରେ କରିପାରୁଥିଲେ । ତେଣୁ ତାଙ୍କ ବ୍ୟକ୍ତିତ୍ୱ ମଧ୍ୟରେ ପାରମ୍ପରିକ ନାରୀର ପ୍ରତିମୂର୍ତ୍ତି ସହିତ ଆଧୁନିକ ନାରୀର ଜୀବନଦୃଷ୍ଟି ସମନ୍ୱିତ ହୋଇଯାଇଥିଲା । ବାଳୁତ-ବିଧବାମାନଙ୍କର କଷ୍ଟ ତାଙ୍କୁ ବ୍ୟଥିତ କରିଛି । 'ରଘୁ ଅରକ୍ଷିତ' ଉପନ୍ୟାସର ପିତେଇ ନାନୀ ଏହାର ଦୃଷ୍ଟାନ୍ତ । 'ନଅତୁଣ୍ଡୀ' ଉପନ୍ୟାସରେ ଜମିଦାର କୃଷ୍ଣଚନ୍ଦ୍ରଙ୍କ ଆଗ୍ରହ ଫଳରେ ତାଙ୍କ ପତ୍ନୀ ଉମାସୁନ୍ଦରୀ ପାଠ ପଢ଼ିଛନ୍ତି । ବୃଦ୍ଧଙ୍କର ତରୁଣୀ କନ୍ୟା ବିବାହ ଓ ତଦ୍‌ଜନିତ ପରିଣତି ସଂପର୍କରେ ମଧ୍ୟ କୁନ୍ତଳାଙ୍କ 'ରଘୁ ଅରକ୍ଷିତ' ଉପନ୍ୟାସରେ ବର୍ଣ୍ଣନା କରାଯାଇଛି । ଜମିଦାର କନ୍ୟା ଦଶ ବର୍ଷ ବୟସ୍କା କିଶୋରୀ ସୀତା ବାଷଠି ବର୍ଷର ବୃଦ୍ଧ ବୃନ୍ଦାବନଙ୍କୁ ବିବାହ କରିଛି । ଏହି କନ୍ୟାକୁ ପୁଅପାଇଁ ପସନ୍ଦ କରିବାକୁ ଯାଇ ବୃନ୍ଦାବନ ଦି'ଗୁଣ ପଣ ଦେଇ ନିଜପାଇଁ ସ୍ତ୍ରୀ କରି ଆଣିଛନ୍ତି, ଜମିଦାର କନ୍ୟା ଆଜନ୍ମ ସୁଖପାଳିତା କନ୍ୟାଙ୍କର ଏତାଦୃଶ ଦୁରବସ୍ଥା କଥା ଚିନ୍ତା କଲେ ତତ୍କାଳୀନ ସାମାଜିକ ପରମ୍ପରାରେ ନାରୀର ଦୁର୍ଦ୍ଦଶା କଥା ଭାବିହୁଏନାହିଁ । କାଳୀବୋହୂର ସରସ୍ୱତୀ ଓ ସତ୍ୟବତୀ ନାରୀ-ସମାଜର ସର୍ବାଙ୍ଗୀନ ଉନ୍ନତିପାଇଁ ଯଥାସାଧ୍ୟ ପ୍ରୟାସ କରିଛନ୍ତି । ନଅତୁଣ୍ଡୀର ମହାପାତ୍ର ଭାରିଯା କିନ୍ତୁ ସଂସ୍କାରକୁ ଗ୍ରହଣ କରିପାରିନାହାନ୍ତି । ସେ ଖଦୀବସ୍ତ୍ରକୁ ସମାଲୋଚନା କରିଛନ୍ତି । ତାଙ୍କ ଚରିତ୍ର ସଂହାରରେ ମୁଖରା, ଉଦଣ୍ଡୀ ଚରିତ୍ରମାନେ ମଧ୍ୟ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରି ସମାଜପାଇଁ ପ୍ରଶ୍ନବାଚୀ ପାଲଟି ଯାଇଛନ୍ତି ।

**ସାହିତ୍ୟକୃତି (କବିତା) :**

କୁନ୍ତଳାଙ୍କ କବିତାରେ ପଲ୍ଲୀପ୍ରାଣତା, ଅତୀତପ୍ରୀତି, ଦେଶପ୍ରୀତି ଈଶ୍ୱର ତଥା ସମାଜପ୍ରତି ଅଭିମାନ, ନାରୀ ଜୀବନର ଦୁର୍ଦ୍ଦଶା ସର୍ବୋପରି ଈଶ୍ୱର ବିଶ୍ୱାସ ପରିଦୃଷ୍ଟ ହୋଇଥାଏ । ପଲ୍ଲୀର ସୌନ୍ଦର୍ଯ୍ୟରେ ସେ ଯେତିକି ମୁଗ୍ଧ, ପଲ୍ଲୀର ଦୁଃସ୍ଥିତି ଦେଖି ସେ ସେତିକି ମ୍ରିୟମାଣ; ସ୍ଫୁଲିଙ୍ଗର 'ପୁରୁଣା ଓଡ଼ିଆ' କବିତାରେ–

''ଭଗ୍ନ କୁଟୀରେ ହେ କୃଷକ ଭାଇ
ଅର୍ଦ୍ଧମୃତ ତୋ'ର ପରିବାର
ନିତି କ୍ଳାନ୍ତି ଖଟଣି ସାର ତୋ'
ନମିଳଇ ପୂର୍ଣ୍ଣ ଆହାର,
x x x
ଦୀର୍ଘ ହତାଶ ନିଶ୍ୱାସ
ତୋ'ର ଆଉ ନ ମିଶିବ ମାଟିରେ
ଦେଢ଼କୋଟି ଆଜି ଉଠିବେ ଓଡ଼ିଆ
ଜଡ଼ତାର ମୋହ କାଟିରେ ।''

ପଲ୍ଲୀରେ ଯୁବକ ମୋଟିଆ ଓ ବେଠିଆ ହେବାକୁ ଘରଛାଡ଼େ । ସ୍ୱଦେଶ ଛାଡ଼ି ବିଦେଶରେ ପର ଆଗରେ ହାତ ପତାଏ । ବନ୍ୟା, ବାତ୍ୟା, ବିଧ୍ୱସ୍ତ ଓଡ଼ିଶା ମାଟି ମାଆର କାନ୍ଦଣା ଶୁଣିବାକୁ କେହି ନଥାଏ । ତା' ଘରର ଶିରୀ ଅର୍ଥାତ୍ ତା'ର ମା' ଭଉଣୀ ବା ସ୍ତ୍ରୀ ଧାନ କୁଟନ୍ତି । ଚକି ପେଷନ୍ତି ଓ ଗୁହାଳ ସଫା କରି ବଞ୍ଚି ରହିବାର ପ୍ରୟାସ କରିଥାନ୍ତି । 'ସ୍ଫୁଲିଙ୍ଗ'ର ସମସ୍ତ କବିତାରେ ଦେଶପ୍ରେମର ସ୍ୱର ଶୁଣାଯାଏ । ଭାରତ ରମଣୀ, ନାରୀଶକ୍ତି, ସୌଭାଗ୍ୟ ଆହ୍ୱାନ ଆଦି କବିତାରେ ସେ ଦେଶପ୍ରେମର ଉଦାର ସ୍ୱର ଶୁଣାଇଛନ୍ତି । ପୁରୁଷ ଭଳି ନାରୀ ମଧ୍ୟ ଅସହଯୋଗ ଆନ୍ଦୋଳନରେ ଝାସ ଦେଇପାରେ ଓ ଦେଶପାଇଁ ନିଜର ସ୍ୱାର୍ଥ ବଳି ଦେଇପାରେ । ଈଶ୍ୱରଙ୍କ ପ୍ରତି ଅଭିମାନ ତାଙ୍କ କବିତାରେ ପରିଦୃଷ୍ଟ ହୋଇଥାଏ । 'ଉଚ୍ଛ୍ୱାସ'ର କରପାଦଧୂଳି, ଅଭିଳାଷ, 'ଅଞ୍ଜଳି'ର କେତେକ କବିତାରେ ଏହି ସ୍ୱର ସ୍ପଷ୍ଟ । 'ଅର୍ଚ୍ଚନା'ରୁ ଉଦ୍ଧୃତିଟିଏ–

''ମୃତ୍ୟୁ ରୂପେ ଯଦି ଆସିବ କତିକି
ସୁଖେ ମୁଁ ଘେନିବି କୋଳରେ
ଆଦରେ ମରଣ ବରଣ କରି ଗୋ
ମରିବି ଚରଣ ତଳରେ ।''

ଅନ୍ୟତ୍ର ଦୁଃଖର ଚିରନ୍ତନତା ନେଇ ସେ ଦାର୍ଶନିକସୁଲଭ ବକ୍ତବ୍ୟ ପ୍ରକାଶ କରିଛନ୍ତି ।

ଅଞ୍ଜଳିରୁ–

"ସଂସାର ଗଗନେ ଦୁଃଖ ଧ୍ରୁବତାରା,
ଦୁଃଖ ମୋ' ପରାଣ ଶଶି
ଏ ସଂସାର ମରୁ ପ୍ରାନ୍ତରେ ଅଛି ମୁଁ,
ଦୁଃଖ ତରୁମୂଳେ ବସି !"

ତାଙ୍କର ରୋମାଣ୍ଟିକ୍ ଭାବପ୍ରବଣତା ଭିତରେ ପ୍ରେମର ଯେଉଁ ସ୍ୱରୂପଟି ଫୁଟିଉଠେ, ତାହା ବିରହବତୁରା ଦୁଃଖ ମିଶ୍ରିତ ପ୍ରେମ, ଯାହାକି କବିଙ୍କୁ ଜୀବନର ସମ୍ମୁଖୀନ ହେବାପାଇଁ ଆତ୍ମବିଶ୍ୱାସ ଦେଇଛି । ତାଙ୍କର ପ୍ରେମ ବ୍ୟକ୍ତି ସ୍ତରରୁ ଆରମ୍ଭ ହେଲେହେଁ ତାହା ବିଶ୍ୱମାନବର ବ୍ୟଥା ଓ ବେଦନା ଭିତରେ ନିଜର ଅସ୍ତିତ୍ୱ ହଜାଇଛି । ତେଣୁ ତାଙ୍କପାଇଁ ପ୍ରେମ ଲୁଚାଚୋରା ନୁହେଁ, ପରିଚ୍ଛନ୍ନ ପରିବ୍ୟାପ୍ତ ଓ ସ୍ୱଷ୍ଟ । ସେବିକାର ପ୍ରାର୍ଥନା, ଆବାହନ, ସନ୍ଧାନ, ବିରହେ, ଅଭିଳାଷ କାମନା, ପୂଜାପଦ୍ଧତି ଭଳି କବିତାରେ ତାଙ୍କର ପ୍ରେମର ସ୍ୱରୂପ ବେଶ୍ ଭାବମୟ । 'ଅଭିଳାଷ' କବିତାରୁ–

"କିମ୍ବା ଲୁଚାଚୋରା, ମାନଅଭିମାନ କିମ୍ବା
ଲୁଚକାଳି ଖେଳା
ତୁମ୍ଭେ ତ ମୋହର, ସଂସାର ସାଗରେ
ଜୀବନ ରକ୍ଷଣ ଭେଳା ।"

ଏ କବିତାରେ ପ୍ରେମର ନିବିଡ଼ତା ତଥା ବ୍ୟାପକତା ସମଭାବରେ ପାଠକକୁ ସ୍ପର୍ଶ କରିଥାଏ । ତାଙ୍କର ଆଶାବାଦର ଜୀବନ ଦର୍ଶନ 'ଶେଫାଳି ପ୍ରତି' କବିତାରେ ସ୍ୱଷ୍ଟ । ଯେଉଁଠି ସେ ସ୍ପର୍ଦ୍ଧାରେ କହନ୍ତି –

"ଶେଷଗତି ନୁହେଁ ମୋର
ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟିନାହିଁ ଭବତରୁ ଡାଳରେ ।"

ଏହି କବିତା ଆମ୍ଭକୁ ପୂର୍ବସୂରୀ ମଧୁସୂଦନ ରାଓଙ୍କ 'କୁସୁମାଞ୍ଜଳି'ର କବିତା–

"ନିରାଶର କଥା ଛି ଛି କହିବି କେମନ୍ତେ
ଅନ୍ତରରେ ଅନୁଭବି ଅନନ୍ତ ବସନ୍ତେ ।"

କଥା ମନେପକାଇଦିଏ । 'ଅଞ୍ଜଳି' କବିତା ସଙ୍କଳନର 'ବସନ୍ତେ' କବିତାରେ ସେ ଏହି ଅନନ୍ତ ବସନ୍ତର ସ୍ୱରକୁ ହିଁ ଶୁଣି ପାରିଛନ୍ତି ।

"ଦୁଃଖର କଥା ମୁଁ କହିବିନାହିଁ ଲୋ
ମଧୁମାସ ମଧୁବାସରେ

ହୃଦବୀଣା ଛିନ୍ନ-ତାରକୁ ଯୋଡ଼ିଣ
ଗାଇବି ଗୀତ ମୁଁ ସୁସ୍ୱରେ ।''

ତାଙ୍କର 'ପ୍ରେମଚିନ୍ତାମଣି' ବୈଷ୍ଣବ ତତ୍ତ୍ୱାଶ୍ରୟୀ କାବ୍ୟଗ୍ରନ୍ଥ ନୁହେଁ । କବି ହୃଦୟର ଅସରନ୍ତି ଉଚ୍ଛ୍ୱାସରେ ପରିପୂର୍ଣ୍ଣ ସାବଲୀଳ କବିତାସମୂହ । ଏଥିରେ ପ୍ରେମର ଦଶଦଶାର ଚିତ୍ର ପ୍ରଦତ୍ତ ହୋଇଛି । କୁନ୍ତଳାକୁମାରୀଙ୍କ ଜୀବନଚରିତ ଲେଖକ ଚକ୍ରଧର ମହାପାତ୍ରଙ୍କ ପରାମର୍ଶ ଅନୁସାରେ ଏହି ମାନବୀୟ ପ୍ରେମର ଭାବନା ମଧ୍ୟରେ ରାଧାକୃଷ୍ଣଙ୍କୁ ନାୟକ-ନାୟିକାଭାବରେ ଅବସ୍ଥାପିତ କରାଯାଇଛି । ଆତ୍ମପ୍ରକାଶପାଇଁ ଉନ୍ମୁଖ ଏହି ପ୍ରତିଭା ସକଳ ପ୍ରତିକୂଳ ଅବସ୍ଥା ମଧ୍ୟରେ ରହି ସାହିତ୍ୟ ସାଧନା କରୁଥିଲେ । ତେଣୁ ଅନେକତ୍ର ତାଙ୍କର ବ୍ୟକ୍ତିଗତ ପ୍ରେମମୂଳକ କବିତା ବିଭୁପ୍ରୀତିର ଉଦାରସ୍ୱର ମଧ୍ୟରେ ଆତ୍ମଗୋପନ କରିଥିବା ଜଣାଯାଏ ।

**ସମାଜସେବା :**

ସେ ଦିଲ୍ଲୀରେ ଅବସ୍ଥାନ କାଳରେ ମହାବୀର, ଜୀବନ ଓ ନାରୀଭାରତୀ ଭଳି ପତ୍ରିକାର ସଂପାଦନା ସହିତ ଜଡ଼ିତ ଥିଲେ । ଏଲାହାବାଦର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ତଥା ଉତ୍ତର ଭାରତର ଅନ୍ୟ କେତେକ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଭାଷଣ ଦେଇ ସେ ସମଗ୍ର ଭାରତର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ତାଙ୍କର ପ୍ରଚଣ୍ଡ ସାଙ୍ଗଠନିକ ଶକ୍ତି ଥିଲା । ସେ ଥିଲେ All India Youth Leagueର ସଭାପତି । ଉତ୍କଳନାରୀ ସମିତିର ସଭାନେତ୍ରୀ, ଆଲିଗଡ଼ ଷ୍ଟୁଡେଣ୍ଟସ୍ ଫେଡେରେସନ୍‌ର ସଭାପତି, ମହାରାଣୀ ଲକ୍ଷ୍ମୀବାଈ ଜୟନ୍ତୀ ସମିତିର ସଭାପତି, ବୃନ୍ଦାବନ ଗୁରୁକୁଳ ବିଦ୍ୟାଳୟର ପ୍ରଶାସିକା ଓ ଭାରତୀ ତପୋବନ ସଂଘ, ଦିଲ୍ଲୀର ସଂଗଠିକା । ଜୀବନର ପ୍ରାରମ୍ଭରେ ଦାରିଦ୍ର୍ୟକୁ ଅଙ୍ଗେ ଲିଭାଇଥିବା କୁନ୍ତଳା ପ୍ରାଚୁର୍ଯ୍ୟ ଭିତରେ ରହି ମଧ୍ୟ ତାଙ୍କର ଅତୀତକୁ ପାସୋରି ପାରିନଥିଲେ । ତେଣୁ ସେ ନିଜର ପ୍ରଥମ ଉପାର୍ଜନରେ ପଚିଶ ଖଣ୍ଡ ଶାଢ଼ି କିଣି ଦରିଦ୍ର କନ୍ୟାମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ ।

ଦିଲ୍ଲୀରେ ନାରୀ ସ୍ୱାଧୀନତାପାଇଁ ଭାଷଣ ଦେଉଥିବା ସମୟରେ ସେ ପୁଲିସ୍ ଦ୍ୱାରା ଗିରଫ ହୋଇଥିଲେ । ସେ ସ୍ୱଦେଶୀ ବସ୍ତ୍ର ପିନ୍ଧିବାପାଇଁ ଶପଥ ନେଇଥିଲେ ଓ ସମଗ୍ର ଜୀବନ କାଳ ମଧ୍ୟରେ ସେହି ଶପଥ ରକ୍ଷାପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ଏପରିକି ସେ ନିଜ ଘରର ସବୁ ଆସବାବପତ୍ର ମଧ୍ୟ ସ୍ୱଦେଶୀ ଢଙ୍ଗରେ ବଦଳାଇ ଦେଇଥିଲେ ।

ଖ୍ରୀ. ୧୯୨୭ରୁ ପୁରୀରେ ବିଖ୍ୟାତ ଓକିଲ ରାୟ ବାହାଦୂର ଲୋକନାଥ ମିଶ୍ରଙ୍କ ପତ୍ନୀ ଲାବଣ୍ୟବତୀ, ଶ୍ରୀମତୀ ଚଞ୍ଚଳା ଦେବୀ, ଶ୍ରୀମତୀ ଯମୁନା ଦେବୀ, ଶ୍ରୀମତୀ

ରାଧାରାଣୀ ଦେଇ ଆଦି କେତେଜଣ ନାରୀଙ୍କୁ ନେଇ ଗଢ଼ିଉଠିଥିବା 'ମହିଳାବନ୍ଧୁ ସମିତି' ଦ୍ୱାରା ସେ ୧୯୨୫ ମାର୍ଚ୍ଚ ୧୦ ତାରିଖ ଦୋଳପୂର୍ଣ୍ଣିମା ଦିନ 'ଉତ୍କଳ ଭାରତୀ' ପଦବୀରେ ଭୂଷିତା ହୋଇଥିଲେ । ତାଙ୍କର ଅଞ୍ଜଳି, ଉଚ୍ଛ୍ୱାସ, କାଳୀବୋହୂ ଓ ପରଶମଣି ପୁସ୍ତକପାଇଁ ତାଙ୍କୁ ଏହି ଦୁର୍ଲଭ ସମ୍ମାନ ମିଳିଥିଲା । ସେହିବର୍ଷ ସେପ୍ଟେମ୍ବର ୧୧ ତାରିଖରେ ପୁରୀ ମୁକ୍ତି ମଣ୍ଡପ ପଣ୍ଡିତ ସଭା ତରଫରୁ ତାଙ୍କୁ ଭ୍ରାନ୍ତି, ପରଶମଣି, ଅଞ୍ଜଳି ଓ ଉଚ୍ଛ୍ୱାସ ଗ୍ରନ୍ଥପାଇଁ ସ୍ୱତନ୍ତ୍ର ପ୍ରଶଂସାପତ୍ର ମିଳିଥିଲା । ଜଣେ ଖ୍ରୀଷ୍ଟିଆନ୍ ମହିଳାଙ୍କ ପକ୍ଷରେ ଏହା କମ୍ ସୌଭାଗ୍ୟର କଥା ନୁହେଁ । ସମାଜ-ସଂସ୍କାର ତଥା ଜାତିଗଠନପାଇଁ ତାଙ୍କର ଉଦ୍ୟମ ବେଶ୍ ପ୍ରଶଂସନୀୟ । ମାତ୍ର ଆଠ, ଦଶ ବର୍ଷର ସମାଜସେବା ଓ ସାହିତ୍ୟ ସାଧନା ବଳରେ ସେ ନିଜପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିବାରେ ସମର୍ଥ ହୋଇପାରିଥିଲେ ।

ଆଜି ଉପନ୍ୟାସର ଶୈଳୀ ଓ ବିଷୟଗୁଡ଼ିକରେ ଯଥେଷ୍ଟ ନୂତନତ୍ୱ ପରିଦୃଷ୍ଟ ହେଉଛି । ଅନେକ ଢଙ୍ଗରେ ଉପନ୍ୟାସର ବକ୍ତବ୍ୟ ଉପସ୍ଥାପିତ ହେଉଛି । ସେହି ଦୃଷ୍ଟିରୁ କୁନ୍ତଳାଙ୍କ ଉପନ୍ୟାସ ଆଲୋଚନା କରାଯାଇପାରିବନାହିଁ । କାରଣ ଓଡ଼ିଶାରେ ଉପନ୍ୟାସ ରଚନାର ପ୍ରାକ୍‌କାଳରେ ରଚିତ ଏହି ଉପନ୍ୟାସଗୁଡ଼ିକ ଭାଷା ଓ ଭାବରେ ସରଳ । ଅତୀତରୁ ବର୍ତ୍ତମାନ ଆଡ଼କୁ ଏଗୁଡ଼ିକ ସିଧାସଳଖ ଗତିଶୀଳ । ବିଷୟରୁ ବିଷୟାନ୍ତରକୁ ଯିବାର ପ୍ରକ୍ରିୟା ମଧ୍ୟ ଅନାକର୍ଷଣୀୟ । ତଥାପି ଏଗୁଡ଼ିକ ତାଙ୍କର ସମାଜ ସଂସ୍କାର ଦୃଷ୍ଟିଭଙ୍ଗୀ ପ୍ରସୂତ ରଚନାବଳୀ; ଯେଉଁଥିରେ ସମସ୍ୟା ସଚେତନତା ସହିତ ସମାଧାନର ଉଦାର ଦୃଷ୍ଟିଭଙ୍ଗୀ, ଦୃଷ୍ଟିଗୋଚର ହୁଏ । ତାଙ୍କର କବିତାଗୁଡ଼ିକ ଏ ଦୃଷ୍ଟିରୁ ଅଧିକ ମନନଶୀଳ, କ୍ରାନ୍ତିଦର୍ଶୀ ତଥା ସ୍ୱୟଂସଂପୂର୍ଣ୍ଣ । ତାଙ୍କ ପୂର୍ବରୁ ଓଡ଼ିଶାରେ ସାହିତ୍ୟ ସୃଷ୍ଟି କରି କେତେକ ମୁଷ୍ଟିମେୟ ଲେଖିକା ସ୍ମରଣୀୟା । ସେମାନେ ହେଲେ ଜାହ୍ନବୀ ଦେବୀ, ସୁଚିତ୍ରା ଦେବୀ, ସରୋଜିନୀ ଦେବୀ ଓ ଶୈଳବାଳା ଦେବୀ ପ୍ରମୁଖ । କିନ୍ତୁ କୁନ୍ତଳାଙ୍କ ଭଳି ଏମାନେ ନିଜର ସାହିତ୍ୟକୃତି ଓ ବ୍ୟକ୍ତିତ୍ୱପାଇଁ ଏତେବେଶି ଆଲୋଚନାର ପରିସରକୁ ଆସିପାରି ନଥିଲେ । କୁନ୍ତଳାଙ୍କ ଭାବମୟ ଜୀବନ ଓ ଯୁକ୍ତିସିଦ୍ଧ ଜୀବିକା ସମନ୍ୱିତ ହୋଇ ତାଙ୍କର ବ୍ୟକ୍ତିତ୍ୱ ନିର୍ମାଣ କରିଥିଲା । ତେଣୁ ସକଳ ଅବସାଦ ଦୁଃଖଯନ୍ତ୍ରଣା ସତ୍ତ୍ୱେ ଏକ ମହାଭାବମୟ ସତ୍ତା ତାଙ୍କୁ ସର୍ବଦା କବଳିତ କରି ରଖିଥିଲା ଓ ତାଙ୍କର ଆତ୍ମା ସେହି ସତ୍ତାପ୍ରତି ନିତ୍ୟ ଉନ୍ମୁଖ ରହିଥିଲା । ଜୀବନ ଓ ଜଗତକୁ ସେ ନାରୀର ସମାହିତ ଦୃଷ୍ଟିରେ ଦେଖିଛନ୍ତି ଓ ମନୁଷ୍ୟର ଅସହାୟତା ପ୍ରତି ସହାନୁଭୂତି ପ୍ରକାଶ କରିଯାଇଛନ୍ତି ।

ତାଙ୍କର ମହାପ୍ରୟାଣରେ ସରଳା ଦେବୀଙ୍କର ଉକ୍ତି ଏଠାରେ ବିଶେଷ ପ୍ରଣିଧାନର ଯୋଗ୍ୟ । "ଦୂରପ୍ରବାସିନୀ ଥାଇ ଉତ୍କଳ କଥା ସେ ଜପ କରୁଥିଲେ,

ଉତ୍କଳର ଗୃହ ପ୍ରାଙ୍ଗଣ, ଉତ୍କଳର ଶୋଭନୀୟା ପ୍ରକୃତି, ଉତ୍କଳର ପୂର୍ବ ଗରିମା, ଉତ୍କଳର ରୀତି-ନୀତି, ଆଚାର-ପଦ୍ଧତି, ଧର୍ମ-ସଂସ୍କୃତି ଓ ତାହାର ସମ୍ଭାବନାମୟ ମହତ୍ତର ଭବିଷ୍ୟତ କଥା, ତା'ର ବର୍ତ୍ତମାନର ଦୁର୍ବିସହ ବେଦନା, ଲାଞ୍ଛନା ଯାହାଙ୍କର ଚିତ୍ତକୁ ଆଲୋଡ଼ିତ କରୁଥିଲା, କାବ୍ୟକଳାରେ ଯେ ଜାତିର ମୂଲ୍ୟ, ଜାତିର ଟେକ ଅଧିକ ବଢ଼ାଇ ଦେଇଛନ୍ତି; ତାଙ୍କୁ ଆଜି ସ୍ମରଣ କରୁଛି । ଜୀବନରେ କେବଳ ଦ୍ୱନ୍ଦ୍ୱ, ବେଦନା, ଅସହ୍ୟ ଗ୍ଲାନି ଓ ଅଶାନ୍ତି-ଅସନ୍ତୋଷ ମଧ୍ୟରେ ତାଙ୍କର ଦିନଗୁଡ଼ିକ ବିତିଛି । ନିଜର ଅସହାୟ ଜୀବନର ପୁଞ୍ଜୀଭୂତ ବେଦନାର ଭାର ସେ ଭଗବାନଙ୍କ ଚରଣରେ ନିବେଦନ କରିଛନ୍ତି ।''

ଏପର୍ଯ୍ୟନ୍ତ ତାଙ୍କର କୃତିତ୍ୱର ଯଥେଷ୍ଟ ଆକଳନ କରାଯାଇପାରିନାହିଁ । କୁନ୍ତଳାଙ୍କ ରଚନାବଳି ତାଙ୍କ ସମୟର ପରିଚ୍ଛନ୍ନ ଦର୍ପଣ, ଯାହା ଭିତରେ ତାଙ୍କର ନିଷ୍ଠା, ବିଶ୍ୱାସ ଓ ଦୃଢ଼ ବ୍ୟକ୍ତିତ୍ୱ ମିଶିଯାଇଛି । ସେ ଦର୍ପଣରେ ଦିଶୁଛି ଏପରି ଏକ ସମୟର ମୁହଁ; ଯାହାକୁ ଦେଖି ଆତ୍ମବିଶ୍ୱାସ ଆସୁଛି ଯେ ପରିବର୍ତ୍ତନ ସମ୍ଭବ ଓ ତାହା ବ୍ୟକ୍ତିର ବିଶ୍ୱାସକୁ ପୁଞ୍ଜିକରିହିଁ ଆସିପାରେ ।

---

# କବି କୃଷ୍ଣଚନ୍ଦ୍ର ତ୍ରିପାଠୀ : ଏକ ମୁଗ୍ଧ ଦୃଷ୍ଟି

କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ସବୁଜଯୁଗର ସମସାମୟିକ ସ୍ରଷ୍ଟା । ତାଙ୍କ ରଚନାରେ ଓଡ଼ିଶାର ପଲ୍ଲୀ ଜୀବନର ଅଜସ୍ର ଚିତ୍ର କଳାତ୍ମକଭାବରେ ରୂପାୟିତ । ମଣିଷର ବ୍ୟଥା ଓ ବେଦନାର ସ୍ୱର ତାଙ୍କର ରଚନା ସମୂହରେ ଅନୁରଣିତ ହୋଇଉଠିଛି । ସବୁଜଯୁଗର ସୁଦୂର ମୋହ ବା ରୋମାଣ୍ଟିକ୍ ଭାବପ୍ରବଣତାଠାରୁ ନିର୍ଦ୍ଦିଷ୍ଟ ଦୂରତ୍ୱ ରକ୍ଷାକରି ସେ ନିଜପାଇଁ ଓଡ଼ିଆ ସାହିତ୍ୟ ଜଗତରେ ଏକ ସ୍ୱତନ୍ତ୍ର ଆସନ ପ୍ରତିଷ୍ଠା କରିପାରିଛନ୍ତି । ୧୯୩୦ରୁ ୧୯୭୦ ପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବରେ କବିତା ରଚନା କରିଥିବା କବି କେବେ ମାନସିଂହଙ୍କର ଅତୀତ ପ୍ରୀତିଦ୍ୱାରା ଅନୁପ୍ରେରିତ ତ କେବେ ଗୋଦାବରୀଶ ମହାପାତ୍ରଙ୍କର ସମାଜ ସଚେତନ ମାନବବାଦୀ ଧାରାଦ୍ୱାରା ପ୍ରଭାବିତ । କେବେ ସେ ଦେଶପ୍ରେମର କଥା କହୁ କହୁ ବିଶ୍ୱ ପ୍ରେମରେ ଗଦ୍‌ଗଦ ହୋଇଯାଆନ୍ତି ତ କେବେ ଗ୍ରାମୀଣ ମଣିଷର ଦୁଃଖ-ବେଦନାର କଥା କହିବାରେ ଶତମୁଖ ହୋଇଉଠନ୍ତି ।

ପୁରୀ ଜିଲ୍ଲା ବାଣପୁର ବ୍ଲକ୍‌ର ଭୀମପୁର ବ୍ରାହ୍ମଣ ଶାସନରେ ୧୯୧୧ ଜାନୁୟାରୀ ୧୪ ତାରିଖରେ କୃଷ୍ଣଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ । ଆଠ/ଦଶବର୍ଷ ବୟସରୁ ସେ ସିଲଟରେ କବିତା ଲେଖିବା ଆରମ୍ଭ କରିଥିଲେ । ତାଙ୍କର ପିତା ବିଦ୍ୟାଧର ତ୍ରିପାଠୀ ଥିଲେ ଜ୍ୟୋତିଷ ଶାସ୍ତ୍ରବିତ୍ ପଣ୍ଡିତ । ମାତା ନିମ ଦେବୀ, କବି କୃଷ୍ଣଚନ୍ଦ୍ରଙ୍କ କୈଶୋରକୁ ପଲ୍ଲୀ ସଙ୍ଗୀତରେ ଭରିଦେଇଥିଲେ ଓ ପଲ୍ଲୀଗଳ୍ପ ଶୁଣାଇ ତାଙ୍କର କଳ୍ପନାପ୍ରବଣତାର ଉନ୍ମେଷ ଘଟାଇଥିଲେ । ୧୯୧୭-୨୩ ପର୍ଯ୍ୟନ୍ତ ସେ ଗ୍ରାମର ପାଠଶାଳାରେ ପାଠ ପଢ଼ିଥିଲେ । ତା'ପରେ ସେ ବାଣପୁର ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କଲେ । ସେହି ବାଣପୁର ବିଦ୍ୟାଳୟରେ କବି ଗୋଦାବରୀଶ ମହାପାତ୍ର ଓ କବି ମାୟାଧର ମାନସିଂହ ମଧ୍ୟ ଏକଦା ଅଧ୍ୟୟନ କରିଥିଲେ । ସେମାନଙ୍କ ପ୍ରତିଭା ବାଣପୁରରେହିଁ ବିକଶିତ ହୋଇଥିଲା । ବାଣପୁରରେ ପଢ଼ିବା ସମୟରେ ସେ ହିନ୍ଦୁ, ମାନବ ମିତ୍ର ଓ କଳିକା ନାମରେ ହାତଲେଖା ପତ୍ରିକାମାନ ପ୍ରକାଶିତ କରିଥିଲେ । ଏହି ହାତଲେଖା ପତ୍ରିକାରେ ତାଙ୍କର କିଶୋର ବୟସର ପ୍ରକୃତି ପ୍ରୀତିମୂଳକ କବିତାମାନ ପ୍ରକାଶିତ ହୋଇଥିଲା । ଏହି ସମୟରୁ ଗୋଦାବରୀଶ ମହାପାତ୍ରଙ୍କ କବିତାମାନ ତାଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା ।

ଛାତ୍ର ଜୀବନରେ ବାଣପୁର ଇତିହାସ ଲେଖି ସେ ପୁରସ୍କୃତ ହୋଇଥିଲେ । ୧୯୨୬ରେ ଖୋର୍ଦ୍ଧାରେ 'ସରଳ ଜୀବନ' ସମ୍ପର୍କରେ ବକ୍ତୃତା ଦେଇ ମଧ୍ୟ ସେ ପୁରସ୍କାର ଲାଭ କରିଥିଲେ । ସେତେବେଳେ ସମଗ୍ର ପୁରୀ ଜିଲ୍ଲାରେ ଦୁଇଟି ମାତ୍ର ସ୍କୁଲ ଥିଲା । ଗୋଟିଏ ପୁରୀ ଜିଲ୍ଲା ସ୍କୁଲ ଓ ଅନ୍ୟଟି ଖୋର୍ଦ୍ଧା ଉଚ୍ଚ ବିଦ୍ୟାଳୟ । ୧୯୨୭ରେ ନୂଆ ହୋଇ ଖୋଲିଥିବା ଓଲସିଂହ ଉଚ୍ଚ ବିଦ୍ୟାଳୟରେ ସେ ନାମ ଲେଖାଇଲେ । ସେଠାରେ କୃଷ୍ଣଚନ୍ଦ୍ର 'ସୁଷମା' ଶୀର୍ଷକ ପତ୍ରିକାର ସମ୍ପାଦନା ଦାୟିତ୍ୱ ନେଲେ । ୧୯୨୮ରେ 'ସହକାର'ରେ ତାଙ୍କର 'ମା' କବିତା ପ୍ରକାଶିତ ହୋଇ ଅନେକ ବରିଷ୍ଠ ସାହିତ୍ୟିକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରଭୃତି ତାଙ୍କୁ ଅଧିକ ଲେଖିବାପାଇଁ ଉତ୍ସାହିତ କରିଥିଲେ । ୧୯୨୯ରେ 'ସହକାର'ରେ 'ଆହ୍ୱାନ' କବିତା ପ୍ରକାଶିତ ହୋଇ କବିଙ୍କୁ ଯଥେଷ୍ଟ ଆତ୍ମବିଶ୍ୱାସ ପ୍ରଦାନ କରିଥିଲା, ପରେ ପାଇକବାଳା, ପାଇକବାଳାର ପତ୍ର, ପାଇକବୀରର ବିଜୟ ପଥେ ଭଳି କବିତାମାନ କ୍ରମାନ୍ୱୟରେ 'ସହକାର'ରେ ପ୍ରକାଶିତ ହୋଇଥିଲା । ଖୋର୍ଦ୍ଧାର ଗୌରବଦୀପ୍ତ ଇତିହାସ ଓ ପାଇକ ବୀରମାନଙ୍କର ଆତ୍ମୋତ୍ସର୍ଗର ଗୌରବ ତାଙ୍କୁ ବାରମ୍ବାର ଦେଶାତ୍ମବୋଧକ କବିତା ଲେଖିବାପାଇଁ ପ୍ରେରଣା ଦେଇଥିଲା । ୧୯୩୦ରେ ଏକାଦଶ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ସେ ଖଲ୍ଲିକୋଟ ନିବାସୀ ଶ୍ୟାମସୁନ୍ଦର ଶାସନର ଭିକାରୀ ଶତପଥୀଙ୍କ କନ୍ୟା ରେବତୀଙ୍କୁ ବିବାହ କରିଥିଲେ । ସେ ୨ୟ ଶ୍ରେଣୀରେ ମ୍ୟାଟ୍ରିକ୍ ପାସ୍ କରି ୧୯୩୨-୩୩ରେ କଟକ ଟ୍ରେନିଂ ସ୍କୁଲରେ ଟ୍ରେନିଂ ନେଇଥିଲେ । ୧୯୩୩ରେ ଆଠମଲ୍ଲିକ ମଧ୍ୟ ଇଂରାଜୀ ବିଦ୍ୟାଳୟରେ, ୧୯୩୪ରେ ବୌଦ୍ଧ ଓ ଅନୁଗୁଳ, ୧୯୩୫ରେ ସମ୍ବଲପୁର, ୧୯୩୬ରେ ଭଦ୍ରଖ, ୧୯୩୭ରେ ଟାଙ୍ଗୀ, ୧୯୩୯-୪୦ରେ ବିରଳା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ୧୯୪୧ରେ ବାଲେଶ୍ୱର ମିଶନ୍ ସ୍କୁଲ, ୧୯୪୨ରେ ଷଢ଼େଇକଳା, ୧୯୪୨-୪୪ରେ ଯାଆଁଳା ଓ ୧୯୪୪-୪୬ ପର୍ଯ୍ୟନ୍ତ ବାଲୁଗାଁ ସ୍କୁଲରେ ଶିକ୍ଷକତା କରି ସେ ଅବସର ଗ୍ରହଣ କରିଥିଲେ । ତାଙ୍କର ପ୍ରଥମ କବିତା ଗ୍ରନ୍ଥ 'ଦୀପ୍ତି' ୧୯୩୧ରେ ପ୍ରକାଶିତ ହୋଇଥିଲା । ପଦ୍ମଚରଣ ପଟ୍ଟନାୟକ ଏହି କବିତା ସମ୍ପର୍କରେ ନିଜର ମତାମତ ଦେଇଥିଲେ । ୧୯୪୬ରେ ସେ ଘରୋଇ ଭାବରେ ଆଇ.ଏ., ୧୯୪୯ରେ ବି.ଏ ଓ ୧୯୫୧ରେ ବି.ଇଡି. ଟ୍ରେନିଂ ନେଇ Trained Graduate ଶିକ୍ଷକ ହୋଇପାରିଥିଲେ । ୧୯୪୪ରୁ ୧୯୫୮ ଭିତରେ ସେ ଆସନ୍ତାକାଲି, ସହକାର, ସତ୍ୟବାଦୀ, ରବିବାର ପ୍ରଜାତନ୍ତ୍ର, ଝଙ୍କାର, ଡଗର, ଆଶା ପ୍ରଭୃତି

ପତ୍ରପତ୍ରିକାରେ କବିତା ଲେଖି ପ୍ରଶଂସିତ ହୋଇଥିଲେ । ତାଙ୍କର ଆହୁତି (୧୯୫୫), ଅଗ୍ନିଶଙ୍ଖ (୧୯୫୫), ମାଟିଦୀପ (୧୯୫୬), ଆମ୍ରଲିପି (୧୯୫୮), ରୂପାୟନ (୧୯୫୯), ସାଧକର ସ୍ୱପ୍ନ (୧୯୬୦), ସଙ୍କେତ (୧୯୬୧), ଉଷ୍ମ (୧୯୬୨), ଦିଗ୍‌ବଳୟ (୧୯୬୩), ବେଳା ଓ ବୀଚି (୧୯୬୮), ପଲ୍ଲୀପଥିକ (୧୯୮୯) ଭଳି କବିତାଗ୍ରନ୍ଥ ପ୍ରକାଶିତ । ୧୯୬୯ରେ ତାଙ୍କର ଗ୍ରନ୍ଥାବଳି ପ୍ରକାଶ ପାଇଥିଲା । ୧୯୯୦ରେ ସେ ସମ୍ମାନଜନକ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

କୃଷ୍ଣଚନ୍ଦ୍ର ତ୍ରିପାଠୀ କବିତା ରଚନା ଆରମ୍ଭ କଲାବେଳକୁ ଓଡ଼ିଶା ତଥା ଓଡ଼ିଆ ଭାଷାର ଅବସ୍ଥା ସମ୍ପର୍କରେ କିଞ୍ଚିତ ଆଲୋଚନା କରିବା । ସତ୍ୟବାଦୀର ଉଗ୍ର ଜାତୀୟତାବାଦ ସେତେବେଳକୁ କ୍ରମେ ବିଲୁପ୍ତ ହୋଇଛି । ସବୁଜର ସୁଦୂରପ୍ରୀତି, ରୋମାଣ୍ଟିକ୍ ଭାବପ୍ରବଣତା ତଥା ବିଷାଦବାଦ ସାହିତ୍ୟ ଜଗତରେ ନୂତନ ଭାବସ୍ପନ୍ଦନ ସୃଷ୍ଟି କରିଛି । ରବୀନ୍ଦ୍ରନାଥଙ୍କର ଆଧିଭୌତିକ ଚେତନା ସମଗ୍ର ଭାରତୀୟ ଭାଷା ସାହିତ୍ୟକୁ ପ୍ରଭାବିତ କରିଥିବା ସମୟରେ ଓଡ଼ିଶାର କବିଗଣ ସେହି ଚେତନାରେ ଅନୁପ୍ରାଣିତ ହୋଇଛନ୍ତି । ପୁଣି ଜାତୀୟତାର କଥା କହିବା ସମୟରେ ବିଶ୍ୱପ୍ରେମଦ୍ୱାରା ଉଦ୍‌ବୁଦ୍ଧ ହୋଇ ମାନବତାର ଜୟଗାନ କରିଛନ୍ତି । କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ଜାତୀୟ ଭାବନା ତଥା ବିଷାଦ ଚେତନା, ପଦ୍ମଚରଣଙ୍କର ଦେଶାତ୍ମବୋଧ, ଗୋଦାବରୀଶଙ୍କ ଯୁକ୍ତିସଙ୍ଗତ ସାମାଜିକ ଆଭିମୁଖ୍ୟ କବି କୃଷ୍ଣଚନ୍ଦ୍ରଙ୍କୁ ବହୁଭାବରେ ପ୍ରଭାବିତ କରିଛି । କବି ମାୟାଧର ମାନସିଂହ ଓ ରାଧାମୋହନ ଗଡ଼ନାୟକ ତାଙ୍କ ସମସାମୟିକ । ଗଡ଼ନାୟକଙ୍କ ଛନ୍ଦବିଳାସ କବି ଅନେକତ୍ର ଗ୍ରହଣ କରିଛନ୍ତି । ମାତ୍ର କୃଷ୍ଣଚନ୍ଦ୍ର ନିଜସ୍ୱ ବୈଶିଷ୍ଟ୍ୟ ନେଇ ବିଶ୍ୱ ମାନବର ଦୁଃଖ ବେଦନାକୁ ସହାନୁଭୂତିରେ ସିକ୍ତ କରି ପ୍ରକାଶ କରିଛନ୍ତି । ଗ୍ରାମ୍ୟ ଜୀବନର ଅନୁଭୂତି, ଅନେକ ଅନନ୍ୟ ଅଭିଜ୍ଞତା ତାଙ୍କୁ ଯେତିକି ପ୍ରଭାବିତ କରିଛି, ସହଜ ସାବଲୀଳ ଛନ୍ଦମୟ ଶୈଳୀ ତଥା ପରିବେଷଣରେ ଆନ୍ତରିକତା ତାଙ୍କ କବିତାଗୁଡ଼ିକୁ ସେତିକି ହୃଦ୍ୟ କରିଛି । କେଉଁଠି ଚଣ୍ଡୀଦାସଙ୍କ ସ୍ୱର ସହିତ ସ୍ୱରମିଳାଇ ସେ କହିଛନ୍ତି ଯେ ମଣିଷହିଁ ବିଶ୍ୱର ସବୁଠାରୁ ଶ୍ରେଷ୍ଠ ଜୀବ । କେଉଁଠି ଭୀମଭୋଇଙ୍କ ସ୍ୱରରେ ଉଦ୍‌ବୁଦ୍ଧ ହୋଇ ପ୍ରାଣୀଙ୍କ ଆର୍ତ୍ତି ଓ ଦୁଃଖରେ ଅଭିଭୂତ ହୋଇ ପଡ଼ିଛନ୍ତି । କେବେ ତାଙ୍କ କବିତାରେ ଭକ୍ତକବି ମଧୁସୂଦନଙ୍କର ଉଦାତ୍ତ ସ୍ୱର ଶୁଭିଛି ତ କେବେ 'ଅର୍ଘ୍ୟଥାଳି'ର ଗଙ୍ଗାଧରଙ୍କ ମାନସିକତା ରୂପ ପାଇଛି । ତେବେ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ବରଦୀ କବିଭାବରେ ପରିଚିତ ଯେ ସାରା ବିଶ୍ୱର ଦୁଃଖକୁ ଅବଲୀଳାକ୍ରମେ ନିଜ ଅନୁଭବକୁ ନେଇପାରନ୍ତି ଓ ସଂସାରର ଦୁଃଖ ମୋଚନ କରିବାପାଇଁ ନିଜର ବ୍ୟାକୁଳତା ପ୍ରକାଶ କରନ୍ତି ।

ମାନବବାଦୀ ଦରଦୀ କବି କୃଷ୍ଣଚନ୍ଦ୍ର ଥିଲେ ଜଣେ ନିରୁତା କବି । ଦୁଃଖୀ ନିରନ୍ନ ମଣିଷର ସ୍ୱେଦ ଓ ଅଶ୍ରୁରେ ଆର୍ଦ୍ର ହେଉଥିଲା ତାଙ୍କର କବିତାର ବକ୍ଷ । ସେ ମଣିଷର ଜୟଗାନ କରି ନିଜର କବିତାକୁ ବିଶ୍ୱମାନବର ବିଜୟ ଗୀତିକାରେ ରୂପାନ୍ତରିତ କରିଛନ୍ତି । 'ରୂପାୟନ' ସଙ୍କଳନର 'ଜୀବନ ନିର୍ଝର' କବିତାରେ ସେ ଗାଇଛନ୍ତି–

''ହୃଦୟ ଦେଇ ଯିଏ ଚାଲିଛି ଧରଣୀରେ,
ମୁଁ ତା'ର ପାଦପୂଜା କରିବି
ଜୀବନ ଥିବାଯାଏ ମୁଁ ତା'ର ବହୁବାର,
ସକଳ ନିୟତ ଯେ ସ୍ମରିବି ।
ନିଜକୁ ବଳିଦେଇ ନିଜକୁ ଦେଖିଛି ଯେ,
ପରର ଅନ୍ତର ଭିତରେ
ମୁଁ ତାରେ ମନେକରେ ଠିଇକି ମଣିଷ ସେ,
ଧରଣୀ ବୁକୁ ପରେ ସତରେ ।''

କେବଳ ମଣିଷ ନୁହେଁ ସେ ମାଟି ଓ ମଣିଷ ଉଭୟକୁ ଶ୍ରଦ୍ଧା କରିଛନ୍ତି । ମାଟି ଭିତରେ ସେ ଦେଖିଛନ୍ତି ଚିରନ୍ତନ ଜୀବନର ମହାପ୍ରବାହ । କୃଷିଭିତ୍ତିକ ସଭ୍ୟତା ମାଟିକୁ କେନ୍ଦ୍ରରେ ଧରି ଗତିଶୀଳ । ଯୁଗ ଯୁଗଧରି ମାଟିକୁ ନେଇ ତେଣୁ ରାଶି ରାଶି ସାହିତ୍ୟ ସୃଷ୍ଟି ହୋଇଛି । 'ଦିଗ୍‌ବଳୟ' ସଙ୍କଳନର 'ମର୍ତ୍ତ୍ୟର ମୋହ' କବିତାରେ କବି କହିଛନ୍ତି–

''ମୋ ମାଟିର ପ୍ରତି ଦୁଃସ୍ଥ ନୟନୁ
ପୋଛିଦିଏ ଲୁହଧାର ଗୋ
ସକଳ ଅଭାବ ଜଂଜାଳ ଜ୍ୱାଳା କପାଳେ
କରି ମୁଁ ଗାର ଗୋ
ଯେଉଁ ମଧୁଶିରୀ ପାଇବି ତହିଁରେ
ଚଉଦ ଭୁବନେ ମିଳେ କି ସହୀରେ ।''

କବି ଏ ମାଟିର ପ୍ରତ୍ୟେକ ମଣିଷପାଇଁ ଅନ୍ତରତଳେ ଆତ୍ମୀୟତା ଅନୁଭବ କରିପାରନ୍ତି । ତେଣୁ ନିଜର ଗାଁ, ପଡ଼ୋଶୀ, ଦେଶ ଏପରିକି ସମଗ୍ର ବିଶ୍ୱମାନବର ଅଶ୍ରୁରେ ତାଙ୍କର ଗଣ୍ଡ ଅଶ୍ରୁସ୍ନାତ ହୋଇଯାଏ । ମଣିଷ ଜାତିର ଅପମାନ ଶେଷ ନ ହେବାଯାଏ ସକଳ ଭୌତିକ ପ୍ରାଚୁର୍ଯ୍ୟ ତାଙ୍କପାଇଁ ତୁଚ୍ଛ ହୋଇଯାଇଛି । ତେଣୁ 'ଆତ୍ମଲିପି' ସଂକଳନର 'ଆଉ ସ୍ଥାନ କାହିଁ' କବିତାରେ ସେ ଗାଆନ୍ତି–

"ଗାଇବାକୁ ଜୀବନର ଗାନ
କାହିଁକି କୁଣ୍ଠିତ କହ ମଣିଷର ପ୍ରାଣ ?
ଛାଡ଼ିଦେଲେ ଏହି ମାଟି ଆଉ ସ୍ଥାନ କାହିଁ ?
ପ୍ରାଣର ଈପ୍‌ସିତ ମଧୁ ପାଇବାର ପାଇଁ ।"

ଅର୍ଥାତ୍ ମାଟିହିଁ ମଣିଷକୁ ଦମ୍ଭଦିଏ । ସିଧାହୋଇ ଠିଆହେବାର ସାମର୍ଥ୍ୟ ଦିଏ । ମାଟିକୁ ଛାଡ଼ିଦେଲେ ମଣିଷ ଜୀବନର ଜୟଗାନ ଗାଇବା ସମ୍ଭବହିଁ ନୁହେଁ । ଗରିବ କୁଟୀର, ଦେଉ ସେ ଯେତେ ବାଧା ଦେବ, ନିର୍ଯାତିତର ଆତ୍ମବିଳାପ, ହତାଶ ପଥିକର ଗାନ, ଏ ମାଟିକୁଡ଼ିଆ ତଳେ ପ୍ରକୃତରେ ଦୀନଦରିଦ୍ର ପ୍ରତି ଆତ୍ମୀୟତା ଦେଖିବାକୁ ମିଳିଥାଏ ।

ତାଙ୍କ କବିତାରେ ଆମେ କେବଳ ବ୍ୟଥା ବେଦନାର ଲୁହଜୁଡୁବୁଡୁ ସ୍ୱର ପାଇବା ନାହିଁ । ସମାଜର ଅସମାନତା ଦେଖି କବି ବିବ୍ରତ ହୋଇପଡ଼ନ୍ତି । ସେହି ଅସାମଞ୍ଜସ୍ୟକୁ ଦୂରକରିବାପାଇଁ ତାଙ୍କ ଲେଖନୀ ଦମ୍ଭରେ କହେ—

"ନିଆଁହୁଲା ଭିତରେ ମୋ ଜୀବନ ହୋଇଛି ଗଢ଼ା
ଯେଉଁଠି ଦେଖିବ ଟିକେ ଅଳିଆ ବା ଅସ୍‌କରା
ପୋଡ଼ିଜାଳି ଧ୍ୱଂସ ତା'ରେ କରିଯିବା ଲକ୍ଷ୍ୟ ମମ
ନଚେତ୍ ପୃଥିବୀ ହେବ ବିରାଟ ଶ୍ମଶାନ ସମ ।" (ମାଟିଦୀପ-ସ୍ଥାନାନ୍ତର)

ସମାଜରେ କେହି ଜଣେ ଘିଅ ଦୁଧ ଖାଇ ଆରାମ କରୁଥିବା ସମୟରେ ଆଉ ଜଣେ ଭୋକିଲା ପେଟରେ ରହୁଥିବା କଥା କବିଙ୍କପାଇଁ ଅସହ୍ୟ ହୋଇଛି । ସ୍ୱାଧୀନତା ପରବର୍ତ୍ତୀ ପଲ୍ଲୀଜୀବନ ଅନେକ ପ୍ରଗତି କରିଛି ବୋଲି କୁହାଯାଉଥିବା ବେଳେ ଷାଠିଏ ଦଶକରେ କୃଷ୍ଣଚନ୍ଦ୍ର ତ୍ରିପାଠୀ ସେହି ପଲ୍ଲୀଜୀବନର ବିକଳ ବିଧ୍ୱସ୍ତ ରୂପ ଦେଖି ବିବ୍ରତ ହୋଇଛନ୍ତି । ତେଣୁ ସେ ଚେତାବନୀ ଦିଅନ୍ତି "ସବୁ ଗରଳରୁ ମଣିଷ ଗରଳ ଅତି ଉତ୍କଟତର ।" (ହେ ମୋର ମଣିଷ)

ମଣିଷପାଇଁ ଉଚ୍ଛ୍ୱାସଭରା କବିର ହୃଦୟ ସାମ୍ୟବାଦୀ ଚେତନାରେ ଭରିଯିବା ସ୍ୱାଭାବିକ । ସେହିଭଳି ସହଜ ଭାବରେ କବି ନିଜର ପ୍ରତିବାଦର ସ୍ୱର ଶୁଣାନ୍ତି—

"ଯାହାର ରହିଛି ସୁବିଧା ସୁଯୋଗ ଚିରଦିନ ସିଏ
ଅମୃତ ଶିରୀ ଚାଲିଥିବ ପାଇ ପାଇ
ଯେ ରହିଛି ତଳେ, ପଡ଼ିରହିଥିବ, ଚାହିଁରହିଥିବ
ତାହାପାଇଁ କିଛି ନାହିଁ ।

x x x x

ଆପେ ଆପେ ସିଏ ଜଳି ପୋଡ଼ି ଦିନେ
ହୋଇଯିବ ଛାରଖାର
ସାମାନ୍ୟ ନୁହେଁ ସାମାନ୍ୟ ନୁହେଁ
ନିଃସ୍ୱ ଆଖିର ଉଷ୍ଣ ଲୋତକଧାର ।''
(ରୂପାୟନ-ମୃଷାହାଡ଼)

'ଅଗ୍ନିଶଙ୍ଖ'ର ସମସ୍ତ କବିତା ଏହିଭଳି ବିପ୍ଳବର କଥା କହେ । ଭଗବତୀ ଚରଣ ପାଣିଗ୍ରାହୀ ଯେଉଁ ସାମାଜିକ ବୈଷମ୍ୟ ବିରୁଦ୍ଧରେ ଶାଣିତ ସ୍ୱର ଉତ୍ତୋଳନ କରିଥିଲେ କବି କୃଷ୍ଣଚନ୍ଦ୍ର ସେହି ବୈଷମ୍ୟ ସମ୍ପର୍କରେ ଯଥେଷ୍ଟ ସ୍ପର୍ଶକାତର ଥିଲେ । ସାମାଜିକ ଅଙ୍ଗୀକାର ନେଇ ରଚିତ ତାଙ୍କର ପ୍ରତ୍ୟେକ କବିତାରେ ବିପ୍ଳବର ସ୍ୱର ପରିଛନ୍ନ । ସେ ନିଜକୁ 'ସାମ୍ୟ ସୋହାଗ'ର ବାର୍ତ୍ତାବହ ବୋଲି କହିଛନ୍ତି । ଶୋଷକ ଓ ଶାସକର ସକଳ ଅହମିକାକୁ ଭସ୍ମ କରିବା ପରେ ସେହି ଭସ୍ମ ଉପରେ ସେ ସ୍ୱପ୍ନର ଅଟ୍ଟାଳିକା ନିର୍ମାଣ କରିବାର ଆଗ୍ରହ ବ୍ୟକ୍ତ କରିଛନ୍ତି ।

କବି କୃଷ୍ଣଚନ୍ଦ୍ରଙ୍କର ଏକାଧିକ କବିତାରେ ସମସାମୟିକ ଜାତୀୟ ଆହ୍ୱାନର ଚିତ୍ର ଦେଖିବାକୁ ମିଳେ । ଖୋରଧାର ପାଇକମାନଙ୍କର ବୀରତ୍ୱକୁ ନେଇ ସେ ଅନେକ କବିତା ରଚନା କରିଛନ୍ତି । ଏଗୁଡ଼ିକର କାବ୍ୟିକ ଆବେଦନ ଯଥେଷ୍ଟ । ଖୋରଧାର ଇତିହାସ ଓ କିମ୍ବଦନ୍ତୀକୁ ନେଇ ରଚିତ କବିତାମାନଙ୍କରେ ପାଇକ ପୁଅର ବୀରତ୍ୱ ସହିତ ପାଇକବାଳାର ଏକନିଷ୍ଠ ପ୍ରେମ, ଦେଶପାଇଁ ସ୍ୱାର୍ଥତ୍ୟାଗ ତଥା କାରୁଣ୍ୟର ଯେଉଁ ରୂପ କବି ଅଙ୍କନ କରିଛନ୍ତି ତାହା ଉପଲବ୍ଧିର ବିଷୟ । ବକ୍‌ସି ଜଗବନ୍ଧୁ, ପାଟଶାଣୀ, ଜୟୀ ରାଜଗୁରୁଙ୍କଠାରୁ ଭୁଜବଳ ବୁଡ଼ୀ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ସମ୍ବେଦନଶୀଳତାରେ ସ୍ନାତ ହୋଇ ଅପୂର୍ବ ଦିଶନ୍ତି । ତାଙ୍କର ସୈନିକ ନିଜ ଜନନୀକୁ ପ୍ରବୋଧନା ଦେଇ କହେ ଯେ ସେ କେବଳ ମାଆର ସନ୍ତାନ ନୁହେଁ, ସେ ଦେଶର ପ୍ରାଣ ଓ ଜାତିର ଟାଣ । ସେ ସଂଗ୍ରାମରେ ଜୟଯୁକ୍ତ ହେଉ ବା ନ ହେଉ ସେଥିରେ କିଛି ଯାଏ ଆସେ ନାହିଁ । ଦେଶପାଇଁ ତା'ର ଶିରାରେ ଟକ୍‌ମକ୍ ହୋଇ ଶୋଣିତ ଫୁଟୁଛି । 'ଆହୁତି' ସଙ୍କଳନର 'ଏ ମାଟିର ଅମର ସହିଦ' କବିତାରେ କବି ଗାଇଛନ୍ତି—

''ଏ ମହାଜାତିର ସନ୍ତାନ ହେଲା ଠିଆ
ବରଗଛ ତଳେ ଫାସିରେ ଲଗାଇ ମଥା

ଅନ୍ତର ତା'ର କହୁଥିଲା ଅବା କଥା
ମୃତ୍ୟୁ ଭିତରେ ମରେ ନାହିଁ ସ୍ୱାଧୀନତା
ବଞ୍ଚିଲା ପରି ପାରିଚ ବଂଚି ଯିଏ
ନଚେତ୍ ଧରାରେ ଜଡ ମୁର୍ଖର ପରି
ତା'ର ଜୀବନରେ କିବା ସଂପଦ ଥାଏ
ହଜାରେ ବରଷ ରହିଲେ ଜୀବନ ଧରି ।''

ଏହିଭଳି ବାଲାଡ଼ ବା ସମ୍ବୋଧନ ଗୀତିକା ରଚନାରେ ରାଧାମୋହନ ଗଡ଼ନାୟକ ଯଥେଷ୍ଟ କୃତିତ୍ୱ ଅର୍ଜନ କରିଛନ୍ତି । ଜାତୀୟତାରେ ଉଦ୍‌ବୁଦ୍ଧ ସହିଦଟିଏ ସାଧାରଣ ହୋଇ ମଧ କେମିତି ଅସାଧାରଣ ପାଲଟିଯାଉଛି, ତା'ର ଆତ୍ମତ୍ୟାଗ କିଭଳି ଅନ୍ୟମାନଙ୍କୁ ପ୍ରେରଣା ଯୋଗାଉଛି, ତାହା କୃଷ୍ଣଚନ୍ଦ୍ରଙ୍କର ଏକାଧିକ କବିତାରେ ଦେଖିବାକୁ ମିଳେ । ଜାତୀୟ ଜାଗରଣପାଇଁ କିଛି ବୀରପୁରୁଷଙ୍କ ଆଖ୍ୟାନର ବ୍ୟାଖ୍ୟା ଯେମିତି ଜରୁରୀ କିଛି ସାଧାରଣ ଜନତାଙ୍କୁ ଅସାଧାରଣ ବୀରପୁରୁଷରେ ରୂପାନ୍ତରିତ କରିଦେବା ତା'ଠାରୁ ଗୁରୁତ୍ୱପୂର୍ଣ୍ଣ । ନିଜକୁ ସାଧାରଣ ଜନତାର ପ୍ରତିନିଧି ମନେକରୁଥିବା କବି ଏତାଦୃଶ ଉଲ୍ଲେଖନୀୟ ଚରିତ୍ର ସୃଷ୍ଟି କରି ନିଜର ଜାତୀୟ ଦାୟିତ ତୁଲାଇଛନ୍ତି ବୋଲି କୁହାଯିବା ଯଥାର୍ଥ ।

ମଣିଷର ବନ୍ଦନା ଗାଇ କବି ବାରମ୍ବାର ଉଲ୍ଲସିତ ହୋଇଛନ୍ତି । ସୃଷ୍ଟିର ଶ୍ରେଷ୍ଠ ଜୀବ ମାନବ ଅନେକ ଦୁଃଖ କଷ୍ଟ ଭୋଗିଛି । ଅନେକ ବ୍ୟଥା-ବେଦନାରେ ଛଟପଟ ହୋଇଛି । ତଥାପି ମାଟି ଓ ମଣିଷକୁ ସମଭାବରେ ଭଲପାଉଥିବା କବି ମାନବର ପୂଜା କରିଛନ୍ତି । ତା'ର କଷ୍ଟକୁ ନିଜର ମଣିଛନ୍ତି । ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱଦ୍ୱାରା ପ୍ରଭାବିତ କବି ଜାତିଭେଦରୁ ଉର୍ଦ୍ଧ୍ୱରେ ମଣିଷକୁ ଭଲପାଇଛନ୍ତି ଓ ଏକ ଜାତି ଏକ ବିଶ୍ୱର ପରିକଳ୍ପନା କରିଛନ୍ତି । ଦିନେ ସ୍ୱାମୀ ବିବେକାନନ୍ଦ କାମନା କରିଥିଲେ ''Brotherhood of man under the fatherhood of God.'' ଭକ୍ତକବି ମଧୁସୂଦନ ଗାଇଥିଲେ–

''କୋଟି କୋଟି କଣ୍ଠ ମିଳାଇ ଗାଅ ଆନନ୍ଦେ ମାତି
ଏକମାତ୍ର ବିଶ୍ୱ ବିଧାତା ଏକ ମାନବ ଜାତି ।''

ସେହି ସ୍ୱରର ତୀକ୍ଷ୍ଣତା ଓ ସଞ୍ଚରଣଶୀଳତା କୃଷ୍ଣଚନ୍ଦ୍ରଙ୍କୁ ବହୁଭାବରେ ପ୍ରଭାବିତ କରିଛି । ସେ କହିଛନ୍ତି–

"ଅଛବର ଘରେ ଘରେ ହେଉ ଆଜି ଆମର ଉତ୍ସବ
ଆର୍ଯ୍ୟ ଋଷି ପୁଣ୍ୟ ଗୀତାପାଠ
ରହୁ ଭାରତେ ଆଜି ଏକଇ ମାନବ ଜାତି
ହେଉ ଅଛବ ତାହାର ସମ୍ରାଟ ।"

(ଆଲିଙ୍ଗନ)

ଭକ୍ତକବି ଦିନେ ଦିବ୍ୟଦୃଷ୍ଟିରେ ଦେଖିଥିଲେ "ବର୍ଣ୍ଣଭେଦ ଧର୍ମଭେଦର ଦିନ ହେଉଛି ଶେଷ ।" ସେହି ସ୍ୱର ଆଜି ମଧ୍ୟ କବି ଚିତ୍ତରେ ଅନୁରଣନ ସୃଷ୍ଟି କରୁଛି । ଜୀବନକୁ ଭଲପାଇ, ପୃଥିବୀର ସକଳ ଦୁଃଖ ଆପଣାର କରିବାକୁ କାମନା କରିଥିବା କବି ପଳାୟନବାଦୀ ନୁହଁନ୍ତି । ସେ ଦମ୍ଭରେ ସମୟର ସମ୍ମୁଖୀନ ହୋଇଛନ୍ତି ଓ ନିଜ ସମୟର ସାମର୍ଥ୍ୟକୁ କବିତା ମାଧ୍ୟମରେ ଧରି ରଖିବାର ଉଦ୍ୟମ କରିଛନ୍ତି । ତେଣୁ ତାଙ୍କର କବିତା ଏତେ ଲୋକପ୍ରିୟ, ଏତେ ମର୍ମସ୍ପର୍ଶୀ । ହତଶ୍ରୀ ପଲ୍ଲୀ, ହତାଶ କୃଷକ, ଅଭାବୀ ଦୁଃସ୍ଥ ଗୃହସ୍ଥ, ବ୍ୟାକୁଳ ଶିଶୁ ଓ ନାରୀ ତାଙ୍କୁ ଏତେ ଘାରିଛନ୍ତି ଯେ କବି ନିଜକୁ ସେମାନଙ୍କର ପ୍ରତିନିଧି ବୋଲି ମନେକରି ତାଙ୍କ ନିକଟକୁ ସହାନୁଭୂତିର ହାତ ବଢ଼ାଇ ଦେଇଛନ୍ତି ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଜୀବନରେ ଆଚରଣ ଓ ଉଚ୍ଚାରଣର ସମନ୍ୱୟ ସାଧିତ ହୋଇଥିଲା । ତେଣୁ ତାଙ୍କର ସହଜ ସାବଲୀଳ କବିତାଟିଏ ମଧ୍ୟ ଅଧିକ ଭାବମୟ ଓ ସଞ୍ଚରଣ କ୍ଷମତା ରଖିଥିଲା । ଭାବପ୍ରକାଶରେ ସବଳ ଏହି କବିତାଗୁଡ଼ିକ ସମୟର ପ୍ରତିନିଧିତ୍ୱ କରିଥାଏ ।

'ଅଗ୍ନିଶଙ୍ଖ' କବିତାରେ ସମୟକୁ ସେ କିଭଳି ନିଜ ବାଗରେ ପରଖିଛନ୍ତି ତା'ର ଏକ ଦୃଷ୍ଟାନ୍ତ—

"ଶାସନର ଅର୍ଥ ନୁହେଁ ପ୍ରଭୁତ୍ୱ ହାକିମି
ଅବା ସୀମାହୀନ ଘୋର ଅତ୍ୟାଚାର
ପ୍ରତି ଜୀବନର ପରମ କଲ୍ୟାଣ ଲାଗି
ମୁହୂର୍ତ୍ତ ମୁହୂର୍ତ୍ତ ଧରି ବୁଣିଦିଏ ଯାହା
ଅମୃତର ଅସରନ୍ତି ଧାର
ସେ ଏକା ଶାସନ, ସେ ରାଇଜ ସବୁଠୁଁ ବଳି
ସୁଖ ଶାନ୍ତି କଲ୍ୟାଣର ପୁଣ୍ୟ ନିକେତନ ।"

କବି କୃଷ୍ଣଚନ୍ଦ୍ର ସମଗ୍ର ଜୀବନ କବିତା ଲେଖିଛନ୍ତି । ଜୀବିକାଠାରୁ ଊର୍ଦ୍ଧ୍ୱରେ ଜୀବନକୁ ବୁଝିଛନ୍ତି ଓ ଭଲପାଇଛନ୍ତି । ସାଧାରଣ ମଣିଷଙ୍କ ଦୁଃଖ-ବେଦନା ଦେଖି

ବ୍ୟତିବ୍ୟସ୍ତ ହୋଇଛନ୍ତି ଓ ମଣିଷର ଆତ୍ମା ଅପମାନିତ ହେଉଥିବା ଦେଖି ବ୍ୟାକୁଳତା ପ୍ରକାଶ କରିଛନ୍ତି । କିନ୍ତୁ ମଣିଷ ଯେ ପୃଥିବୀର ଶ୍ରେଷ୍ଠ ଜୀବ, ବିଧାତାର ଶ୍ରେଷ୍ଠଦାନ, ମଣିଷ ନିକଟରେ ସକଳ ଦିବ୍ୟ ସାମର୍ଥ୍ୟ ଓ ପ୍ରେରଣା ନିହିତ ଏହା ସେ ଉପଲବ୍ଧି କରିଛନ୍ତି । ଆମେ ନିଜର ସ୍ଥୂଳ ଆଖିରେ ଅନ୍ୟ କାହା ଭିତରେ ସୁପ୍ତଥିବା ଚେତନାର ବିଭୂତି ନେଇପାରୁନାହିଁ । କବି କିନ୍ତୁ ନିଜର ସହାନୁଭୂତି ଦେଇ ଅନ୍ୟ ମଣିଷର ଚୈତୀ ଶକ୍ତିର ଉତ୍ସ ସନ୍ଧାନ କରିପାରେ । ସେ କାମନା କରେ–

''ସତ୍ୟ ଲାଗି ମୁଁ ମୁକ୍ତି ଲାଗି ମୁଁ ଜାଗ୍ରତ କାଳ କାଳ
ମୁଁ ଚାହେଁ ଧରାରେ ଦେଖିବିନି କାର ବିକଳ ଅଶ୍ରୁଧାର ।''

(ଦିଗ୍‌ବଳୟ)

———